VOL. LV No. 7 UTKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment



ଭୁବନେଶ୍ୱର ମହାତ୍ମା ଗାନ୍ଧୀ ମାର୍ଗଠାରେ ଆୟୋଜିତ ରାଜ୍ୟସ୍ତରୀୟ ୫୦ତମ ଗଣତନ୍ତ୍ର ଦିବସ ପରେଡରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଭିବାଦନ ଗ୍ରହଣ କରୁଛନ୍ତି । ୨୬-୧



ସୂଚନା ଭବନଠାରେ ଆୟୋଜିତ ଏକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ
ପୋଲିସ୍ ପଦକ ପ୍ରଦାନ କରୁଛନ୍ତି । ୨୬-୧

# ଉତ୍କଳ ପ୍ରସଙ୍ଗ

୫୫ ଭାଗ ୮ମ ସଂଖ୍ୟା ଫାଲ୍‌ଗୁନ-ଚୈତ୍ର ୧୯୨୦ ଶକାବ୍ଦ ମାର୍ଚ୍ଚ ୧୯୯୯



ବାର୍ଷିକ ଦେୟ : ଟ ୨୦.୦୦

ପ୍ରତି ଖଣ୍ଡ : ଟ ୨.୦୦

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ ''ଉତ୍କଳ ପ୍ରସଙ୍ଗ''ରେ ପ୍ରକାଶିତ ହୋଇଥାଏ । ''ଉତ୍କଳ ପ୍ରସଙ୍ଗ'' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ

ଏବଂ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ ରେ ମୁଦ୍ରିତ

# ସୂଚୀ

# ଓଡ଼ିଶାର ପଞ୍ଚଦଶ ମୁଖ୍ୟମନ୍ତ୍ରୀ: ଡଃ ଗିରିଧର ଗମାଙ୍ଗ



ଗତ ଫେବୃୟାରୀ ୧୭ ତାରିଖ ଅପରାହ୍ନ ୨.୩୦ରେ ରାଜଭବନଠାରେ ଆୟୋଜିତ ସ୍ୱତନ୍ତ୍ର ଉତ୍ସବରେ ଡଃ ଗିରିଧର ଗମାଙ୍ଗ ଓଡ଼ିଶାର ପଞ୍ଚଦଶ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିଛନ୍ତି । ଅସ୍ଥାୟୀ ରାଜ୍ୟପାଳ ଡଃ ସି. ରଙ୍ଗରାଜନ ତାଙ୍କୁ ପଦ ଓ ଗୋପନୀୟତାର ଶପଥ ପାଠ କରାଇଥିଲେ ।

ମୁଖ୍ୟମନ୍ତ୍ରୀ ଓଡ଼ିଆ ଭାଷାରେ ଶପଥ ଗ୍ରହଣ କରିଥିଲେ ।

୫୬ ବର୍ଷ ବୟସ୍କ ଡଃ ଗିରିଧର ଗମାଙ୍ଗଙ୍କ ଜନ୍ମ ୧୯୪୩ ମସିହାରେ କୋରାପୁଟ ଜିଲ୍ଲାର ଡିବିରସିଙ୍ଗି ଗ୍ରାମରେ ଏକ ସାଧାରଣ ଚାଷୀ ପରିବାରରେ । କବାରେ ସ୍ନାତକ ଶିକ୍ଷା ସମାପ୍ତି ପରେ ସେ ସ୍ଥାନୀୟ ହାଇସ୍କୁଲରେ ଶିକ୍ଷକତା କରିଥିଲେ । ଡେରାଡୁନ୍‌ର ଫରେଷ୍ଟ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ ବିଶ୍ୱବିଦ୍ୟାଳୟରୁ ତାଙ୍କୁ ସମ୍ମାନସୂଚକ ଡକ୍ଟର ଅଫ୍ ସାଇନ୍ସ ଡିଗ୍ରୀ ପ୍ରଦାନ କରାଯାଇଥିଲା ।

୧୯୭୨ ମସିହାରେ କୋରାପୁଟ ସଂରକ୍ଷିତ ଲୋକସଭା ନିର୍ବାଚନମଣ୍ଡଳୀ ଉପନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦ୍ୱିତା କରି ସେ ରାଜନୈତିକ ଜୀବନ ଆରମ୍ଭ କରିଥିଲେ । ୧୯୭୨ରୁ କ୍ରମାଗତ ଭାବରେ ୧୯୭୭, ୧୯୮୦, ୧୯୮୪, ୧୯୮୯, ୧୯୯୧, ୧୯୯୬ ଓ ୧୯୯୮ ଲୋକସଭା ନିର୍ବାଚନମାନଙ୍କରେ ସେ ନିର୍ବାଚିତ ହୋଇ ଆସିଛନ୍ତି ।

କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ସେ ୧୯୮୨ ଜାନୁଆରୀରୁ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ଯୋଗାଣ ଓ ପୁନର୍ବସତି ବିଭାଗ ଏବଂ ୧୯୮୨ ସେପ୍ଟେମ୍ବରରୁ ୧୯୮୩ ଜାନୁଆରୀ ପର୍ଯ୍ୟନ୍ତ ଶ୍ରମ ବିଭାଗର ଉପମନ୍ତ୍ରୀ, ୧୯୮୫ ସେପ୍ଟେମ୍ବରରୁ ୧୯୮୮ ଫେବୃୟାରୀ ପର୍ଯ୍ୟନ୍ତ କଲ୍ୟାଣ ବିଭାଗ, ୧୯୮୮ ଫେବୃୟାରୀରୁ ଜୁନ୍ ପର୍ଯ୍ୟନ୍ତ ପର୍ଯ୍ୟଟନ ବିଭାଗ, ୧୯୮୮ ଜୁନ୍‌ରୁ ୧୯୮୯ ଜୁଲାଇ ପର୍ଯ୍ୟନ୍ତ ଯୋଗାଯୋଗ, ୧୯୮୯ ଜୁଲାଇରୁ ଡିସେମ୍ବର ପର୍ଯ୍ୟନ୍ତ ଯୋଗାଯୋଗ ବିଭାଗ (ସ୍ୱାଧୀନ ଦାୟିତ୍ୱ), ୧୯୯୧ ଜୁନ୍‌ରୁ ୧୯୯୩ ପର୍ଯ୍ୟନ୍ତ ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ (ସ୍ୱାଧୀନ ଦାୟିତ୍ୱ), ୧୯୯୩ ଜାନୁଆରୀରୁ ୧୯୯୫ ସେପ୍ଟେମ୍ବର ପର୍ଯ୍ୟନ୍ତ ଯୋଜନା ଓ କାର୍ଯ୍ୟକ୍ରମ ରୂପାୟନ (ସ୍ୱାଧୀନ ଦାୟିତ୍ୱ), ୧୯୯୫ ସେପ୍ଟେମ୍ବରରୁ ୧୯୯୬ ମଇ ପର୍ଯ୍ୟନ୍ତ ଖଣି (ସ୍ୱାଧୀନ ଦାୟିତ୍ୱ) ମନ୍ତ୍ରଣାଳୟର ରାଷ୍ଟ୍ରମନ୍ତ୍ରୀ ପଦରେ ଅବସ୍ଥାପିତ ହୋଇଥିଲେ ।

୧୯୯୦ ଏପ୍ରିଲରୁ ୧୯୯୨ ମାର୍ଚ୍ଚ ପର୍ଯ୍ୟନ୍ତ ସେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଏବଂ ୧୯୯୫ ବିଧାନସଭା ନିର୍ବାଚନ ପ୍ରଚାର କମିଟିର ଅଧ୍ୟକ୍ଷ ଥିଲେ ।

ଆଦିବାସୀ ଲୋକ ବାଦ୍ୟ ଚାଙ୍ଗୁ, ତାମ ବାଦକ ଭାବେ ସେ ପ୍ରଖ୍ୟାତ । କୋରାପୁଟ ହିଡେନ ଟାଲେଣ୍ଟସ୍ କଲଚରାଲ ଗ୍ରୁପର ସେ ପ୍ରତିଷ୍ଠାତା ସଭାପତି ।

ଓଡ଼ିଆରେ ସଉରା ଆଦିବାସୀ କବିତା ଗ୍ରନ୍ଥ ଏବଂ ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ପାଇଁ ସାମ୍ବିଧାନିକ ବ୍ୟବସ୍ଥା ଉପରେ ଲିଖିତ ପୁସ୍ତକର ସେ ରଚୟିତା ।

□□□

# ଓଡ଼ିଶାର ନୂତନ ମନ୍ତ୍ରିମଣ୍ଡଳ

## ଶ୍ରୀ ଗିରିଧର ଗମାଙ୍ଗ– ମୁଖ୍ୟମନ୍ତ୍ରୀ

ସାଧାରଣ ପ୍ରଶାସନ, ଘରୋଇ ବିଭାଗ ଏବଂ କ୍ୟାବିନେଟ ମନ୍ତ୍ରୀ ତଥା ସ୍ୱାଧୀନ ରାଷ୍ଟ୍ରମନ୍ତ୍ରୀଙ୍କ ମଧ୍ୟରେ ବଣ୍ଟାଯାଇନଥିବା ଅନ୍ୟ ସମସ୍ତ ବିଭାଗ

## କ୍ୟାବିନେଟ ମନ୍ତ୍ରୀ

| | | | |
|---|---|---|---|
| ୧. | ଶ୍ରୀ ବସନ୍ତ କୁମାର ବିଶ୍ୱାଳ | : | ଜଳସମ୍ପଦ, କୃଷି, ସମବାୟ, ସଂସଦୀୟ ବ୍ୟାପାର |
| ୨. | ଶ୍ରୀ କାହ୍ନୁ ଚରଣ ଲେଙ୍କା | : | ପଞ୍ଚାୟତିରାଜ, ଗ୍ରାମ୍ୟ ଉନ୍ନୟନ |
| ୩. | ଶ୍ରୀ ଦୁର୍ଗାଶଙ୍କର ପଟ୍ଟନାୟକ | : | ଶ୍ରମ ଓ ନିଯୁକ୍ତି, ସରକାରୀ ଉଦ୍ୟୋଗ |
| ୪. | ଶ୍ରୀ ନିରଞ୍ଜନ ପଟ୍ଟନାୟକ | : | ଶକ୍ତି, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ |
| ୫. | ଶ୍ରୀ ଭାଗବତ ପ୍ରସାଦ ମହାନ୍ତି | : | ଉଚ୍ଚଶିକ୍ଷା, ସାଧାରଣ ଅଭିଯୋଗ ଓ ପେନସନ |
| ୬. | ଶ୍ରୀ ଭୂପିନ୍ଦର ସିଂହ | : | ପୂର୍ତ୍ତ, ନଗର ଉନ୍ନୟନ, ସୂଚନା ଓ ଲୋକସମ୍ପର୍କ |
| ୭. | ଶ୍ରୀ ସେଖ ମତଲୁବ ଅଲ୍ଲି | : | ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ, ସ୍କୁଲ ଓ ଗଣଶିକ୍ଷା |
| ୮. | ଶ୍ରୀ ରଘୁନାଥ ପଟ୍ଟନାୟକ | : | ଅର୍ଥ, ଆଇନ |
| ୯. | ଶ୍ରୀ ଜଗନ୍ନାଥ ପଟ୍ଟନାୟକ | : | ରାଜସ୍ୱ, ମତ୍ସ୍ୟ ଓ ପଶୁସମ୍ପଦ |
| ୧୦. | ଶ୍ରୀ ଗଦାଧର ମାଝି | : | ଆଦିବାସୀ, ତପସିଲଭୁକ୍ତ ଜାତି ଓ ଉପଜାତି କଲ୍ୟାଣ |
| ୧୧. | ଶ୍ରୀ ନେତ୍ରାନନ୍ଦ ମଲ୍ଲିକ | : | ପର୍ଯ୍ୟଟନ, ଯୋଜନା ଓ ସମନ୍ୱୟ |
| ୧୨. | ଶ୍ରୀମତୀ ସରସ୍ୱତୀ ହେମ୍ବ୍ରମ | : | ମହିଳା ଓ ଶିଶୁକଲ୍ୟାଣ |

## ରାଷ୍ଟ୍ରମନ୍ତ୍ରୀ (ସ୍ୱାଧୀନ ଦାୟିତ୍ୱ)

| | | | |
|---|---|---|---|
| ୧୩. | ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତା | : | ପରିବହନ |
| ୧୪. | ଶ୍ରୀ ସୁରେଶ କୁମାର ରାଉତରାୟ | : | ଅବକାରୀ, କ୍ରୀଡ଼ା ଓ ଯୁବସେବା |
| ୧୫. | ଶ୍ରୀ ନବୀନଚନ୍ଦ୍ର ନାରାୟଣ ଦାସ | : | ବାଣିଜ୍ୟ |
| ୧୬. | ଶ୍ରୀମତୀ ବିଜୟଲକ୍ଷ୍ମୀ ସାହୁ | : | ବୟନ ଶିଳ୍ପ ଓ ହସ୍ତତନ୍ତ |
| ୧୭. | ଶ୍ରୀ ହଳଧର କାର୍ଜୀ | : | ଇସ୍ପାତ ଓ ଖଣି |

## ରାଷ୍ଟ୍ରମନ୍ତ୍ରୀ

| | | | |
|---|---|---|---|
| ୧୮. | ଡଃ ଦେବେନ୍ଦ୍ରନାଥ ମାନସିଂହ | : | ଶିଳ୍ପ |
| ୧୯. | ଶ୍ରୀ ଅନନ୍ତରାମ ମାଝି | : | ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ |
| ୨୦. | ଶ୍ରୀ ପଦ୍ମଲୋଚନ ପଣ୍ଡା | : | ମତ୍ସ୍ୟ ଓ ପଶୁସମ୍ପଦ |
| ୨୧. | ଶ୍ରୀମତୀ ଉଷାରାଣୀ ପଣ୍ଡା | : | ନଗର ଉନ୍ନୟନ |
| ୨୨. | ଶ୍ରୀ ରିପୁନାଥ ସେଠ୍ | : | ସ୍କୁଲ ଓ ଗଣଶିକ୍ଷା |
| ୨୩. | ଶ୍ରୀ ପ୍ରସାଦ ହରିଚନ୍ଦନ | : | ଘରୋଇ, ବିଜ୍ଞାନ ଓ କାରିଗରୀ, ସଂସ୍କୃତି |
| ୨୪. | ଶ୍ରୀ ସୁରେନ୍ଦ୍ର ସିଂହ ଭୋଇ | : | ଜଙ୍ଗଲ ଓ ପରିବେଶ |
| ୨୫. | ଶ୍ରୀମତୀ ପରମା ପୂଜାରୀ | : | ଗ୍ରାମ୍ୟ ଉନ୍ନୟନ ଓ ପଞ୍ଚାୟତିରାଜ |
| ୨୬. | ଶ୍ରୀ ଗଣେଶ୍ୱର ବେହେରା | : | ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ |

# ନୂତନ ମନ୍ତ୍ରିମଣ୍ଡଳର ଶପଥ ଗ୍ରହଣ


ଶ୍ରୀ ବସନ୍ତ କୁମାର ବିଶ୍ୱାଳ


ଶ୍ରୀ କାହ୍ନୁ ଚରଣ ଲେଙ୍କା


ଶ୍ରୀ ଦୁର୍ଗା ଶଙ୍କର ପଟ୍ଟନାୟକ


ଶ୍ରୀ ନିରଞ୍ଜନ ପଟ୍ଟନାୟକ


ଶ୍ରୀ ଭାଗବତ ପ୍ରସାଦ ମହାନ୍ତି


ଶ୍ରୀ ଭୂପିନ୍ଦର ସିଂହ


ଶେଖ ମତ୍ଲୁବ୍ ଅଲ୍ଲୀ


ଶ୍ରୀ ରଘୁନାଥ ପଟ୍ଟନାୟକ


ଶ୍ରୀ ଜଗନ୍ନାଥ ପଟ୍ଟନାୟକ


ଶ୍ରୀ ଗଙ୍ଗାଧର ମାଝୀ


ଶ୍ରୀ ନେତ୍ରାନନ୍ଦ ମଲ୍ଲିକ


ଶ୍ରୀମତୀ ସରସ୍ୱତୀ ହେମ୍ବ୍ରମ


ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତା


ଶ୍ରୀ ସୁରେଶ କୁମାର ରାଉତରାୟ


ଶ୍ରୀ ନବୀନ ଚନ୍ଦ୍ର ନାରାୟଣ ଦାସ


ଶ୍ରୀମତୀ ବିଜୟଲକ୍ଷ୍ମୀ ସାହୁ


ଶ୍ରୀ ହଳଧର କାର୍ଜୀ


ଡଃ. ଦେବେନ୍ଦ୍ର ନାଥ ମାନସିଂହ


ଶ୍ରୀ ଅନନ୍ତରାମ ମାଝୀ


ଶ୍ରୀ ପଦ୍ମଲୋଚନ ପଣ୍ଡା


ଶ୍ରୀମତୀ ଉଷାରାଣୀ ପଣ୍ଡା


ଶ୍ରୀ ରିପୁନାଥ ସେଠ୍


ଶ୍ରୀ ପ୍ରସାଦ ହରିଚନ୍ଦନ


ଶ୍ରୀ ସୁରେନ୍ଦ୍ର ସିଂହ ଭୋଇ


ଶ୍ରୀମତୀ ପରମା ପୂଜାରୀ


ଶ୍ରୀ ଗଣେଶ୍ୱର ବେହେରା

**ସଂପାଦକୀୟ**

# ନୂତନ ନେତୃତ୍ୱକୁ ସ୍ୱାଗତ

ଡକ୍ଟର ଗିରିଧର ଗମାଙ୍ଗ ପଞ୍ଚଦଶ ମୁଖ୍ୟମନ୍ତ୍ରୀ ଭାବରେ ଓଡ଼ିଶାର ଶାସନ ଦାୟିତ୍ୱ ଗ୍ରହଣ କରିଛନ୍ତି । ସୁଦୀର୍ଘ ସତେଇଶ ବର୍ଷର ଘଟଣାବହୁଳ ରାଜନୈତିକ ପଟଭୂମି ଓ ପ୍ରଗତିର ପରିଦୃଶ୍ୟରେ ତାଙ୍କର ସାଂସଦ ଜୀବନ ଉଜ୍ଜ୍ୱଳ । ୧୯୭୨ ରୁ ୧୯୯୮ ମସିହା ପର୍ଯ୍ୟନ୍ତ ବିଭିନ୍ନ ଲୋକସଭା ନିର୍ବାଚନରେ କ୍ରମାଗତ ଭାବରେ ଆଠଥର ଗୋଟିଏ ନିର୍ବାଚନ ମଣ୍ଡଳୀରୁ ସେ ନିର୍ବାଚିତ ହୋଇ ସାଂସଦ ଇତିହାସରେ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ ସୃଷ୍ଟି କରିଛନ୍ତି । ଏଥିରୁ ଜନଗଣ ମଧ୍ୟରେ ତାଙ୍କର ଜନପ୍ରିୟତା ପରିସ୍ଫୁଟ । ଶାସନ କ୍ଷେତ୍ରରେ ତାଙ୍କର ପାରଦର୍ଶିତା ଓ କର୍ମକୁଶଳତା ଉଲ୍ଲେଖନୀୟ । କେନ୍ଦ୍ର କଂଗ୍ରେସ ସରକାରରେ ସେ ବିଭିନ୍ନ ସମୟରେ ଯୋଗାଣ ଓ ପୁନର୍ବସତି, କଲ୍ୟାଣ, ପର୍ଯ୍ୟଟନ, ଯୋଗାଯୋଗ, ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ, ଯୋଜନା ଓ କାର୍ଯ୍ୟକ୍ରମ ରୂପାୟନ, ଖଣି ଆଦି ଗୁରୁତ୍ୱପୂର୍ଣ୍ଣ ମନ୍ତ୍ରଣାଳୟର ଉପମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀ ଦାୟିତ୍ୱରେ ଥାଇ ଶାସନ ପରିଚାଳନାରେ ନିଜର ଗଭୀର ନିଷ୍ଠା ଓ ଦକ୍ଷତାର ପରିଚୟ ଦେଇଛନ୍ତି । କଂଗ୍ରେସ ମନ୍ତ୍ରିମଣ୍ଡଳରେ ସେ ନିରବଚ୍ଛିନ୍ନ ଭାବରେ ମନ୍ତ୍ରୀ ହେବାର ସୌଭାଗ୍ୟ ଲାଭ କରିଛନ୍ତି ।

ସାଂଗଠନିକ କ୍ଷେତ୍ରରେ ତାଙ୍କର କୁଶଳତା ଓ ସଫଳତା ପ୍ରମାଣିତ । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଓ ନିର୍ବାଚନ ପ୍ରଚାର କମିଟିର ଅଧ୍ୟକ୍ଷ ଭାବରେ ସେ ଦଳକୁ ଶୃଙ୍ଖଳିତ ଓ ସୁସଂଗଠିତ କରିପାରିଛନ୍ତି । ନିର୍ବାଚନରେ କଂଗ୍ରେସର ବିପୁଳ ବିଜୟରେ ମହତ୍ୱପୂର୍ଣ୍ଣ ଭୂମିକା ମଧ୍ୟ ଗ୍ରହଣ କରିଛନ୍ତି ।

ଜଣେ କଳାପ୍ରାଣ ଓ ସଂସ୍କୃତିସମ୍ପନ୍ନ ବ୍ୟକ୍ତି ଭାବରେ ଡଃ ଗମାଙ୍ଗ ଓଡ଼ିଶାବାସୀଙ୍କର ଅତି ଆପଣାର ଓ ଶ୍ରଦ୍ଧାଭାଜନ । ପାରମ୍ପରିକ ଆଦିବାସୀ ଲୋକବାଦ୍ୟର କୁଶଳୀ ବାଦ୍ୟକାର ରୂପେ କଳା ଜଗତରେ ସେ ଅଶେଷ ସୁଖ୍ୟାତି ଅର୍ଜନ କରିଛନ୍ତି । ଶାସନର ଉଚ୍ଚ ଆସନରେ ଅଧିଷ୍ଠିତ ଥାଇ ମଧ୍ୟ ସାଧାରଣ ମଞ୍ଚରେ ତାଙ୍କୁ ବାଦନରେ ତାଙ୍କର ଅପୂର୍ବ ଉନ୍ମାଦନା ଓ ଭାବାବେଶ ଦେଖି ଦର୍ଶକମାନେ ଅଭିଭୂତ ହୋଇପଡ଼ନ୍ତି । ଏକାତ୍ମତା ଓ ଅନ୍ତରଙ୍ଗତା ତାଙ୍କର କଳାକାର ଜୀବନକୁ ସାର୍ଥକ କରିଛି । ସଂଗୀତ ଓ ସାହିତ୍ୟ ସାଧନା ତାଙ୍କ ସାଧକ ପ୍ରାଣକୁ ସମୁଜ୍ଜ୍ୱଳ କରିଛି ।

ରାଜନୀତି ବୃତ୍ତି ହେଲେ ମଧ୍ୟ ନୃତ୍ୟ, ସଂଗୀତ ତାଙ୍କର ସ୍ୱଭାବ ସୁଲଭ, ସହଜାତ ପ୍ରବୃତ୍ତି । ବଣ- ପାହାଡ଼ରେ ଅଜ୍ଞାତ ଓ ଲୁକ୍କାୟିତ ଆଦିବାସୀ ପ୍ରତିଭାକୁ ଆଲୋକକୁ ଆଣିବାରେ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ । ତାଙ୍କ ପ୍ରତିଷ୍ଠିତ ହିତେନ କଳଚରାଲ ଗ୍ରୁପ୍ ସାରା ଦେଶରେ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରି ସୁଖ୍ୟାତି ଅର୍ଜନ କରିଛି । ଆଦିବାସୀ ଲୋକ ନୃତ୍ୟ ଓ ସଂଗୀତର ପ୍ରସାର ଓ ପ୍ରଚାରରେ ଡଃ ଗମାଙ୍ଗଙ୍କ ଭୂମିକା ସ୍ମରଣୀୟ ହୋଇ ରହିବ । ଡାମ୍ପ, ସାରୀ, ଖଞ୍ଜିରୀ, ବଂଶୀ, ତବଲା, ମୃଦଙ୍ଗ, ଢେଙ୍କୁ ଆଦି ବାଦ୍ୟ ବାଦନରେ ସେ ଧୁରନ୍ଧର । ସାହିତ୍ୟ ସାଧନା ଓ ପୁସ୍ତକ ଅଧ୍ୟୟନ ତାଙ୍କର କର୍ମମୟ ଜୀବନର ଏକ ମହତ୍ୱପୂର୍ଣ୍ଣ ଅଙ୍ଗ । ଓଡ଼ିଆ ଭାଷାରେ ସେ ସଉରା ଆଦିବାସୀ କବିତା ଗ୍ରନ୍ଥ ରଚନା କରିଛନ୍ତି । ଆଦବାସୀ ହରିଜନଙ୍କ ପାଇଁ ସାମ୍ବିଧାନିକ ବ୍ୟବସ୍ଥା ଉପରେ ଏକ ଉପାଦେୟ ପୁସ୍ତକ ଲେଖିଛନ୍ତି ।

ବ୍ୟକ୍ତିଗତ ଜୀବନରେ ଡଃ ଗମାଙ୍ଗ ଅତ୍ୟନ୍ତ ସରଳ, ଅମାୟିକ ଓ ସମ୍ବେଦନଶୀଳ । ମାନବିକତା, ମହାନୁଭବତା ଓ ନୀତିନିଷ୍ଠତା ତାଙ୍କର  ବହୁମୁଖୀ ବ୍ୟକ୍ତିତ୍ୱର ବିଶେଷତ୍ୱ । ଅହମିକା, ଅହଙ୍କାର, ଆତ୍ମବଡ଼ିମା ତାଙ୍କୁ କେବେ ସ୍ପର୍ଶ କରିନାହିଁ । ଐଶ୍ୱର୍ଯ୍ୟ, ବିଳାସ ଠାରୁ ସେ ସବୁବେଳେ ଦୂରରେ ଥାଆନ୍ତି । ଦରିଦ୍ର ଚାଷୀ ପରିବାରରେ ତାଙ୍କର ଜନ୍ମ । ଶିକ୍ଷକତାରେ ସାଧାରଣ ଜୀବନ ଆରମ୍ଭ । ଅଦୃଷ୍ଟର ଇଙ୍ଗିତରେ ରାଜନୀତିରେ ପ୍ରବେଶ କଲେ । ନିଜର ସୁକୃତି ଓ ବିଭୁ ଆଶୀର୍ବାଦରୁ ସେ ଆଜି ଶାସନର ସର୍ବୋଚ୍ଚ ଆସନରେ ଅଧିଷ୍ଠିତ । ଉଚ୍ଚକୁ ଉଠିବାର ଅଭିଳାଷ ତାଙ୍କ ମନରେ କେବେ ନଥିଲା କି ନାହିଁ । ସମାଜର ଦରିଦ୍ର, ଦଳିତ, ନିଷ୍ପେଷିତ ଜନସାଧାରଣଙ୍କ ପ୍ରତି ସେ ସଦା ସମ୍ବେଦନଶୀଳ । କ୍ଷମତା ନିଶାରେ ସେ  କେବେ ମୋହଗ୍ରସ୍ତ ହୋଇନାହାନ୍ତି । ନିଜର ନିର୍ମଳ ଓ ନିଷ୍କଳଙ୍କ ଭାବମୂର୍ତ୍ତି, ନମ୍ର ପ୍ରକୃତି  ତାଙ୍କୁ ଆଜି ସଫଳତା ଓ ଲୋକପ୍ରିୟତାର ଶିଖରରେ ପହଞ୍ଚାଇ ଦେଇଛି । ଅଜାତଶତ୍ରୁ ଓ ଅପରାଜେୟ ରୂପେ ନିଜକୁ ସେ ପ୍ରତିଷ୍ଠା କରି ପାରିଛନ୍ତି ।

ମୁଖ୍ୟମନ୍ତ୍ରୀ ପଦରେ ଅଳଙ୍କୃତ ହେବା ପରେ ଡଃ ଗମାଙ୍ଗ ରାଜ୍ୟବାସୀଙ୍କ କଲ୍ୟାଣ ପାଇଁ ଅଙ୍ଗୀକାରବଦ୍ଧ ହୋଇ କହିଛନ୍ତି– ''ଓଡ଼ିଶାର ସମସ୍ୟା ସହିତ ମୁଁ ସୁପରିଚିତ । ରାଜ୍ୟର ନେତା, ପ୍ରଶାସକ, ସବୁଶ୍ରେଣୀର ଜନ ପ୍ରତିନିଧିମାନଙ୍କ ସହିତ ମୋର ସମ୍ପର୍କ ଅତି ନିବିଡ଼ । ମୁଁ ଯେଉଁ ଗୁରୁ ଦାୟିତ୍ୱ ବହନ କରିଛି, ତାହାକୁ ସୁଚାରୁ ରୂପେ ତୁଲାଇ ପାରିବି ।''

ତାଙ୍କ ସରକାରର ଆଭିମୁଖ୍ୟ ଓ ଭବିଷ୍ୟତ କାର୍ଯ୍ୟକ୍ରମ ସମ୍ପର୍କରେ ସୂଚନା ଦେଇ ସେ କହିଛନ୍ତି– ''ପ୍ରଶାସନର ସୁଫଳ ଯେପରି ଜନସାଧାରଣଙ୍କ ନିକଟରେ ପହଞ୍ଚି ପାରିବ, ସେଥିପ୍ରତି ଗୁରୁତ୍ୱ ଦିଆଯିବ । ସଚିବାଳୟଠାରୁ ପଞ୍ଚାୟତ ପର୍ଯ୍ୟନ୍ତ ସମସ୍ତ ଜନ କଲ୍ୟାଣ କାର୍ଯ୍ୟର ତଦାରଖ କରାଯିବ । ପ୍ରଶାସନ ସବୁ କ୍ଷେତ୍ରରେ ଜନସାଧାରଣଙ୍କ ନିକଟରେ ଉତ୍ତରଦାୟୀ ରହିବ । ରାଜ୍ୟର ବିଭିନ୍ନ ଉନ୍ନୟନ କାର୍ଯ୍ୟକ୍ରମର ସମୀକ୍ଷା କରାଯିବ ଏବଂ ଦୋଷତ୍ରୁଟିଗୁଡ଼ିକ ସୁଧାରିବା ଦିଗରେ ପଦକ୍ଷେପ ନିଆଯିବ । ଆଦିବାସୀ, ହରିଜନ ଓ ଦୁର୍ବଳ ଶ୍ରେଣୀ ଲୋକଙ୍କ ସମସ୍ୟା ପ୍ରତି ଅଧିକ ଧ୍ୟାନ ଦିଆଯିବ । ଯେଉଁ ସବୁ ଅଞ୍ଚଳରେ ପ୍ରଶାସନର ଆଲୋକ ପଡ଼ି ପାରୁନାହିଁ, ସେ ସବୁ ଅଞ୍ଚଳର ବିକାଶ ପ୍ରତି ସରକାର ସ୍ୱତନ୍ତ୍ର ଦୃଷ୍ଟି ଦେବେ ।

ମୁଖ୍ୟମନ୍ତ୍ରୀ ଡଃ ଗମାଙ୍ଗଙ୍କ ବଳିଷ୍ଠ ନେତୃତ୍ୱ ଓ ଲୋକାଭିମୁଖୀ ଶାସନ ଓଡ଼ିଶାକୁ ପ୍ରଗତି ପଥରେ ଆଗେଇ ନେବାପାଇଁ ନୂତନ ଆଶା, ଉତ୍ସାହ ଓ ଉନ୍ମାଦନାର ବାତାବରଣ ସୃଷ୍ଟି କରିଛି ।

ଏହି ଶୁଭ ଅବସରରେ ଆମେ ଓଡ଼ିଶାବାସୀଙ୍କ ସହିତ ନୂତନ ମୁଖ୍ୟମନ୍ତ୍ରୀ ଏବଂ ନବଗଠିତ ମନ୍ତ୍ରୀମଣ୍ଡଳଙ୍କୁ ବିନମ୍ର ଅଭିନନ୍ଦନ ଓ ହାର୍ଦ୍ଦିକ ସ୍ୱାଗତ ଜଣାଉଛୁ ।

# ଇତିହାସ ପୁରୁଷ ସମ୍ରାଟ ଖାରବେଳ

● ଡଃ ସି. ରଙ୍ଗରାଜନ

ଇତିହାସ ହେଉଛି ସମାଜ ଓ ରାଷ୍ଟ୍ରର ସ୍ମାରକ । ସାମ୍ପ୍ରତିକ ସମସ୍ୟାର ସମାଧାନ ତଥା ଭବିଷ୍ୟତର ଆହ୍ୱାନକୁ ସମ୍ମୁଖୀନ ହେବା ପାଇଁ ଆମର ଅତୀତ ଇତିହାସ ଜାଣିବା ଆବଶ୍ୟକ । ଇତିହାସ ଆମକୁ ଉଭୟ ଗର୍ବିତ ଓ ବିନମ୍ର କରିଥାଏ । ଅତୀତର ସୁକର୍ମ ପାଇଁ ଆମେ ଗର୍ବିତ ଓ ଆନନ୍ଦିତ ହେବା ସ୍ୱାଭାବିକ । ଏହା ସଂଗେ ସଂଗେ ଅତୀତରୁ ଆମେ ଆମର ତ୍ରୁଟି ବିଚ୍ୟୁତି ବିଷୟରେ ଶିକ୍ଷାଲାଭ କରିବା ଉଚିତ । ଇତିହାସ ଆମ ପାଇଁ ଏକ ଉତ୍ତମ ଶିକ୍ଷକ । ଭାରତବର୍ଷର ଅନ୍ୟାନ୍ୟ ପ୍ରାନ୍ତ ଭଳି ଓଡ଼ିଶାର ଇତିହାସ ବହୁ ପୁରାତନ । ଏହା ଖ୍ରୀଷ୍ଟ ଜନ୍ମର ବହୁ ପୂର୍ବରୁ ଶତାବ୍ଦୀ ଶତାବ୍ଦୀ ଧରି ବିଦ୍ୟମାନ । ପ୍ରାଚୀନ କଳିଙ୍ଗ ଦେଶ କହିଲେ ଓଡ଼ିଶାର କେତେକ ଅଂଶକୁ ବୁଝାଉଥିଲା । କଳିଙ୍ଗ ଯୁଦ୍ଧପରେ ସମ୍ରାଟ ଅଶୋକ ସମସ୍ତ ସଂଗ୍ରାମକୁ ପରିହାର କରିଥିଲେ । କଳିଙ୍ଗ ଯୁଦ୍ଧ ତାଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ଆଣିଥିଲା । ମୌର୍ଯ୍ୟମାନଙ୍କ କଳିଙ୍ଗ ଅଧିକାର ପରେ କଳିଙ୍ଗର ଇତିହାସ ସମ୍ପୂର୍ଣ୍ଣ ଅନ୍ଧକାର ହୋଇପଡ଼ିଥିଲା । ମଗଧ କବଳରୁ କେବେ କଳିଙ୍ଗ ମୁକ୍ତିଲାଭ କଲା ଏ ସମ୍ପର୍କରେ ଇତିହାସ ନୀରବ । ଉଦୟଗିରି ହାତୀଗୁମ୍ଫା ଶିଳାଲିପିରୁ ଜଣାଯାଏ ଖାରବେଳ ନାମକ ଜଣେ ଅସାଧାରଣ ଓ ଉଚ୍ଚାଭିଳାଷୀ ରାଜାଙ୍କ ରାଜତ୍ୱ ସମୟରେ କଳିଙ୍ଗ ସମୃଦ୍ଧିର ଚରମ ସୀମାରେ ପହଞ୍ଚିଥିଲା । ଏହି ସମୟରେ କଳିଙ୍ଗର ସୀମା କୃଷ୍ଣାନଦୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ସୁଦୂର ଦାକ୍ଷିଣାତ୍ୟର ପାଣ୍ଡ୍ୟ ରାଜାଙ୍କୁ ମଧ୍ୟ ଖାରବେଳ ପରାସ୍ତ କରିଥିଲେ ।

ଜଣେ ଉତ୍ତମ ଶାସକ ଭାବରେ ପ୍ରଜାଙ୍କ କଲ୍ୟାଣ ଥିଲା ତାଙ୍କର ମୁଖ୍ୟ ଲକ୍ଷ୍ୟ । ସେ ନିଜେ ଜଣେ ଉଚ୍ଚକୋଟୀର ସଂଗୀତଜ୍ଞ ଥିଲେ । କଳା ଓ ସଂସ୍କୃତିର ବିକାଶ ପାଇଁ ପ୍ରୋତ୍ସାହନ ମଧ୍ୟ ଦେଉଥିଲେ । ତିନି ଶତାବ୍ଦୀ ପୂର୍ବରୁ ନନ୍ଦ ରାଜାଙ୍କ ଦ୍ୱାରା ଖନନ କରାଯାଇଥିବା ଏକ ଜଳସେଚନ ନାଳକୁ ଜଳସେଚନ ସୁବିଧା ପାଇଁ ସଂପ୍ରସାରିତ କରିଥିଲେ । ଖାରବେଳ ଥିଲେ ଜଣେ ମହାନ ନିର୍ମାତା । ଭୟଙ୍କର ବାତ୍ୟାରେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଥିବା କଳିଙ୍ଗ ନଗରୀର ରାଜଧାନୀରେ ଖାରବେଳ ବହୁସଂଖ୍ୟକ ତୋରଣ, ପ୍ରାଚୀର ଏବଂ ଗୃହ ନିର୍ମାଣ କରି ନଗରୀର ଶ୍ରୀବୃଦ୍ଧି କରିଥିଲେ ।

ଜୈନ ଧର୍ମାବଲମ୍ବୀ ଥିଲେ ମଧ୍ୟ ତାଙ୍କୁ ''ଭିକ୍ଷୁରାଜା'' ବୋଲି କୁହାଯାଉଥିଲା । ସେ ଏକ ଧର୍ମସ୍ତୂପ ନିର୍ମାଣ କରିବା ସହିତ ଅନେକଗୁଡ଼ିଏ ଗୁମ୍ଫା ମଧ୍ୟ ଖନନ କରିଥିଲେ । ସେ ଧର୍ମାନ୍ଧ ବ୍ୟକ୍ତି ନଥିଲେ । ରାଜ୍ୟରେ ସମସ୍ତ ଧର୍ମ ସମ୍ପ୍ରଦାୟ ପ୍ରତି ତାଙ୍କର ସମ୍ମାନ ରହିଥିଲା । ଜଣେ ଉତ୍ତମ ରାଜାଙ୍କ ପାଖରେ ଯେଉଁ ସବୁ ସୁଗୁଣ ରହିବା କଥା, ଖାରବେଳ ସେସବୁର ଅଧିକାରୀ ଥିଲେ । ଖାରବେଳଙ୍କ ସମୟରେ କଳିଙ୍ଗ ସାମ୍ରାଜ୍ୟ ଯେପରି ସମୃଦ୍ଧି ଲାଭ କରିଥିଲା ତାଙ୍କର ମୃତ୍ୟୁ ପରେ ତାହା ବିଲୁପ୍ତ ହୋଇଯାଇଥିଲା । ତାଙ୍କ ରାଜତ୍ୱ କାଳରେ କଳିଙ୍ଗ ସାମ୍ରାଜ୍ୟର ଗୌରବ ଆଜି ମଧ୍ୟ ଆମପାଇଁ ପ୍ରେରଣାର ଉତ୍ସ ହୋଇ ରହିଛି । ଆମକୁ ସେଦିନର ସେହି ଶକ୍ତି ଓ ସୃଷ୍ଟି ସମ୍ଭାରକୁ ପୁନର୍ଜୀବିତ କରିବାକୁ ପଡ଼ିବ ।

ଭାରତର ସାଂସ୍କୃତିକ ତଥା ଧାର୍ମିକ ଇତିହାସରେ ଜୈନଧର୍ମ ଏକ ଅବିଚ୍ଛେଦ୍ୟ ଅଙ୍ଗ । ଜୈନ ଧର୍ମ କେବଳ ଧର୍ମ ମଧ୍ୟରେ ସୀମିତ ହୋଇ ରହିନଥିଲା । ଏହା କଳା, ସାହିତ୍ୟ ତଥା ଅନ୍ୟାନ୍ୟ ସାଂସ୍କୃତିକ କ୍ଷେତ୍ରକୁ ମଧ୍ୟ ବହୁଭାବରେ ପ୍ରଭାବିତ କରିଥିଲା । ଆମ ଦେଶର ପ୍ରାୟ ପ୍ରତ୍ୟେକ ଭାଷାର ସାହିତ୍ୟ ଜୈନ ସନ୍ନ୍ୟାସୀ ତଥା ବୁଦ୍ଧିଜୀବିମାନଙ୍କ ଦ୍ୱାରା ସମୃଦ୍ଧି ଲାଭ କରିପାରିଛି ।

ଜୈନ ଧର୍ମକୁ ପ୍ରଭୁ ମହାବୀରଙ୍କର ମହାନ ବାଣୀ ଭାବରେ ଗ୍ରହଣ କରାଯାଇଥିଲେ ମଧ୍ୟ, ଜୈନମାନେ ତାଙ୍କୁ ୨୪ତମ ତୀର୍ଥଙ୍କର ରୂପେ ସମ୍ମାନିତ କରିଥାନ୍ତି । ତେଣୁ ମହାବୀର ଏକ ନୂତନ ଧର୍ମର ଉଦ୍ଭାବକ ନଥିଲେ, ସେ ଏହାକୁ ଏକ ନିର୍ଦ୍ଦିଷ୍ଟ ରୂପରେଖ ପ୍ରଦାନ କରିଥିଲେ । ମହାବୀରଙ୍କୁ ଜଣେ ମହାନ ଯୋଦ୍ଧା କୁହାଯାଏ । ରାଜ୍ୟ ଅଥବା ଧନ ସମ୍ପତ୍ତି ପାଇଁ ସେ କୌଣସି ଯୁଦ୍ଧ କରିନଥିଲେ । ଅହଂ ଉପରେ ସେ ବିଜୟ ଲାଭ କରିଥିଲେ । ସେଥିପାଇଁ ତାଙ୍କୁ ଜିନ ବା ବିଜେତା କୁହାଯାଏ ।

ଜୈନ ସନ୍ନ୍ୟାସୀମାନେ ପାଞ୍ଚୋଟି ସଂକଳ୍ପ ନିର୍ଦ୍ଧାରଣ କରିଛନ୍ତି । ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଏବଂ ଅପରିଗ୍ରହ । କାହାରିକୁ ଜୀବନରେ ମାରିବ ନାହିଁ, ମିଛ କହିବ ନାହିଁ, ଯାହା ଦିଆ ନଯାଉଛି ତାକୁ ଗ୍ରହଣ କରିବ ନାହିଁ, ବଦାନ୍ୟତା ବଜାୟ ରଖିବ ଏବଂ ବାହ୍ୟବସ୍ତୁ ପ୍ରତି ଆସକ୍ତି ପରିତ୍ୟାଗ କରିବ ।

ଜୈନ ଧର୍ମାବଲମ୍ବୀମାନେ ଦୁଇ ଶ୍ରେଣୀରେ ବ୍ରତୀ ଯଥା– ଅଣୁବ୍ରତ ଏବଂ ମହାବ୍ରତ । ଜୈନଧର୍ମ ଉପାସକମାନେ ଅଣୁବ୍ରତରେ ବ୍ରତୀ ହୋଇଥିବାବେଳେ ସନ୍ନ୍ୟାସୀମାନେ ମହାବ୍ରତ ପାଳନ କରିଥାନ୍ତି । ଏହି ବ୍ରତ ଗୁଡ଼ିକମଧ୍ୟରୁ ଅହିଂସା ଭାରତୀୟ ସମାଜକୁ

ସବୁଠାରୁ ଅଧିକଭାବେ ପ୍ରଭାବିତ କରିପାରିଛି । ଅହିଂସା ନାସ୍ତିବାଚକ ଦୃଷ୍ଟିଭଙ୍ଗୀ ନୁହେଁ । ଏହାର ଗୋଟିଏ ଆସ୍ତିବାଚକ ଅର୍ଥ ରହିଛି । ଏଥିରେ ବିଶ୍ୱପ୍ରେମ ଓ ପ୍ରତ୍ୟେକ ଜୀବନ୍ତ ବସ୍ତୁକୁ ଭଲପାଇବା ଭାବନା ନିହିତ । ଯିଏ ଅହିଂସା ଧର୍ମ ଆଚରଣ କରିଥାଏ ତାପାଖରେ ଘୃଣାର ସ୍ଥାନ ନଥାଏ । ଯଦି ଆମ୍ଭେମାନେ ଦୈନନ୍ଦିନ ଜୀବନରେ ଅହିଂସା ନୀତିରେ ଅନୁପ୍ରାଣିତ ହେବା, ତେବେ ପୃଥିବୀ ଆମପାଇଁ ଉପଯୁକ୍ତ ବାସସ୍ଥାନ ହେବ ।

୨୦୦୦ ବର୍ଷ ତଳେ ମହାବୀର ଆମକୁ ଯେଉଁ ଶିକ୍ଷା ଦେଇଯାଇଥିଲେ, ସେତେବେଳ ଅପେକ୍ଷା ବର୍ତ୍ତମାନ ତାହାର ପ୍ରାସଙ୍ଗିକତା ଅଧିକ, କାରଣ ମଣିଷ ଆଜି ଧ୍ୱଂସାତ୍ମକ ଅସ୍ତ୍ରଶସ୍ତ୍ରରେ ବଳୀୟାନ ହେବାକୁ ବସିଛି ।

ବିଶ୍ୱାସ ହେଉଛି ସବୁ ଧର୍ମର ମୂଳତତ୍ତ୍ୱ । କିନ୍ତୁ କେବଳ ବିଶ୍ୱାସ ଦ୍ୱାରା କିଛି କରାଯାଇନପାରେ । ଏଥିପାଇଁ ଜ୍ଞାନର ଆବଶ୍ୟକତା ରହିଛି ।

ବୌଦ୍ଧଧର୍ମ ଭଳି ଜୈନଧର୍ମ ମଧ୍ୟ ନିର୍ଦ୍ଧାରିତ ବ୍ରତଗୁଡ଼ିକ ପାଳନ କରି ଯଥାର୍ଥ ଲକ୍ଷ୍ୟରେ ପହଞ୍ଚିବା ପାଇଁ ମାର୍ଗ ପ୍ରଦର୍ଶନ କରିଥାଏ । ପ୍ରକୃତ ମାର୍ଗରେ ପରିଚାଳିତ ହେଲେ କେବଳ ଆମ ନିଜର ନୁହେଁ, ସମଗ୍ର ସମାଜର ମଧ୍ୟ ଉନ୍ନତି ସାଧିତ ହେବ । ଏହା ଉଭୟ ବ୍ୟକ୍ତି ଓ ସମାଜର ଉନ୍ନତିରେ ସହାୟକ ହୋଇଥାଏ ।

ଜୈନ ଧର୍ମ ଦେଶର ପ୍ରାୟ ପ୍ରତ୍ୟେକ ସ୍ଥାନରେ ପ୍ରାଧାନ୍ୟ ଲାଭ କରିଥିଲା । ବିଭିନ୍ନ ସ୍ଥାପତ୍ୟ, ସାହିତ୍ୟ ଓ କଳାକୃତିରୁ ତାହା ସ୍ପଷ୍ଟ ।

(୧୯୯୯ ଜାନୁଆରୀ ୧୬ ତାରିଖରେ ସୂଚନା ଭବନଠାରେ ଖାରବେଳ ମହୋତ୍ସବ ଓ 'ଓଡ଼ିଶାରେ ଜୈନ ପରମ୍ପରା' ଶୀର୍ଷକ ଆଲୋଚନା ଚକ୍ରରେ ରାଜ୍ୟପାଳଙ୍କ ପ୍ରଦତ୍ତ ଅଭିଭାଷଣ ।)

□□□

# ସ୍ୱରାଷ୍ଟ୍ର ବିଭାଗର କାର୍ଯ୍ୟାବଳୀ

ରାଜ୍ୟରେ ଶାନ୍ତି ଶୃଙ୍ଖଳା ରକ୍ଷାକରିବା, ଅପରାଧ ନିରାକରଣ ଓ ଅପରାଧୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଓ ଅଭିଯୋଗ ଗ୍ରହଣ ଏବଂ ଆରକ୍ଷୀ ଅଗ୍ନିଶମ ସେବା ଓ କାରାଗାର କର୍ମଚାରୀମାନଙ୍କୁ ପ୍ରଶାସନିକ ସେବା ଯୋଗାଇଦେବା ସ୍ୱରାଷ୍ଟ୍ର ବିଭାଗର ଦାୟିତ୍ୱ ଓ କର୍ତ୍ତବ୍ୟ ।

## ପୁଲିସ (ଆରକ୍ଷୀ ଶୃଙ୍ଖଳା ରକ୍ଷା)

କେତେକ ସ୍ଥାନୀୟ ଘଟଣାକୁ ବାଦଦେଲେ ଗୁରୁତ୍ୱପୂର୍ଣ୍ଣ ଏକାଦଶ ଏବଂ ଦ୍ୱାଦଶ ଲୋକସଭା ନିର୍ବାଚନ ଶାନ୍ତିଶୃଙ୍ଖଳା ସହ ସମ୍ପାଦିତ ହୋଇଥିଲା । ଯୌତୁକ ପ୍ରଥା, ଧର୍ଷଣ, ଆଦିବାସୀ ଓ ହରିଜନମାନଙ୍କ ଉପରେ ନିର୍ଯ୍ୟାତନା କେସ୍‌ଗୁଡ଼ିକୁ ଜରୁରୀକାଳୀନ ଭିତ୍ତିରେ ଅନୁସନ୍ଧାନ କରାଯାଇ ଅଭିଯୁକ୍ତ ଆସାମୀମାନଙ୍କୁ ଗିରଫ କରାଯାଉଛି । ଅପରାଧୀମାନଙ୍କୁ ଧରିବା ପାଇଁ ପୁଲିସ କମ୍ପ୍ୟୁଟର, ସନ୍ଧାନୀ କୁକୁର ସ୍କ୍ୱାର୍ଡ, ଫଟୋ ସଂସ୍ଥା, ଲିଖନ ସଂସ୍ଥା, ପାରାସେବା ଏବଂ ବେତାର ଯନ୍ତ୍ର ଆଦି ବ୍ୟବହୃତ କରାଯାଉଛି ।

ଦଶମ ଅର୍ଥ ଆୟୋଗ ଅନୁଦାନରେ ୯ଗୋଟି ଥାନା ଗୃହ, ଅନୁଗୋଳ ପୁଲିସ ତାଲିମ କେନ୍ଦ୍ରର ଲାଇବ୍ରେରୀ, ମହିଳା ହଷ୍ଟେଲ ଏବଂ କର୍ମଚାରୀଙ୍କ ନିମନ୍ତେ ବାସଗୃହ ନିର୍ମାଣ କରାଯାଉଛି । ୪୨୮ଗୋଟି କନ୍‌ଷ୍ଟେବଲ ଏବଂ ୧୫୦ଗୋଟି ରାଇଟର କନ୍‌ଷ୍ଟେବଲ ପଦବୀ ସୃଷ୍ଟି ସହ ଭୁବନେଶ୍ୱରର ନୟାପଲ୍ଲୀ ଓ ଏରୋଡ୍ରମ ଏବଂ ବାଲେଶ୍ୱର ଜିଲ୍ଲାର ବାମପଦା ଠାରେ ନୂତନ ଥାନା ଖୋଲାଯାଉଛି । ପୁଲିସ ଫୋର୍ସକୁ ଅଧିକ କାର୍ଯ୍ୟକ୍ଷମ କରିବା ପାଇଁ ୧୪ଗୋଟି ଆର୍ମଡ ପୁଲିସ ପ୍ଲାଟୁନ ନୂତନଭାବେ ସୃଷ୍ଟି କରାଯାଉଛି ।

## ବେସାମରିକ ପ୍ରତିରକ୍ଷା

ବିଗତ ୩ବର୍ଷ ମଧ୍ୟରେ ୬୮୧୫ ଜଣ ସ୍ୱେଚ୍ଛାସେବୀଙ୍କୁ ବେସାମରିକ ପ୍ରତିରକ୍ଷା ତାଲିମ ପ୍ରଦାନ କରାଯାଇଛି । ଦୁଇଟି ସ୍ତରରେ ନୂଆକରି ୪ହଜାର ଗ୍ରାମରକ୍ଷୀ ପଦବୀ ସୃଷ୍ଟି ହୋଇଅଛି ଏବଂ ଚଳିତ ବର୍ଷରେ ଆଉ ୨ହଜାର ପଦବୀ ସୃଷ୍ଟି କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଅଛି ।

## କାରାଗାର

୧୯୯୬-୯୭ ବର୍ଷରେ କୁଜଙ୍ଗ ଏବଂ ଉମରକୋଟ ଉପ-କାରାଗାରକୁ କାର୍ଯ୍ୟକ୍ଷମ କରାଯାଇଛି । ଏତଦ୍ ବ୍ୟତୀତ ବନ୍ଦୀମାନଙ୍କୁ ଉନ୍ନତ ଚିକିତ୍ସା ସାଙ୍ଗକୁ ସମସ୍ତ ଦରକାରୀ ସାମଗ୍ରୀ ଠିକ୍ ସମୟରେ ଯୋଗାଇ ଦିଆଯାଉଛି ।

## ଅଗ୍ନିଶମ ସେବା

୧୯୮୫-୯୬ରୁ ୧୯୯୮-୯୯ ମସିହା ମଧ୍ୟରେ ୧୨ଗୋଟି ଅଗ୍ନିଶମ ସେବା କେନ୍ଦ୍ର ଖୋଲାଯାଇଛି । ଉପରୋକ୍ତ ସମୟ ମଧ୍ୟରେ କେନ୍ଦ୍ରଗୁଡ଼ିକର ସମୟୋପଯୋଗୀ ପଦକ୍ଷେପ ଯୋଗୁଁ ୧୩,୧୦୯ ଜଣଙ୍କର ଜୀବନରକ୍ଷା ହୋଇପାରିଛି ଏବଂ ୧୬୮କୋଟି ଟଙ୍କାର ସମ୍ପତ୍ତି ଅଗ୍ନିକବଳରୁ ରକ୍ଷା କରାଯାଇପାରିଛି ।

# ବିକାଶ ପଥେ ଓଡ଼ିଶାର କୃଷି

ଓଡ଼ିଶାର ଅର୍ଥନୈତିକ ବିକାଶ କୃଷି ଉପରେ ନିର୍ଭରଶୀଳ । କୃଷି ହିଁ ପ୍ରାୟ ୬୪ ପ୍ରତିଶତ ବ୍ୟକ୍ତିଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷଭାବେ କର୍ମ ନିଯୁକ୍ତି ପ୍ରଦାନ କରିଥାଏ । ଆମ ରାଜ୍ୟ ଓଡ଼ିଶା ପ୍ରାକୃତିକ ବିଭବରେ ପରିପୂର୍ଣ୍ଣ । ଏହାର ମୃତ୍ତିକା, ବୃଷ୍ଟିପାତ ଓ ଜଳବାୟୁ ଚାଷ କାମ ପାଇଁ ଅତ୍ୟନ୍ତ ଅନୁକୂଳ । ଏହା ସତ୍ତ୍ୱେ ଅଦ୍ୟାବଧି ଆମ ରାଜ୍ୟ କୃଷି ଉତ୍ପାଦନ କ୍ଷେତ୍ରରେ ଅନ୍ୟାନ୍ୟ ପଡ଼ୋଶୀ ରାଜ୍ୟ ତୁଳନାରେ ଆଶାନୁରୂପ ଅଗ୍ରଗତି କରିପାରି ନାହିଁ । ଆମ ରାଜ୍ୟ କ୍ରମାଗତ ଭାବେ, ବଢ଼ି, ମରୁଡ଼ି, ବାତ୍ୟା ଭଳି ପ୍ରାକୃତିକ ବିପର୍ଯ୍ୟୟ ଦ୍ୱାରା ପ୍ରାୟ ପ୍ରତିବର୍ଷ କ୍ଷତିଗ୍ରସ୍ତ । ଏହି ପ୍ରାକୃତିକ ବିପତ୍ତି ଅନେକାଂଶରେ ଚାଷୀଙ୍କ ହତାଶାର କାରଣ । ଏତ ଗଲା ପ୍ରକୃତିର ଆମ ରାଜ୍ୟ ପ୍ରତି ବିମୁଖଭାବ, ଯାହାକୁ ପ୍ରତିରୋଧ କରିବାର ଶକ୍ତି ଆମର ନାହିଁ । କିନ୍ତୁ କୃଷି କ୍ଷେତ୍ରରେ ପ୍ରଗତିର ମୁଖ୍ୟ ଅନ୍ତରାୟ ହେଲା– ଚାଷପ୍ରତି ଶିକ୍ଷିତ ଯୁବ ସମ୍ପ୍ରଦାୟର ବିମୁଖ ଭାବ ।

ଆମ ରାଜ୍ୟର ପ୍ରାକୃତିକ ବିଭବ, ରାଜ୍ୟର ସ୍ଥିତି, ଯୁବ ସମ୍ପ୍ରଦାୟର ମନୋଭାବ ସବୁ କଥାକୁ ବିଚାର କରି ଚାଷକୁ ଏକ ଲାଭଜନକ ଆଦରଣୀୟ ବ୍ୟବସାୟରେ ପରିଣତ କରିବା ନିମନ୍ତେ ସରକାର ଅଙ୍ଗୀକାରବଦ୍ଧ । ସେଇଥିପାଇଁ କୃଷିନୀତି ପ୍ରଣୟନ ଓ କୃଷିକୁ ଶିଳ୍ପର ମାନ୍ୟତା ପ୍ରଦାନ କରାଯାଇଛି ।

ଓଡ଼ିଶାର ୮୭% ଲୋକ ଗ୍ରାମାଞ୍ଚଳରେ ବାସ କରନ୍ତି ଏବଂ ୭୦% ରୁ ଅଧିକ ଲୋକ କୃଷି ଉପରେ ନିର୍ଭର କରନ୍ତି । ରାଜ୍ୟର ମୋଟ ଚାଷୀ ପରିବାର ୪୬ ଲକ୍ଷ ଏବଂ କୃଷି ଶ୍ରମିକ ପରିବାର ୨୯ଲକ୍ଷ ଏବଂ ରାଜ୍ୟର ମୋଟ ଭୌଗୋଳିକ କ୍ଷେତ୍ରଫଳର ୪୧% ଚାଷ ଜମି । ଏଣୁ ଓଡ଼ିଶାର ଯୋଜନା ଏବଂ ଅର୍ଥନୀତି ମୁଖ୍ୟତଃ କୃଷି ଓ କୃଷକଙ୍କ ଉପରେ ନିର୍ଭର କରେ । ବହୁ କିସମର ଉର୍ବର ମୃତ୍ତିକା, ପ୍ରଚୁର ଜଳ ସମ୍ପଦ ଓ ୧୦ ପ୍ରକାରର କୃଷି ଜଳବାୟୁ ଅଞ୍ଚଳ ଥିବାରୁ ରାଜ୍ୟରେ କୃଷି ବିକାଶ ପାଇଁ ଅପୂର୍ବ ସୁଯୋଗ ରହିଛି । କୃଷି ଉତ୍ପାଦନ କ୍ଷେତ୍ରରେ ବହୁ ବାଧାବିଘ୍ନ ରହିଥିଲେ ମଧ୍ୟ ରାଜ୍ୟରେ ୧୯୫୦-୫୧ ମସିହାରେ ମାତ୍ର ୨୪ ଲକ୍ଷ ଟନ୍ ଖାଦ୍ୟ ଉତ୍ପାଦିତ ହେଉଥିବା ସ୍ଥଳେ ୧୯୯୫-୯୬ ରେ ଏହା ୭୯ ଲକ୍ଷ ଟନ୍‌ରେ ପହଞ୍ଚିଛି । ଏହା ସମ୍ଭବ ହୋଇଛି ବଳିଷ୍ଠ ସରକାରୀ ନୀତି, ଜଳସେଚନ, ଶକ୍ତି, କୃଷି ଋଣ ଯୋଗାଣ, ଆଧୁନିକ ଚାଷ କୌଶଳର ପ୍ରୟୋଗ ଏବଂ ଗବେଷଣା ଓ ସମ୍ପ୍ରସାରଣ ଦ୍ୱାରା । ତଥାପି ଏଥିରେ ଆତ୍ମସନ୍ତୋଷ ଲାଭ କରିବାର ଅବକାଶ ନାହିଁ । ବାର୍ଷିକ ଜନସଂଖ୍ୟା ବୃଦ୍ଧି ହାର ୧.୮୪ % ହିସାବରେ ୨୦୦୦ ମସିହା ବେଳକୁ ରାଜ୍ୟର ଲୋକ ସଂଖ୍ୟା ୩୭୩ ଲକ୍ଷରେ ପହଞ୍ଚିବା ଅଟକଳ କରାଯାଏ । ଏହି ଲୋକମାନଙ୍କର ଖାଦ୍ୟର ଚାହିଦା ପୂରଣ କରିବା ପାଇଁ ଆମକୁ ଅନ୍ୟୁନ ୮୪ ଲକ୍ଷ ଟନ ଚାଉଳ, ୧୫ଲକ୍ଷ ଟନ୍ ଡାଲି ଓ ୧୮ ଲକ୍ଷ ଟନ୍ ତୈଳବୀଜ ଉତ୍ପାଦନ କରିବାକୁ ହେବ । ଏଣେ ମୁଣ୍ଡପିଛା ଚାଷ ଜମିର ପରିମାଣ କ୍ରମଶଃ କମିବାରେ ଲାଗିଛି । ଏହାର କାରଣ ହେଲା ଜନସଂଖ୍ୟା ବୃଦ୍ଧି ଓ ଶିଳ୍ପ, ସହରାଞ୍ଚଳ ବିକାଶ, ରାସ୍ତା ଘାଟ ନିର୍ମାଣ, ଜଳସେଚନ ପ୍ରକଳ୍ପ ନିର୍ମାଣ ବାବଦରେ ଚାଷ ଜମିର ବିନିଯୋଗ । ବିଭିନ୍ନ ଯୋଜନାର କାର୍ଯ୍ୟକାରିତା ଯୋଗୁଁ ଲୋକମାନଙ୍କର ରୋଜଗାର ଏବଂ କ୍ରୟଶକ୍ତି ବୃଦ୍ଧି ଯୋଗୁଁ ଖାଦ୍ୟଶସ୍ୟର ଚାହିଦା ବୃଦ୍ଧି ପାଇବା ସ୍ୱାଭାବିକ । ଏହା ସହିତ ଶିଳ୍ପ ପାଇଁ କଞ୍ଚା ମାଲ ଓ ଗୃହପାଳିତ ପଶୁମାନଙ୍କ ପାଇଁ ଖାଦ୍ୟର ଆବଶ୍ୟକତା ମଧ୍ୟ ବୃଦ୍ଧିପାଉଛି । ଏଣୁ ଆମକୁ ଅପେକ୍ଷାକୃତ କମ୍ ଚାଷ ଜମିରୁ ଅଧିକ ପରିମାଣର ଖାଦ୍ୟ ଶସ୍ୟ ଉତ୍ପାଦନ କରିବା ଆବଶ୍ୟକ ହେବ । ଅପରପକ୍ଷରେ ପ୍ରାକୃତିକ ସମ୍ବଳ ଯଥା: ଭୂମି ଓ ଜଳ ସମ୍ପଦର ଦ୍ରୁତ ଅବକ୍ଷୟ ସହିତ ପରିବେଶୀୟ ସମସ୍ୟା ଦେଖାଦେଲାଣି । ଦେଶର ପ୍ରାୟ ୫୦% ଜମିରେ ମୃତ୍ତିକା କ୍ଷୟ ୧୩% ଜମିରେ ଓ ଅନ୍ୟାନ୍ୟ ସମସ୍ୟା ଦେଖାଦେଲାଣି । ଏହି କାରଣରୁ ଷଷ୍ଠ ଦଶନ୍ଧିରେ ହୋଇଥିବା ସବୁଜ ବିପ୍ଳବର ସଫଳତା ଧୀରେ ଧୀରେ ମଉଳିବାକୁ ବସିଲାଣି । ଏହି ପରିପ୍ରେକ୍ଷୀରେ ଏକ ଦ୍ୱିତୀୟ 'ସବୁଜ ବିପ୍ଳବ'ର ଆବଶ୍ୟକତା ଉପଲବ୍ଧି କରାଗଲାଣି ।

## ଓଡ଼ିଶାର କୃଷି ସମସ୍ୟା

ଆମ ରାଜ୍ୟରେ ସ୍ୱାଭାବିକ ବର୍ଷା ପ୍ରାୟ ୧୫୦୦ ମିଲିମିଟର । ଏହି ବର୍ଷାର ୮୦% ଜୁନ୍ ଠାରୁ ସେପ୍ଟେମ୍ବର ମଧ୍ୟରେ ମିଳୁଥିବାରୁ ଏହା ଖରିଫ ଫସଲକୁ ପ୍ରଭାବିତ କରେ । କିନ୍ତୁ କ୍ରମଶଃ ବୃଷ୍ଟିପାତର ଅନିଶ୍ଚିତତା, ଆରମ୍ଭ, ପ୍ରବାହ ଓ ସମାପ୍ତିରେ ଅନିୟମିତତା ଦେଖାଯିବା ଫଳରେ ଫସଲ ଉତ୍ପାଦନରେ ସ୍ଥିରତା ରହୁନାହିଁ, କାରଣ ରାଜ୍ୟର ୭୦% ଜମି ବୃଷ୍ଟି ଉପରେ ନିର୍ଭର କରେ । ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାର ଚିର ସହଚର । ଗତ ୩୫ବର୍ଷ ମଧ୍ୟରେ ବନ୍ୟା, ମରୁଡ଼ି ଓ ବାତ୍ୟା ଦେଖାଦେଇଛି । ଏଣୁ କ୍ଷତି ଭୟ ଆଶଙ୍କାରେ ଗରିବ ଚାଷୀମାନେ ନୂତନ ଚାଷ କୌଶଳ ଅନୁସରଣ କରିବାକୁ ନିରାପଦ ମଣୁନାହାଁନ୍ତି ।

## ଦୁର୍ବଳ ସାମାଜିକ ଅର୍ଥନୈତିକ ସ୍ଥିତି

ରାଜ୍ୟରେ ୩୯ଲକ୍ଷ ଚାଷ ଜମିଥିବା ଚାଷୀ ପରିବାର ମଧ୍ୟରୁ ୭୯% କ୍ଷୁଦ୍ର ଓ ନାମ ମାତ୍ର ଚାଷୀ ଏବଂ ଏମାନଙ୍କ ହାତରେ ମୋଟ

ଚାଷ ଜମିର ମାତ୍ର ୪୬% ଅଛି । ଏହା ଫଳରେ ବଡ଼ ଚାଷୀମାନେ ଅଧିକ ଜମି ନିଜ ନିଜ ପାଖରେ ରଖି ଭାଗ ଚାଷ ଉପରେ ନିର୍ଭର କରୁଛନ୍ତି । ରାଜ୍ୟର ୩୮% ଅନୁସୂଚିତ ଜାତି ଓ ଜନଜାତିର ଲୋକ ଯାହାକି ସାରା ଦେଶରେ ସର୍ବାଧିକ । ଏମାନଙ୍କର ଦୁର୍ବଳ ସାମାଜିକ-ଅର୍ଥନୈତିକ ଅବସ୍ଥା ଯୋଗୁଁ ଆଧୁନିକ ଚାଷ କୌଶଳ ଅନୁସୃତ ହୋଇପାରୁନାହିଁ । ଓଡ଼ିଶାର ସାକ୍ଷରତା ହାର ୪୯% ଥିବାରୁ ଅଧିକାଂଶ ଗରିବ ଓ ଦୁର୍ବଳ ସମ୍ପ୍ରଦାୟର ଚାଷୀ ଗଣମାଧ୍ୟମଗୁଡ଼ିକର ସାହାଯ୍ୟ ନେଇପାରୁ ନାହାଁନ୍ତି । ଦୁର୍ବଳ ଚାଷୀମାନେ ଚାଷକୁ ଏକ ବ୍ୟବସାୟ ରୂପେ ବିବେଚନା ନକରି ଏକ ଜୀବନ ଧାରଣର ପନ୍ଥା ରୂପେ ଗ୍ରହଣ କରନ୍ତି ।

## ଭୂସଂସ୍କାରଗତ ସମସ୍ୟା

କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ଜୋତ ଖୁବ୍ ଛୋଟ ଓ ଟୁକୁରା ଟୁକୁରା ହୋଇଥିବାରୁ ଉନ୍ନତ ଚାଷ କୌଶଳ ଅନୁସରଣ କରିବାରେ ଅନ୍ତରାୟ ସୃଷ୍ଟି କରେ । ଅଧିକ ଅମଳ ତଥା ସଘନ ଜମି ବିନିଯୋଗ ପାଇଁ ଜମି ମାଲିକଙ୍କ ଅନୁପସ୍ଥିତିରେ ଚାଷ ଏବଂ ଭାଗଚାଷ ଅଧିକ କ୍ଷତିକର ହେଉଛି । ରାଜ୍ୟର ଚକବନ୍ଦୀ କାର୍ଯ୍ୟକ୍ରମ ଏଯାଏଁ ସମ୍ପୂର୍ଣ୍ଣ ହୋଇପାରି ନଥିବାରୁ କୃଷି ଯାନ୍ତ୍ରୀକରଣ ଓ ନିୟନ୍ତ୍ରିତ ଜଳସେଚନ ବାଧାପ୍ରାପ୍ତ ହେଉଛି ।

## ଗ୍ରାମାଞ୍ଚଳ ଦାରିଦ୍ର୍ୟ

ଗ୍ରାମାଞ୍ଚଳରେ ବାସ କରୁଥିବା କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ଦୁର୍ବଳ ଆର୍ଥିକ ସ୍ଥିତି ସେମାନଙ୍କ ଉତ୍ପାଦିତ କୃଷି ଦ୍ରବ୍ୟଗୁଡ଼ିକ ଅମଳ ପରେ ପରେ ଦଲାଲମାନଙ୍କ ହାତରେ ଅତି କମ୍ ଦାମରେ ବିକ୍ରୀ କରିବାକୁ ବାଧ କରେ । କାରଣ ଉତ୍ପାଦିତ ଦ୍ରବ୍ୟକୁ ବହୁଦିନ ଧରି ସାଇତି ରଖିବାର ସାମର୍ଥ୍ୟ ସେମାନଙ୍କର ନାହିଁ । ଫସଲ ଚାଷ ପାଇଁ ଏହି ଚାଷୀମାନେ ଗାଁ ମହାଜନଙ୍କଠାରୁ ଅଧିକ ସୁଧରେ ଋଣ ଆଣି ଫସଲକୁ କମ୍ ଦାମ୍‌ରେ ବିକ୍ରୟ କରି ଋଣ ପରିଶୋଧ କରନ୍ତି । ଏହି କାରଣରୁ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କର ଦୁର୍ବଳ ଆର୍ଥିକ ସମ୍ବଳ ଅଧିକ ଫସଲ ଅମଳ ପାଇଁ ମୁଖ୍ୟ ପ୍ରତିବନ୍ଧକ ସୃଷ୍ଟି କରେ ।

## ସମସ୍ୟା ବହୁଳ ମୃତ୍ତିକା

ରାଜ୍ୟର ୭୦% ଜମି ବୃଷ୍ଟି ନିର୍ଭରଶୀଳ । ମୋଟ ଚାଷ ଜମିର ପ୍ରାୟ ୩୫% ଜମି ମୃତ୍ତିକା କ୍ଷୟର ଶିକାର ହେଲାଣି । ୭୦% ଚାଷଜମି ଅମ୍ଳ ଓ ୨.୫୪ ଲକ୍ଷ ହେକ୍ଟର ଲବଣାକ୍ତ । ୩.୫୪ ଲକ୍ଷ ହେକ୍ଟର ଜମି ବନ୍ୟାପ୍ରବଣ ଓ ୭୫,୦୦୦ ହେକ୍ଟର ସନ୍ତସନ୍ତିଆ । ଏପ୍ରକାର ଜମିର ସଂଶୋଧନ କରାଯାଇ ନଥିବାରୁ ଏଗୁଡ଼ିକ ଅଧିକ ଅମଳ ପାଇଁ ପ୍ରତିବନ୍ଧକ ସୃଷ୍ଟି କରୁଛି ।

## ସେଚାଞ୍ଚଳ ସମସ୍ୟା

ଅନିୟନ୍ତ୍ରିତ ଜଳସେଚନ ଯୋଗୁଁ ସେଚଜଳ ବିନିଯୋଗ ଦକ୍ଷତା ହ୍ରାସ ପାଇବା ସହିତ ଜଳାନୁବୋଧତା ଏବଂ ମୃତ୍ତିକାର ଲବଣତା ପରି ସମସ୍ୟା ଦେଖାଯାଏ । ଫଳରେ ସେଚାଞ୍ଚଳର ଉତ୍ପାଦକତା ହ୍ରାସ ପାଏ । କେନାଲଗୁଡ଼ିକର ରକ୍ଷଣାବେକ୍ଷଣ, ମରାମତି ଓ ଜଳ ନିଷ୍କାସନ ପାଇଁ ଆବଶ୍ୟକ ଅର୍ଥର ଅଭାବ ଯୋଗୁଁ ଏପ୍ରକାର ସମସ୍ୟାଗୁଡ଼ିକର ସମାଧାନ ହୋଇ ପାରୁନାହିଁ । ଅର୍ଥାଭାବରୁ ବହୁ ଉଠାଜଳ ସେଚନ ପଏଣ୍ଟଗୁଡ଼ିକର ମରାମତି ମଧ୍ୟ ହୋଇପାରୁ ନାହିଁ ।

## ରୋଗପୋକ ସମସ୍ୟା

ବର୍ଷା ଦିନେ ଅଧିକ ବର୍ଷା ଓ ମେଘୁଆ ପାଗ ଲାଗି ରହିବା ଯୋଗୁଁ ଫସଲରେ ରୋଗ ପୋକ ସମସ୍ୟା ବେଶୀ ଦେଖାଯାଏ । ରୋଗ ପୋକ ଦାଉରୁ ଫସଲକୁ ରକ୍ଷା କରିବା ନିମନ୍ତେ ରାସାୟନିକ ଔଷଧ ପ୍ରୟୋଗ ଅଧିକ ବର୍ଷା ଯୋଗୁଁ ସମ୍ଭବ ହୁଏ ନାହିଁ କିମ୍ବା ପ୍ରୟୋଗ କରାଯାଇଥିବା ଔଷଧ ଅଧିକ ବର୍ଷାରେ ଧୋଇ ହୋଇଯାଏ । ଏଣୁ ପୋକ ରୋଗ ସମସ୍ୟା ଯୋଗୁଁ ଫସଲର ୧୮.୭୦% ନଷ୍ଟ ହୋଇଯାଏ ।

## କୃଷି ଋଣ ସମସ୍ୟା

ଜାତୀୟ ସ୍ତରରେ ହେକ୍ଟର ପ୍ରତି ୬୦୦ଟଙ୍କା କୃଷି ଋଣ ଲଗାଣ ହେବା ସ୍ଥଳେ ଓଡ଼ିଶାରେ ଏହାମାତ୍ର ୩୦୦ ଟଙ୍କା । କ୍ଷୁଦ୍ର, ନାମମାତ୍ର ଓ ଭୂମିହୀନ ଚାଷୀ ଭାଗ ଚାଷୀ ହୋଇଥିବାରୁ କୃଷି ଋଣ ପାଇବାରୁ ବଞ୍ଚିତ ହୁଅନ୍ତି । କେତେକ କ୍ଷେତ୍ରରେ ସମବାୟ ଓ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକର ଋଣ ମଞ୍ଜୁରୀ ନିୟମ ଓ ପଦ୍ଧତି ସମୟ-ସାପେକ୍ଷ ହୋଇଥିବାରୁ ବହୁ ଚାଷୀ ଗାଁ ମହାଜନଙ୍କ ଦ୍ୱାରସ୍ଥ ହୁଅନ୍ତି । କୃଷି ଋଣ ସହିତ ବିପଣନ ଏବଂ କୃଷି ସାମଗ୍ରୀ ଯୋଗାଣର ସମ୍ପର୍କ ରହୁନଥିବାରୁ କୃଷି ଉତ୍ପାଦନ ବାଧାପ୍ରାପ୍ତ ହେଉଛି ।

## ଶ୍ରମିକ ସମସ୍ୟା

ଅଣ କୃଷି କ୍ଷେତ୍ରରେ ଦ୍ରୁତ ଅଭିବୃଦ୍ଧି ଯୋଗୁଁ କୃଷି କ୍ଷେତ୍ରରେ ଶ୍ରମିକ ସମସ୍ୟା ମୁଣ୍ଡ ଟେକିଲାଣି । ନିଯୁକ୍ତି ଓ ଅଧିକ ମଜୁରୀ ଆଶାରେ ଗ୍ରାମାଞ୍ଚଳରୁ ଶ୍ରମିକମାନେ ସହରାଞ୍ଚଳକୁ ଅଧିକ ସଂଖ୍ୟାରେ ଚାଲି ଆସୁଛନ୍ତି । ଏପରିକି ବହୁ ଶ୍ରମିକ ରାଜ୍ୟ ବାହାରକୁ ଚାଲିଯାଉଛନ୍ତି । ଏଣୁ କୃଷିକ୍ଷେତ୍ରରେ ଶ୍ରମିକ ସମସ୍ୟା ଦେଖାଯାଇ ଫସଲ ଉତ୍ପାଦନ ବାଧାପ୍ରାପ୍ତ ହେଉଛି ।

## ଭିତ୍ତିଭୂମି ଓ ପ୍ରକ୍ରିୟାକରଣ ଅଭାବ

ଗ୍ରାମାଞ୍ଚଳରେ ଶସ୍ୟାଗାର ଓ ଶୀତଳଭଣ୍ଡାର ପରି ଭିତ୍ତିଭୂମିର ଅଭାବ ଦେଖାଯିବା ଯୋଗୁଁ ଚାଷୀମାନେ ସେମାନଙ୍କର ଉତ୍ପାଦିତ ଦ୍ରବ୍ୟ ପାଇଁ ଉପଯୁକ୍ତ ମୂଲ୍ୟ ପାଇପାରୁ ନାହାଁନ୍ତି । ଉତ୍ପାଦିତ ଦ୍ରବ୍ୟର ମୂଲ୍ୟ ବୃଦ୍ଧି ପାଇଁ ଆବଶ୍ୟକ ପ୍ରକ୍ରିୟାକରଣ ସୁବିଧା ଚାଷୀଙ୍କୁ ଏଯାଏଁ ଯୋଗାଇ ଦିଆଯାଇ ପାରିନାହିଁ । ଫଳରେ ଦଲାଲମାନେ ଏ ପରିସ୍ଥିତିରୁ ଯଥେଷ୍ଟ ଫାଇଦା ହାସଲ କରୁଛନ୍ତି ।

## ରାସାୟନିକ ସାରର ସ୍ୱଳ୍ପ ବ୍ୟବହାର

କୃଷି ଉତ୍ପାଦନ ବୃଦ୍ଧି ପାଇଁ ରାସାୟନିକ ସାର ବ୍ୟବହାର ଅତ୍ୟନ୍ତ ଜରୁରୀ । ଦୁର୍ବଳ ଆର୍ଥିକ ଅବସ୍ଥା ଯୋଗୁଁ ଏବଂ ପ୍ରାକୃତିକ ବିପର୍ଯ୍ୟୟ ଜନିତ କ୍ଷତି ଆଶଙ୍କାରେ ଆଜି ମଧ୍ୟ ସାର ବ୍ୟବହାର

ରହୁନାହିଁ । ଏଣୁ ସର୍ବଭାରତୀୟ ସ୍ତରରେ ହେକ୍ଟର ପ୍ରତି ୭୦ କି.ଗ୍ରା.ରୁ ଅଧିକ ଖାଦ୍ୟ ସାର ବ୍ୟବହାର ହେଲା ବେଳେ ଆମ ରାଜ୍ୟରେ ଏହା ୩୬ କି.ଗ୍ରା. । ଗମନା ଗମନ ଅସୁବିଧା ଯୋଗୁଁ ବହୁ କ୍ଷେତ୍ରରେ ମଫସଲ ଅଞ୍ଚଳରେ ସାର ପହଞ୍ଚି ପାରୁନାହିଁ । ଏହି ସବୁ କାରଣ ଯୋଗୁଁ କୃଷି ଉତ୍ପାଦନ ହ୍ରାସ ପାଉଛି ।

## ବିପଣନ ସମସ୍ୟା

ଉତ୍ପାଦିତ ଦ୍ରବ୍ୟରୁ ଅଧିକ ଲାଭ ନପାଇଲେ ଚାଷୀ ଚାଷ ପ୍ରତି ସେତେଟା ଆଗ୍ରହୀ ନହେବା ସ୍ୱାଭାବିକ । ବିପଣନ ଅସୁବିଧା ଯୋଗୁଁ ବହୁ କ୍ଷେତ୍ରରେ ଚାଷୀ ପାଉଥିବା ମୂଲ୍ୟ ଏବଂ ଉପଭୋକ୍ତା ମୂଲ୍ୟ ମଧ୍ୟରେ ବହୁ ପାର୍ଥକ୍ୟ ରହୁଛି ଏବଂ ଏଥିରେ ଦଲାଲ ବ୍ୟବସାୟୀ ଅଧିକ ଲାଭବାନ ହେଉଛନ୍ତି । ଧାନ, ଝୋଟ ପରି କୃଷି ଜାତ ଦ୍ରବ୍ୟର ସହାୟକ ମୂଲ୍ୟ ଚାଷୀଙ୍କ ପାଇଁ ନିରୁତ୍ସାହିତ ମନେହୁଏ, କାରଣ ଏହି ଫସଲଗୁଡ଼ିକର ଉତ୍ପାଦନ ଖର୍ଚ୍ଚ ଯଥେଷ୍ଟ ବୃଦ୍ଧି ପାଇଲାଣି । ଗ୍ରାମାଞ୍ଚଳରେ କୃଷି ସାମଗ୍ରୀଗୁଡ଼ିକର ବିପଣନ ବ୍ୟବସ୍ଥା ଦୁର୍ବଳ ଅବସ୍ଥାରେ ଥିବାରୁ ଚାଷୀମାନେ ଏହି ସବୁ ସାମଗ୍ରୀ କିଣି ଚାଷରେ ଲଗାଇବାରେ ଘୋର ଅସୁବିଧାର ସମ୍ମୁଖୀନ ହେଉଛନ୍ତି ।

## ଯାନ୍ତ୍ରୀକରଣ ସମସ୍ୟା

ଉନ୍ନତ ଚାଷ କୌଶଳ ପାଇଁ କୃଷି ଯନ୍ତ୍ରପାତିର ଏକ ବିଶେଷ ଭୂମିକା ରହିଛି । କିନ୍ତୁ ଆମ ରାଜ୍ୟର ବହୁଚାଷୀ ଉନ୍ନତ କୃଷି ଯନ୍ତ୍ରପାତି ଓ ଶକ୍ତି ଚାଳିତ ମେସିନ ବ୍ୟବହାରରୁ ବଞ୍ଚିତ । ଗ୍ରାମାଞ୍ଚଳରେ ଉନ୍ନତ କୃଷି ଯନ୍ତ୍ରପାତି ଓ ମେସିନର ଯନ୍ତ୍ରାଂଶ ମିଳୁନଥିବାରୁ ଏଗୁଡ଼ିକର ମରାମତି ସମ୍ଭବ ହେଉନାହିଁ । ଦୁର୍ବଳ ଆର୍ଥିକ ସ୍ଥିତି ଓ କ୍ଷୁଦ୍ର ଜୋତ କୃଷି ଯାନ୍ତ୍ରୀକରଣ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁଛି । କୃଷି ଶ୍ରମିକ ଦ୍ୱାରା କିମ୍ବା ବଳଦ ଟଣା ଦେଶୀ ଯନ୍ତ୍ରପାତି ବ୍ୟବହାର କରି ଚାଷ କରିବା ଦ୍ୱାରା ଅଧିକ ସମୟ ଏବଂ ଖର୍ଚ୍ଚ ଲାଗିବା ସହିତ ଉତ୍ପାଦନ ପରିମାଣ ହ୍ରାସ ପାଇଥାଏ ।

## ଗବେଷଣା ଓ ଉନ୍ନୟନ ସମସ୍ୟା

କୃଷି କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିବାକୁ ହେଲେ ନୂତନ କୌଶଳ ଉଦ୍ଭାବନ ଓ ଚାଷୀମାନଙ୍କର ସମସ୍ୟା ସମାଧାନ ନିରନ୍ତର ଭାବରେ କରାଯିବା ଆବଶ୍ୟକ । ଗବେଷଣା ଓ ଉନ୍ନୟନ କାର୍ଯ୍ୟ ପାଇଁ ରାଜ୍ୟରେ କୃଷି ବିଶ୍ୱବିଦ୍ୟାଳୟ ଓ ଭାରତୀୟ କୃଷି ଗବେଷଣା ପରିଷଦର କେତେକ ଅନୁଷ୍ଠାନ କାର୍ଯ୍ୟ କରୁଥିଲେ । ଆବଶ୍ୟକ ଅର୍ଥର ଅଭାବ ଯୋଗୁଁ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ଆଶାନୁରୂପେ କରାଯାଇ ପାରୁନାହିଁ । ଏହା ସହିତ ଗବେଷଣା ଓ ସମ୍ପ୍ରସାରଣରେ ଯଥାର୍ଥ ସମନ୍ୱୟ ନରହିବା ଫଳରେ କୃଷି ଉତ୍ପାଦନ ମନ୍ଥର ହେଉଛି ।

## କୃଷି କ୍ଷେତ୍ରରେ ସମନ୍ୱୟ ଅଭାବ

କୃଷକମାନଙ୍କର ଆର୍ଥିକ ଉନ୍ନତି ଓ କର୍ମ ନିଯୁକ୍ତି ପାଇଁ କୃଷି ସହିତ ଆନୁଷଙ୍ଗିକ କୃଷି ଯଥା: ପଶୁପାଳନ, ମତ୍ସ୍ୟଚାଷ, ଉଦ୍ୟାନ କୃଷି ଇତ୍ୟାଦିର ଆବଶ୍ୟକତା ରହିଛି । କିନ୍ତୁ ବାସ୍ତବ କ୍ଷେତ୍ରରେ କୃଷି ସହିତ ଏହି ଆନୁଷଙ୍ଗିକ କୃଷି ବିଭାଗ ଗୁଡ଼ିକର ସମନ୍ୱୟ ନରହୁଥିବାରୁ ଚାଷୀମାନଙ୍କର ସମନ୍ୱିତ ବିକାଶ ସମ୍ଭବ ହେଉନାହିଁ ।

## କୃଷି କ୍ଷେତ୍ରରେ ଓଡ଼ିଶାର ସ୍ଥିତି

ଅନ୍ୟାନ୍ୟ ରାଜ୍ୟମାନଙ୍କ ତୁଳନାରେ ଓଡ଼ିଶାର କୃଷି କ୍ଷେତ୍ରରେ ବହୁ ସମସ୍ୟା ଥିବାରୁ ଆମେ ଏଯାଏଁ ଏକ ଅଗ୍ରଣୀ ରାଜ୍ୟରେ ପରିଣତ ହୋଇପାରିନାହୁଁ । ତଥାପି ଫସଲ ଉତ୍ପାଦନ ଓ ଉତ୍ପାଦକତାକୁ ବିଚାରକୁ ନେଲେ ଦେଶର ବହୁ ରାଜ୍ୟ ଅପେକ୍ଷା ଆମେ ନିଶ୍ଚିତ ଭାବରେ ପ୍ରଗତି ହାସଲ କରିବା ଜଣାଯାଏ ।

ରାଜ୍ୟରେ ବର୍ଷକୁ ପ୍ରାୟ ୯୬ ଲକ୍ଷ ହେକ୍ଟର ଜମିରେ ଖରିଫ ଓ ରବି ଫସଲ ଚାଷ ହୁଏ । ଏଥିରେ ଖରିଫ ଫସଲ ପରିମାଣ ପ୍ରାୟ ୬୨ ଲକ୍ଷ ହେକ୍ଟର, ମୋଟ ଫସଲର ୪୭% ଧାନ, ୨୨% ଡାଲି ଓ ୧୧% ତୈଳବୀଜ । ଏହି ଫସଲ ଗୁଡ଼ିକର ଉତ୍ପାଦନ ଓ ଉତ୍ପାଦକତା ନିମ୍ନରେ ଦର୍ଶାଗଲା:

ଉତ୍ପାଦନ – ଲକ୍ଷ ଟନ
ଉତ୍ପାତକତା – ହେକ୍ଟର ପ୍ରତି କ୍ୱିଣ୍ଟାଲ

| ଫସଲ | ଓଡ଼ିଶାର ସ୍ଥିତି | | | | ସର୍ବଭାରତୀୟ ସ୍ଥିତି | | | |
|---|---|---|---|---|---|---|---|---|
| | ୧୯୫୦-୫୧ | | ୧୯୯୫-୯୬ | | ୧୯୫୦-୫୧ | | ୧୯୯୩-୯୪ | |
| | ଉତ୍ପାଦନ | ଉତ୍ପାଦକତା | ଉତ୍ପାଦନ | ଉତ୍ପାଦକତା | ଉତ୍ପାଦନ | ଉତ୍ପାଦକତା | ଉତ୍ପାଦନ | ଉତ୍ପାଦକତା |
| ଧାନ୍ଯ | ୨୦.୦୦ | ୫.୨୦ | ୬୨.୩୦ | ୧୩.୭୫ | ୨୦୫.୮୦ | ୬.୬୮ | ୭୮୯.୭ | ୧୮.୭୯ |
| ଡାଲି ଫସଲ | ୨.୦୦ | ୫.୨୦ | ୧୨.୦୦ | ୫.୪୮ | ୮୪.୧୦ | ୪.୪୧ | ୧୩୧.୧ | ୫.୮୪ |
| ଚିନାବାଦାମ | ୦.୨୦ | ୮.୫୩ | ୪.୫୦ | ୧୪.୧୩ | ୩୪.୮୦ | ୭.୭୫ | ୭୭.୬ | ୯.୨୬ |
| ମୋଟ ତୈଳବୀଜ | ୦.୬୦ | ୩.୪୫ | ୮.୫୫ | ୭.୪୬ | ୫୧.୬୦ | ୪.୮୧ | ୨୧୪.୮ | ୮.୦୧ |

ଉତ୍ପାଦକତା ଦୃଷ୍ଟିରୁ ଓଡ଼ିଶାକୁ ବିଭିନ୍ନ ରାଜ୍ୟ ସହ ଜାତୀୟ ସ୍ତରରେ ତୁଳନା କଲେ ଜଣାଯାଏ ଯେ ଧାନ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶାର ସ୍ଥାନ ଦ୍ୱାଦଶ, ଡାଲି ଉତ୍ପାଦନରେ ଅଷ୍ଟମ, ଚିନାବାଦାମରେ ଦ୍ୱିତୀୟ, ତୈଳବୀଜରେ ନବମ, କପାରେ ନବମ, ଝୋଟରେ ତୃତୀୟ, ଆଳୁରେ ନବମ ଓ ଆଖୁରେ ଷଷ୍ଠ । ଧାନ ଫସଲକୁ ଛାଡ଼ିଦେଲେ ସର୍ବଭାରତୀୟ ସ୍ତରରେ ଅମଳ ହାର ସହିତ ଆମ ରାଜ୍ୟର ଅମଳ ହାର ଅଧିକାଂଶ ଫସଲରେ ସମକକ୍ଷ କିମ୍ବା ଅଧିକ । ଧାନ ଅମଳ କ୍ଷେତ୍ରରେ ଆମର ସ୍ଥାନ ବିହାର ଓ ମଧ୍ୟପ୍ରଦେଶ ପରି ପଡ଼ୋଶୀ ରାଜ୍ୟ ଅପେକ୍ଷା ଅଧିକ ଏବଂ ପଶ୍ଚିମବଙ୍ଗ ଓ ଆନ୍ଧ୍ରପ୍ରଦେଶ ତୁଳନାରେ କମ୍ । ରାଜ୍ୟରେ ୧୯୫୦-୫୧ ରେ ମୁଣ୍ଡ ପିଛା ୩୯୩ ଗ୍ରାମ୍ ଖାଦ୍ୟଶସ୍ୟ ଓ ତୈଳବୀଜ ୧୧ଗ୍ରାମ ଥିବା ସ୍ଥଳେ ବର୍ତ୍ତମାନ ଏହା ଯଥାକ୍ରମେ ୬୦୦ ଗ୍ରାମ୍ ଓ ୬୦ ଗ୍ରାମରେ ପହଞ୍ଚିଛି । ଏଥିରୁ ସ୍ପଷ୍ଟ ହୁଏ ଯେ କୃଷି କ୍ଷେତ୍ରରେ ଓଡ଼ିଶା ଯଥେଷ୍ଟ ଅଗ୍ରଗତି ହାସଲ କରିଛି । ତେବେ ବାରମ୍ବାର ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ କୃଷି ଉତ୍ପାଦନ କ୍ଷେତ୍ରରେ ସ୍ଥିରତା ରହୁନାହିଁ ।

## ନୂତନ କୃଷିନୀତି

ଓଡ଼ିଶା ପରି ଏକ କୃଷି ପ୍ରଧାନ ରାଜ୍ୟରେ କୃଷି ପ୍ରତି ଲୋକଙ୍କର ବିତୃଷ୍ଣା ଜାତ ହେବା ଦୁଃଖ ଓ ପରିତାପର ବିଷୟ । ସମ୍ପ୍ରତି ଚାଷ ଏକ ନିମ୍ନ ମାନର ବୃତ୍ତି ଭାବରେ ପରିଗଣିତ ହେବାଯୋଗୁଁ ଶିକ୍ଷିତ ଯୁବ ଗୋଷ୍ଠୀ ଚାଷପ୍ରତି ବିମୁଖ । ସବୁଠି ଆଲୋଚନା ଚାଲିଛି କୃଷି ଲାଭପ୍ରଦ ନୁହେଁ । ନିଜକୁ କୃଷକ ବୋଲି ପରିଚୟ ଦେବାର ଗର୍ବ କାହାର ନାହିଁ । ଏଣୁ ବହୁ ଚାଷୀ ଜମି ବିକ୍ରି କରି ବ୍ୟବସାୟ ଆଶାରେ ସହରାଭିମୁଖୀ ହେବାରେ ଲାଗିଛନ୍ତି । ଅନ୍ୟାନ୍ୟ ପ୍ରଗତିଶୀଳ ରାଜ୍ୟମାନଙ୍କ ପରି କୃଷିକୁ ଏକ ଲାଭଜନକ ବ୍ୟବସାୟ ରୂପେ ଗଣ୍ୟ କରାଯାଏ ନାହିଁ । ଏହିପରି ଚିନ୍ତାଧାରାର ପରିବର୍ତ୍ତନ ନଘଟିଲେ ଓଡ଼ିଶାର କୃଷି ଭବିଷ୍ୟତରେ ବଡ଼ ଅସୁବିଧାର ସମ୍ମୁଖୀନ ହେବା ନିଶ୍ଚିତ । ଏଣୁ ରାଜ୍ୟ ସରକାର ୧୯୯୬ ମସିହାରେ ଏକ ନୂତନ କୃଷିନୀତି ପ୍ରଣୟନ କରି ନିଷ୍ଠାର ସହ କାର୍ଯ୍ୟକାରୀ କରୁଛନ୍ତି ।

କୃଷିନୀତିରେ କୃଷିକୁ ଶିଳ୍ପର ମାନ୍ୟତା ଦିଆଯାଇ କୃଷି ଉଦ୍ୟୋଗୀକରଣକୁ ଉତ୍ସାହିତ କରାଯାଇଛି । କୃଷିକୁ କେବଳ ଏକ ଜୀବନ ଧାରଣର ପନ୍ଥା ରୂପେ ଗ୍ରହଣ ନକରି ଏହାକୁ ଏକ ଲାଭଜନକ ବ୍ୟବସାୟ ଓ କର୍ମନିଯୁକ୍ତିର ପନ୍ଥା ରୂପେ ପରିଗଣିତ କରିବା ପାଇଁ ପ୍ରୟାସ କରାଯାଇଛି । ଖାଦ୍ୟଶସ୍ୟ ଓ ତୈଳବୀଜ ଉତ୍ପାଦନକୁ ଦ୍ୱିଗୁଣିତ କରିବା ସହିତ ଫଳ, ପନିପରିବା, ଫୁଲ, ମତ୍ସ୍ୟ, ଦୁଗ୍ଧ ଓ ଅଣ୍ଡା ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହେବା ପାଇଁ ପ୍ରଚେଷ୍ଟା କରାଯାଉଛି ।

## ଆପିକଲ

କୃଷି କ୍ଷେତ୍ରରେ ଉଦ୍ୟୋଗୀକରଣ ନିମନ୍ତେ 'ଆପିକଲ' (ଓଡ଼ିଶା କୃଷି ପ୍ରୋତ୍ସାହନ ଓ ଅର୍ଥଲଗାଣ ନିଗମ) ଗଠନ କରାଯାଇଛି । ବ୍ୟବସାୟିକ କୃଷି ଓ ରପ୍ତାନୀ ଯୋଗ୍ୟ ନିମନ୍ତେ ବିଭିନ୍ନ ତଥ୍ୟ ଯୋଗାଣ ସହିତ ଉଦ୍ୟୋଗୀମାନଙ୍କୁ ଚିହ୍ନଟ କରି ପ୍ରକଳ୍ପ ପ୍ରସ୍ତୁତ କରିବାରେ ସହାୟତା କରିବା, କୃଷି ଉଦ୍ୟୋଗ ସମ୍ବନ୍ଧରେ ଦିଗ୍‌ଦର୍ଶନ ଓ ପ୍ରଶିକ୍ଷଣ ଦେବା ଏବଂ ବିଭିନ୍ନ ପ୍ରୋତ୍ସାହନ ତଥା ରିହାତି ମଞ୍ଜୁର କରିବା ଏହି ନିଗମର କାର୍ଯ୍ୟ । ଗତ ୨ବର୍ଷ ମଧ୍ୟରେ ଏହି ନିଗମ ୫୧ କୋଟି ୫୦ଲକ୍ଷ ଟଙ୍କାର ପୁଞ୍ଜି ବିନିଯୋଗ କରାଇ ୧୯ଟି ପ୍ରକଳ୍ପ ପ୍ରତିଷ୍ଠା କରିପାରିଛି । ଏଗୁଡ଼ିକ ମଧ୍ୟରେ ଶୀତଳଭଣ୍ଡାର, କୃଷି ଶିଳ୍ପ, ପଶୁପାଳନ, ଫାର୍ମ, ଛତୁଚାଷ ପ୍ରକଳ୍ପ ଇତ୍ୟାଦି ଅନ୍ତର୍ଭୁକ୍ତ । କୃଷି ଶିଳ୍ପ ତଥା ବିଭିନ୍ନ ପ୍ରକଳ୍ପ ଉପରେ ପ୍ରୋତ୍ସାହନ ହିସାବରେ ପୁଞ୍ଜି ଲଗାଣର ୨୦ ପ୍ରତିଶତ ରିହାତି ବ୍ୟବସ୍ଥା ଏହି ନିଗମ କରନ୍ତି ।

## କୃଷି ସହାୟକ କେନ୍ଦ୍ର

ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ କୃଷି ଉଦ୍ୟୋଗୀମାନଙ୍କୁ ଚିହ୍ନଟ କରି କୃଷି ଉଦ୍ୟୋଗ ସ୍ଥାପନ ନିମନ୍ତେ ରାଜ୍ୟରେ ୪୮ ଗୋଟି କୃଷି ସହାୟକ କେନ୍ଦ୍ର ସ୍ଥାପନ କରାଯାଇଛି । ଏହି କେନ୍ଦ୍ରଗୁଡ଼ିକ ଭବିଷ୍ୟତରେ ପ୍ରତି ବ୍ଲକ୍‌ରେ କାର୍ଯ୍ୟ କରିବ । ରାଜ୍ୟର ସମସ୍ତ ଜିଲ୍ଲା କୃଷି ଅଧିକାରୀଙ୍କ କାର୍ଯ୍ୟାଳୟରେ ସପ୍ତାହର ଏକ ନିର୍ଦ୍ଦିଷ୍ଟ ଦିବସରେ ଏହି କେନ୍ଦ୍ର କାର୍ଯ୍ୟ କରେ । କୃଷି, ପଶୁପାଳନ, ମତ୍ସ୍ୟ ଚାଷ, ଉଦ୍ୟାନ, ମୃତ୍ତିକା ସଂରକ୍ଷଣ ଓ କୃଷି ଯାନ୍ତ୍ରୀକରଣ ବିଭାଗର ଅଭିଜ୍ଞ ବିଶେଷଜ୍ଞମାନେ ଏକାଠି ବସି କୃଷି ଉଦ୍ୟୋଗୀମାନଙ୍କୁ ପ୍ରସ୍ତାବିତ ପ୍ରକଳ୍ପ ସମ୍ବନ୍ଧରେ ଆବଶ୍ୟକୀୟ ତଥ୍ୟ ଯୋଗାଇବା ସହ ପ୍ରକଳ୍ପ ରିପୋର୍ଟ ପ୍ରସ୍ତୁତିରେ ସହାୟତା କରନ୍ତି । 'ଆପିକଲ' ଓ 'ନାବାର୍ଡ଼'ର ମିଳିତ ଉଦ୍ୟମରେ କୃଷି ବିଶ୍ୱବିଦ୍ୟାଳୟର ବିଶେଷଜ୍ଞମାନେ ଅନେକ ମଡ଼େଲ ପ୍ରକଳ୍ପ ରିପୋର୍ଟ ପ୍ରସ୍ତୁତ କରିଛନ୍ତି ଯାହାକି ଉଦ୍ୟୋଗୀମାନେ ବ୍ୟବହାର କରିପାରିବେ । କୃଷି ସହାୟକ କେନ୍ଦ୍ରର ମୁଖ୍ୟ ଲକ୍ଷ୍ୟ ହେଉଛି କୃଷି ପ୍ରକଳ୍ପ ପ୍ରସ୍ତୁତ କରିବା, ଏହାର ଅର୍ଥ ଲଗାଣ ବ୍ୟବସ୍ଥା ବ୍ୟାଙ୍କ ଜରିଆରେ କରାଇବା, ଘରୋଇ ଉଠାଜଳସେଚନ ପ୍ରକଳ୍ପ ବହୁଳ ସଂଖ୍ୟାରେ ପ୍ରତିଷ୍ଠା କରିବା, କୃଷି ଯାନ୍ତ୍ରୀକରଣ ନିମନ୍ତେ ସହାୟତା କରିବା ଓ ଉଦ୍ୟୋଗୀମାନଙ୍କ ନିମନ୍ତେ ପ୍ରଶିକ୍ଷଣ ବ୍ୟବସ୍ଥା କରାଇବା । କୃଷି ସହାୟକ କେନ୍ଦ୍ର ମାଧ୍ୟମରେ ୬କୋଟି ୮୩ ହଜାର ଟଙ୍କାର ରିହାତି ଅର୍ଥ 'ଆପିକଲ' ଦ୍ୱାରା ପ୍ରଦାନ କରାଯାଇ ୩୭୧୦ ଜଣ ଚାଷୀଙ୍କୁ ଉପକୃତ କରାଯାଉଛି ।

## କୃଷି ଉତ୍ପାଦନ ବୃଦ୍ଧି ପାଇଁ ପଦକ୍ଷେପ

ରାଜ୍ୟକୁ କୃଷି ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ କରିବା ସହିତ ଏକ ବଳକା ରାଜ୍ୟରେ ପରିଣତ କରିବା ଏବଂ ରପ୍ତାନୀ ସୁଯୋଗ ସୃଷ୍ଟି କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଯେଉଁ ସବୁ କୃଷି ସାମଗ୍ରୀ ବ୍ୟବହାର ଦ୍ୱାରା ଉତ୍ପାଦନ ବୃଦ୍ଧି ସମ୍ଭବ ସେଗୁଡ଼ିକର ବହୁଳ ବ୍ୟବହାର ପାଇଁ ଗୁରୁତ୍ୱ ଦିଆଯାଉଛି ।

## ବିହନ

ପ୍ରାମାଣିକ ବିହନ ଯୋଗାଣ କ୍ଷେତ୍ରରେ ରାଜ୍ୟକୁ ସ୍ୱାବଲମ୍ବୀ କରିବା ପାଇଁ 'ବିହନ ଗ୍ରାମ' ଯୋଜନା ୧୯୯୬ ମସିହାରୁ କାର୍ଯ୍ୟକାରୀ କରାଯାଉଛି । ଚାଷୀମାନଙ୍କୁ ପିଣ୍ଡ ବିହନ ଯୋଗାଣ, ବୈଷୟିକ ତାଲିମ ପ୍ରଦାନ ସହିତ କ୍ୱିଣ୍ଟାଲ ପ୍ରତି ୨୦୦ ଟଙ୍କା

ପ୍ରୋତ୍ସାହନ ଦିଆଯାଉଛି । ବିହନ ପ୍ରକ୍ରିୟାକରଣ ପାଇଁ ରାଜ୍ୟରେ ୪୪ଗୋଟି ବିହନ ପ୍ରକ୍ରିୟାକରଣ ପ୍ଲାଣ୍ଟ ସ୍ଥାପନ କରାଯାଇ ପାରିଛି । ରାଜ୍ୟ ବିହନ ପ୍ରମାଣିକରଣ ସଂସ୍ଥା ଉତ୍ପାଦିତ ସଠିକ ବିହନକୁ ପ୍ରମାଣିକରଣ କରିବା ପରେ ଏଗୁଡ଼ିକ ବିକ୍ରୟ ଯୋଗ୍ୟ ହୁଏ । ବିହନ ଉତ୍ପାଦନ ଓ ବିକ୍ରୟକୁ ଘରୋଇକରଣ କରାଯାଇଛି । ଗତ ୨ବର୍ଷ ମଧ୍ୟରେ 'ବିହନ ଗ୍ରାମ' ମାଧ୍ୟମରେ ୩,୧୪,୪୦୦ କ୍ୱିଣ୍ଟାଲ ବିହନ ଉତ୍ପାଦିତ ହୋଇପାରିଛି । ୧୯୯୪ରେ ବାର୍ଷିକ ୧,୦୪,୦୦୦ କ୍ୱିଣ୍ଟାଲ ପ୍ରାମାଣିକ ବିହନ ଯୋଗାଣ କରାଯାଉଥିବା ସ୍ଥଳେ ୧୯୯୭-୯୮ରେ ଏହାକୁ ୨,୮୦,୧୬୦ କ୍ୱିଣ୍ଟାଲକୁ ବୃଦ୍ଧି କରାଯାଇପାରିଛି । ବିଗତ ୫ବର୍ଷ ମଧ୍ୟରେ ବିଭିନ୍ନ ବିହନ ଯୋଗାଣର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା:—

| ବର୍ଷ | ଧାନ (ଲକ୍ଷ କ୍ୱିଣ୍ଟାଲରେ) | ଅଣଧାନ (ଲକ୍ଷ କ୍ୱିଣ୍ଟାଲରେ) |
|---|---|---|
| ୧୯୯୩-୯୪ | ୦.୪୮ | ୦.୧୯ |
| ୧୯୯୪-୯୫ | ୦.୬୬ | ୦.୩୮ |
| ୧୯୯୫-୯୬ | ୧.୧୩ | ୦.୨୯ |
| ୧୯୯୬-୯୭ | ୧.୨୧ | ୦.୬୯ |
| ୧୯୯୭-୯୮ | ୨.୦୦ | ୦.୯୨ |

## ସାର

ଖତ, ରାସାୟନିକ ସାର ଓ ବାୟୋସାର ବ୍ୟବହାର ଦ୍ୱାରା କୃଷି ଉତ୍ପାଦନ ବୃଦ୍ଧି ପାଇବା ସହିତ ମୃତ୍ତିକାର ଉର୍ବରତା ଅକ୍ଷୁଣ୍ଣ ରହେ । ୧୯୯୪-୯୫ ରେ ଆମ ରାଜ୍ୟରେ ହେକ୍ଟର ପ୍ରତି ୨୩କି.ଗ୍ରା. ଖାଦ୍ୟ ସାର ବ୍ୟବହୃତ ହେବା ସ୍ଥଳେ ୧୯୯୭-୯୮ ରେ ଏହାକୁ ୩୬ କି.ଗ୍ରାକୁ ବୃଦ୍ଧି କରାଯାଇପାରିଛି । ୨୦୦୦ ମସିହା ବେଳକୁ ୧୦୦ କି.ଗ୍ରା.ରେ ପହଞ୍ଚାଇବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଉଛି । ବିଗତ ୩ବର୍ଷର ସାର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

| ବର୍ଷ | ମୋଟ ସାର ଯୋଗାଣର ପରିମାଣ(ଏନ୍+ପି+କେ) (ଲକ୍ଷ ଟନ୍‌ରେ) | ହେକ୍ଟର ପ୍ରତି ସାର ବ୍ୟବହାର (କି.ଗ୍ରା.ରେ) |
|---|---|---|
| ୧୯୯୪-୯୫ | ୨.୨୦ | ୨୩ |
| ୧୯୯୫-୯୬ | ୨.୩୮ | ୨୬ |
| ୧୯୯୬-୯୭ | ୨.୫୧ | ୩୧ |
| ୧୯୯୭-୯୮ | ୨.୯୧ | ୩୬ |

ମୃତ୍ତିକା ପରୀକ୍ଷା ଫଳାଫଳ ଉପରେ ସାର ପ୍ରୟୋଗ କରିବା ପାଇଁ ଚାଷୀମାନଙ୍କୁ ଉତ୍ସାହିତ କରାଯାଉଛି । ଏଥିନିମନ୍ତେ ରାଜ୍ୟରେ ୧୧ଗୋଟି ମୃତ୍ତିକା ପରୀକ୍ଷାଗାରରେ ବାର୍ଷିକ ୨,୫୦,୦୦୦ ନମୁନା ମାଟି ପରୀକ୍ଷା କରାଯାଇ ଏହାର ଫଳାଫଳ ଚାଷୀମାନଙ୍କୁ ବିନା ମୂଲ୍ୟରେ ଯୋଗାଇ ଦିଆଯାଉଛି ।

ଆଜୋଲା, ବି.ଜି.ଏ., ରାଇଜୋବିୟମ, ଆଜୋଟୋବ୍ୟାକଟର, ଆଜୋସ୍ପିରିଲମ୍ ଓ ଫସ୍‌ଫୋକଲଚର୍ ଇତ୍ୟାଦି ବାୟୋସାର ପ୍ରସ୍ତୁତ କରାଯାଇ ଚାଷୀମାନଙ୍କୁ ରିହାତି ମୂଲ୍ୟରେ ଯୋଗାଇବାର ବ୍ୟବସ୍ଥା ଗ୍ରହଣ କରାଯାଇଛି । ଏହି ସାରଗୁଡ଼ିକର ପ୍ରୟୋଗ ନିମନ୍ତେ ଆବଶ୍ୟକୀୟ ବୈଷୟିକ ପରାମର୍ଶ ଦିଆଯିବା ସହିତ ପ୍ରଦର୍ଶନ କ୍ଷେତ୍ର ମାଧ୍ୟମରେ ଶିକ୍ଷା ଦିଆଯାଉଛି ।

## କୃଷି ଯନ୍ତ୍ରପାତି

କୃଷି ଶ୍ରମିକ ମାନଙ୍କର ଶ୍ରମଲାଘବ ସହିତ ସ୍ୱଳ୍ପ ବ୍ୟୟରେ ଓ ଯଥା ସମୟରେ ଅଧିକ ଦକ୍ଷତାର ସହ କୃଷି କାର୍ଯ୍ୟ ସମ୍ପାଦନ କରିବା ନିମନ୍ତେ କୃଷି ଯନ୍ତ୍ରପାତିର ଆବଶ୍ୟକତା ରହିଛି । ଏହି କୃଷି ଯନ୍ତ୍ରପାତି ବ୍ୟବହାର ନିମନ୍ତେ ଚାଷୀଙ୍କୁ ପ୍ରଦର୍ଶନ କ୍ଷେତ୍ର ମାଧ୍ୟମରେ ଶିକ୍ଷା ଦିଆଯାଉଛି । କୃଷି ଯନ୍ତ୍ରପାତି ବିକ୍ରୟ କ୍ଷେତ୍ରରେ ୫୦% ରିହାତି ବା ସର୍ବାଧିକ ୧୫୦୦ ଟଙ୍କାର ରିହାତି ବ୍ୟବସ୍ଥା ରଖାଯାଇଛି । ପାୱାର ଟିଲର ଓ ଟ୍ରାକ୍ଟର ଉପରେ ୩୦,୦୦୦ ଟଙ୍କା ରିହାତି ଓ ଶକ୍ତିଚାଳିତ ଲଙ୍ଗଳ ପାଇଁ ୫୦୦୦ ଟଙ୍କା ରିହାତି ରଖାଯାଇଛି । ୧୯୯୭-୯୮ରେ ୭କୋଟି ୪୩ଲକ୍ଷ ଟଙ୍କାର କୃଷି ଯନ୍ତ୍ରପାତି ବିକ୍ରୟ କରାଯାଇ ପାରିଛି । ଏହା ବ୍ୟତୀତ ୭୭୪ ଟି ଟ୍ରାକ୍ଟର ଓ ୩୯୩ଟି ପାୱାର ଟିଲର ଏବଂ ୧୦୨ଟି ଶକ୍ତିଚାଳିତ ଲଙ୍ଗଳ ବିକ୍ରୟ କରାଯାଇଛି । ବିଗତ ୩ବର୍ଷର କୃଷି ଯନ୍ତ୍ରପାତି ଯୋଗାଣ ସମ୍ବନ୍ଧୀୟ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

| ବର୍ଷ | ଯୋଗାଇ ଦିଆଯାଇଥିବା କୃଷି ଯନ୍ତ୍ରପାତିର ମୂଲ୍ୟ (କୋଟିରେ) | ଟ୍ରାକ୍ଟର | ପାୱାର ଟିଲର |
|---|---|---|---|
| ୧୯୯୫-୯୬ | ୬.୦୦ | ୧୦୩ | ୭୬ |
| ୧୯୯୬-୯୭ | ୧୦.୦୦ | ୫୧୨ | ୩୪୫ |
| ୧୯୯୭-୯୮ | ୭.୪୩ | ୭୭୪ | ୩୯୩ |
| ୧୯୯୮-୯୯ | ୧୦.୦୦ | --- | --- |

## ଜଳସେଚନ:

ଆମ ରାଜ୍ୟରେ ଖରିଫ ଋତୁରେ ୨୧ଲକ୍ଷ ହେକ୍ଟର ଓ ରବି ଋତୁରେ ୧୧ ଲକ୍ଷ ହେକ୍ଟର ଜମି ପାଇଁ ଜଳସେଚନ ବ୍ୟବସ୍ଥା କରାଯାଇଛି । ଆଗାମୀ ୫ବର୍ଷ ମଧ୍ୟରେ ୫୦% ଜମିକୁ ଜଳସେଚନ ଯୋଗାଇବାର ନିର୍ଦ୍ଦିଷ୍ଟ ଲକ୍ଷ୍ୟ କୃଷିନୀତିରେ ସ୍ଥାନ ପାଇଛି । ବିଭିନ୍ନ ସେଚ ଉତ୍ସ ମାଧ୍ୟମରେ ୧୨ଲକ୍ଷ ହେକ୍ଟର ଜମିରେ ଜଳସେଚନର ସୁବିଧା କରାଯିବ । ଘରୋଇ ଜଳସେଚନକୁ ଅଗ୍ରାଧିକାର ଦିଆଯାଇ ଗଭୀର ନଳକୂପ, ଅଗଭୀର ନଳକୂପ ଓ ଉଠା ଜଳସେଚନ ପ୍ରକଳ୍ପ ସ୍ଥାପନ ନିମନ୍ତେ ଚାଷୀମାନଙ୍କୁ ଉତ୍ସାହିତ କରିବା ସହିତ ୫୦% ବା ସର୍ବାଧିକ ୫୦,୦୦୦ ଟଙ୍କାର ରିହାତି ବ୍ୟବସ୍ଥା କରାଯାଇ ୧୯୯୭-୯୮ ରେ ୫୮୪୮ ଟି ଅଗଭୀର ନଳକୂପ ଓ ୬୧୩ ଗୋଟି ଗଭୀର ନଳକୂପ ସ୍ଥାପନ କରାଯାଇପାରିଛି । ୧୯୯୮-୯୯ରେ

ଏହାକୁ ୨୫,୦୦୦କୁ ବୃଦ୍ଧି କରାଯିବାର ଲକ୍ଷ୍ୟ ରଖାଯାଇଛି । ଜଳସେଚନରେ ମିତବ୍ୟୟିତା ନିମନ୍ତେ ଫୁଆରା ଏବଂ ବୁନ୍ଦା ଜଳସେଚନ ଉପରେ ଗୁରୁତ୍ୱ ଦିଆଯାଇ ରିହାତି ବ୍ୟବସ୍ଥା କରାଯାଇଛି ।

## ଫସଲ ସଂରକ୍ଷଣ

ରୋଗ ପୋକ ଆକ୍ରମଣ ଯୋଗୁଁ ଆମ ରାଜ୍ୟରେ ଅନ୍ତତଃ ୨୦% ଫସଲ ହାନୀ ହୋଇଥାଏ । ଏହି ରୋଗ ପୋକ ଦାଉରୁ ଫସଲକୁ ରକ୍ଷା କରିପାରିଲେ ପରୋକ୍ଷ ଭାବରେ ୨୦% ଫସଲ ଅମଳ ବୃଦ୍ଧି ପାଇବ । କେବଳ ରାସାୟନିକ ବିଷ ପ୍ରୟୋଗ କରି ରୋଗ ପୋକ ନିରାକରଣ ପରିବେଶ ଦୃଷ୍ଟିରୁ ସମୀଚୀନ ନୁହେଁ । ଏଣୁ ପରିବେଶକୁ ପ୍ରଦୂଷଣମୁକ୍ତ ରଖିବା ପାଇଁ ଏବଂ ଫସଲକୁ ପୋକ ରୋଗ ଦାଉରୁ କମ୍ ଖର୍ଚ୍ଚରେ ରକ୍ଷା କରିବା ପାଇଁ ଆମକୁ ସମନ୍ୱିତ ରୋଗ ପୋକ ପରିଚାଳନା ଉପରେ ନିର୍ଭର କରିବାକୁ ହେବ । ଏଥିପାଇଁ ଚାଷୀମାନଙ୍କୁ ଶିକ୍ଷା ଦେବା ପାଇଁ ୫୦୦ଗୋଟି କ୍ଷେତ୍ର ପ୍ରଦର୍ଶନ କରାଯାଉଛି । ରାଜ୍ୟର ୭ ଗୋଟି ଜୈବ ନିୟନ୍ତ୍ରଣ କେନ୍ଦ୍ରରୁ ଉପକାରୀ କୀଟ ପ୍ରସ୍ତୁତ କରି ଅପକାରୀ କୀଟ ନିୟନ୍ତ୍ରଣରେ ବ୍ୟବହାର କରାଯାଉଛି ।

## ବ୍ୟବସାୟିକ ଫସଲ ଚାଷ

କପା, ଆଖୁ, ଚିନାବାଦାମ, ଆଳୁ, ପିଆଜ ଓ ପନିପରିବା ପରି ଅର୍ଥକରୀ ଫସଲ ଚାଷ କରାଗଲେ ଚାଷୀ ଅଧିକ ଲାଭବାନ ହେବେ, ଏଣୁ ଆସନ୍ତା ୫ବର୍ଷ ମଧ୍ୟରେ ୧,୫୦,୦୦୦ ହେକ୍ଟର ଜମିରେ ଆଖୁ ଓ ୨ ଲକ୍ଷ ହେକ୍ଟର ଜମିରେ କପାଚାଷ କରିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହାଦ୍ୱାରା କପା ଶିଳ୍ପ ଓ ଆଖୁ ଶିଳ୍ପର ବିକାଶ ହେବା ସହିତ ଅଧିକ ଶ୍ରମ ନିଯୁକ୍ତି ସୁବିଧା ମିଳିପାରିବ ।

❑❑❑

# ମୃତ୍ତିକା ସଂରକ୍ଷଣ

ମୃତ୍ତିକା ଓ ଜଳ ଉତ୍ପାଦନର ଦୁଇଟି ଅତ୍ୟନ୍ତ ଆବଶ୍ୟକ ପ୍ରାକୃତିକ ସମ୍ବଳ । ତ୍ରୁଟିପୂର୍ଣ୍ଣ ଭୂମି ତଥା ମାଟି କୁପରିଚାଳନା, ଉଦ୍ଭିଦ ତଥା ଗୁଳ୍ମ ଲତା ଇତ୍ୟାଦିର ଧ୍ୱଂସ ମୃତ୍ତିକାର ଅଧଃପତନର ମୂଳକାରଣ, ଯାହା ମୃତ୍ତିକା କ୍ଷୟ, ଜଳ ପ୍ଲାବନ, ଲବଣତ୍ୱ, କ୍ଷାରତ୍ୱ, ଉତ୍ପାଦିକା ଶକ୍ତି ହ୍ରାସ ଇତ୍ୟାଦି ଦ୍ୱାରା ସଂଘଟିତ ହୁଏ । ଆମ ଦେଶରେ ବାର୍ଷିକ ଏକ ହେକ୍ଟର ଜମିରୁ ଆନୁମାନିକ ୧୬ଟନ୍ ମାଟିକ୍ଷୟ ହେବାର ହିସାବରୁ ଜଣାଯାଉଛି । ମାଟିର ଅବସ୍ଥା, ଭୂମିର ଢାଲୁତା ଏବଂ ବୃଷ୍ଟିପାତର କ୍ଷୟ ପ୍ରବଣତା ଭିତ୍ତିରେ ଏହା ଆମ ରାଜ୍ୟରେ ହେକ୍ଟର ପ୍ରତି ୨୫-୪୦ ଟନ୍ ପର୍ଯ୍ୟନ୍ତ ବୃଦ୍ଧି ପାଇପାରେ । ଉର୍ବର ଭୂମିର ଗୁଣାତ୍ମକ ମାନ ରକ୍ଷା ନିମନ୍ତେ ବିଭିନ୍ନ ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମ ଯଥା- କୃଷି କ୍ଷେତ୍ରରେ ଭୂଉନ୍ନୟନ, ସମପତନ ବନ୍ଧ ଏବଂ ସମତଳତା, ସଂରକ୍ଷଣ ଚାଷ, ପରିତ୍ୟକ୍ତ ଭୂମିରେ କାଜୁ, ମୂର୍ଗା, ଜାଜେଣୀ ଓ ଗୋଖାଦ୍ୟ ପାଇଁ ବୃକ୍ଷରୋପଣ ଇତ୍ୟାଦି ତଥା ଅନୁର୍ବର ଜମିରେ ଦବାଇଚାଷ, ଘୋଡ଼ା ନିୟନ୍ତ୍ରଣ, ଆଡ଼ିବନ୍ଧ, ଝରା ପୁଷ୍କରିଣୀ, କ୍ଷୟ ନିୟନ୍ତ୍ରଣ ଏବଂ ମରୁଡ଼ି ତଥା ଡିରୋଟ ସମୟରେ ଜଳସେଚନ ନିମନ୍ତେ ଜଳ ଅମଳ ଓ ପୁନଃ ପରିଚାଳନା ଉପରେ ଗୁରୁତ୍ୱ ଦିଆଯାଉଅଛି । ଅଷ୍ଟମ ପଞ୍ଚବାର୍ଷିକ ଯୋଜନା ସୁଦ୍ଧା ବିଭିନ୍ନ ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମ ଦ୍ୱାରା ହାସଲ କରାଯାଇଥିବା ସଫଳତା ନିମ୍ନରେ ପ୍ରଦାନ କରାଗଲା ।

| ବିଭିନ୍ନ କାର୍ଯ୍ୟ | ଏକକ | ଅଷ୍ଟମ ଯୋଜନା ପର୍ଯ୍ୟନ୍ତ ହାସଲ ହୋଇଥିବା ସଫଳତା |
|---|---|---|
| ୧ | ୨ | ୩ |
| ଭୂ-ଉନ୍ନୟନ | ଲକ୍ଷ ହେକ୍ଟର | ୩.୫୨ |
| କାଜୁ ରୋପଣ | ” | ୧.୧୬୩ |
| କଫି ରୋପଣ | ” | ୦.୦୧୪ |
| ମୂର୍ଗା ରୋପଣ | ” | ୦.୧୦ |
| ବିବିଧ ବୃକ୍ଷ ରୋପଣ | ” | ୧.୫୩ |
| ଦବାଇ ଚାଷ | ” | ୦.୦୯ |
| ଦୁର୍ବଳ ତଥା ରୁଗ୍ଣ ଜମିର ଉପଚାର | ” | ୦.୩୧ |
| ଗୋଚର ଉନ୍ନୟନ | ” | ୦.୧୪ |
| ଶସ୍ୟ ପ୍ରଦର୍ଶନ | ” | ୦.୧୫ |
| ଜଳ ଅମଳ ପ୍ରକଳ୍ପ | ସଂଖ୍ୟା | ୮୯୮୫ |
| କୃଷିକ୍ଷେତ୍ର ପୁଷ୍କରିଣୀ | ସଂଖ୍ୟା | ୪୪୦୨ |
| ଅନ୍ୟାନ୍ୟ ମୃତ୍ତିକା ସଂରକ୍ଷଣ ପ୍ରକଳ୍ପ | ସଂଖ୍ୟା | ୭୨୨୯୪ |
| ପଥପାର୍ଶ୍ୱ ବୃକ୍ଷ ରୋପଣ | କି.ମି. | ୧୯୪୦ |
| ନଦୀତଟ କ୍ଷୟ ନିୟନ୍ତ୍ରଣ | କି.ମି. | ୨୬୮୭ |

# ଉଦ୍ୟାନ କୃଷି

ଓଡ଼ିଶାର ଅର୍ଥନୈତିକ ପ୍ରଗତିରେ କୃଷି ସର୍ବଦା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ତନ୍ମଧ୍ୟରୁ ଉଦ୍ୟାନ କାର୍ଯ୍ୟ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଅଛି । ଓଡ଼ିଶାର ଜଳବାୟୁ, ମୃତ୍ତିକା, ବୃଷ୍ଟିପାତ, ବିଭିନ୍ନ ପ୍ରକାର ଫଳ, ଫୁଲ, ପନିପରିବା, ମସଲା, ଅଏଲ ପାମ୍, କାଜୁବାଦାମ, ମହୁ, ଛତୁ ଆଦି ଚାଷ ପାଇଁ ଅନୁକୂଳ ଅଟେ । ରାଜ୍ୟରେ ଏସବୁ ଫସଲ ଚାଷର ପ୍ରସାର ଓ ଉନ୍ନତି କରି ଆବଶ୍ୟକୀୟ ପୁଷ୍ଟି ସାଧନ ବ୍ୟତୀତ ଭବିଷ୍ୟତରେ ବୈଦେଶିକ ଅର୍ଥ ଉପାର୍ଜନର ଲକ୍ଷ୍ୟ ରଖାଯାଇଅଛି । ୧୯୯୭-୯୮ ମସିହାରେ ସର୍ବମୋଟ ୩୫,୩୫୭ ହେକ୍ଟର ଜମିରେ ବିଭିନ୍ନ ପ୍ରକାର ଫଳ ଓ କାଜୁ ବାଦାମ ଚାଷ କରାଯାଇ ପାରିଛି । ଏଥି ମଧ୍ୟରୁ ଏକ ଚକଡ଼ା ଭାବେ ୨୧,୭୯୫ ହେକ୍ଟର ଜମିରେ ବିଭିନ୍ନ ଫଳଚାଷ କରାଯାଇ ପାରିଛି । ୧୯୯୮-୯୯ ମସିହାରେ ଆଉ ଅଧିକ ୨୪,୪୩୦ ହେକ୍ଟର ଜମିରେ ଏକ ଚକଡ଼ା ଫଳଚାଷ କରାଯାଉଅଛି । ରାଜ୍ୟରେ ବ୍ୟାପକ ଭାବେ ଫଳ ବଗିଚା ସୃଷ୍ଟି କରିବା ପାଇଁ ଆବଶ୍ୟକୀୟ ଉନ୍ନତ ମାନର ଫଳ ଚାରା ଆମ ରାଜ୍ୟରେ ଉତ୍ପାଦନ କରାଯିବା ପାଇଁ ବେସରକାରୀ ନର୍ସରୀ ଉଦ୍ୟୋଗୀମାନଙ୍କୁ ଉତ୍ସାହିତ କରାଯାଉଅଛି । ବିଭାଗୀୟ ନର୍ସରୀରୁ ୧୯୯୭-୯୮ ମସିହାରେ ୨୫.୬୨ ଲକ୍ଷ ବିଭିନ୍ନ ପ୍ରକାର ଫଳଚାରା ଉତ୍ପାଦନ କରାଯାଇଥିବା ସ୍ଥଳେ ୧୯୯୮-୯୯ ମସିହାରେ ୩୦ଲକ୍ଷ ଉତ୍ପାଦନ କରାଯିବାର ପଦକ୍ଷେପ ନିଆଯାଇଅଛି । ଏବର୍ଷ ନୂଆ କରି ଭୁବନେଶ୍ୱର ମହାନଗରୀକୁ ସରସ ସୁନ୍ଦର କରିବାକୁ ଉନ୍ନତ ମାନର ଫଳଚାରା ଇଚ୍ଛୁକ ବାସିନ୍ଦାମାନଙ୍କ ବାଡ଼ିରେ ଲଗାଇବା ପାଇଁ ନାମମାତ୍ର ମୂଲ୍ୟରେ ଯୋଗାଇ ଦିଆଯାଇଛି ।

ପନିପରିବା ଚାଷ ରାଜ୍ୟରେ ଚାଷୀମାନଙ୍କର ଅନ୍ୟ ଏକ ମୁଖ୍ୟ ଜୀବିକା । ରାଜ୍ୟରେ ଅଦିନିଆ ପରିବା ଚାଷକୁ ଉତ୍ସାହିତ କରିବା ପାଇଁ ରିହାତି ଦରରେ ସଂକର ଜାତୀୟ ପରିବା ବିହନ ଓ ଅନ୍ୟାନ୍ୟ ଚାଷ ସାମଗ୍ରୀ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଅଛି । ଆଳୁ ଆମ ରାଜ୍ୟର ଏକ ମୁଖ୍ୟ ପରିବା । ଏହାର ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ବୃଦ୍ଧି ପାଇଁ ଉନ୍ନତ କିସମର ପ୍ରମାଣିତ ବିହନ ଯୋଗାଣ, ଆଳୁ ମଞ୍ଜି (ଟି.ପି.ଏସ୍.) ବ୍ୟବହାର ଓ ନଦୀ ବାଲିରେ ଆଳୁ ଚାଷକୁ ସମ୍ପ୍ରସାରିତ କରାଯାଉଅଛି । ୧୯୯୭-୯୮ ମସିହାରେ ୨୦ ହଜାର କୁଇଣ୍ଟାଲ ଉନ୍ନତ ମାନର ଆଳୁ ବିହନ ଯୋଗାଇ ଦିଆଯାଇଥିବା ସ୍ଥଳେ ୧୯୯୮-୯୯ ମସିହାରେ ୩୦ ହଜାର କୁଇଣ୍ଟାଲ ବିହନ ଚାଷୀମାନଙ୍କୁ ଯୋଗାଇ ଦିଆଯାଉଅଛି । ସେହିପରି ଭାବେ ୧୯୯୭-୯୮ ମସିହାରେ ହେଉଥିବା ୨୩୦ ହେକ୍ଟର ନଦୀ ବାଲିରେ ଆଳୁ ଚାଷକୁ ୧୯୯୮-୯୯ ମସିହାରେ ୩୦୦ ହେକ୍ଟରକୁ ସମ୍ପ୍ରସାରିତ କରାଯିବା ପାଇଁ ପଦକ୍ଷେପ ନିଆଯାଉଅଛି । ଉନ୍ନତ ମାନର ପରିବା ବିହନ ଉତ୍ପାଦନ ପାଇଁ କେନ୍ଦ୍ରୀୟ ଗବେଷଣାଗାରରୁ ପିଣ୍ଡ ବିହନ ଆଣି ମାନସମ୍ପନ୍ନ ପରିବା ବିହନ ଉତ୍ପାଦନ ଓ ବଣ୍ଟନ କାର୍ଯ୍ୟକ୍ରମକୁ ୧୯୯୮-୯୯ ମସିହାରେ ପ୍ରାଧାନ୍ୟ ଦିଆଯାଇଅଛି । ଆଳୁଚାଷ ପ୍ରତି ଚାଷୀମାନଙ୍କର ଉତ୍ସାହ ବୃଦ୍ଧି କରାଇବା ପାଇଁ ବିଭାଗୀୟ ଶୀତଳଭଣ୍ଡାରଗୁଡ଼ିକୁ ନବୀକରଣ କରାଯାଉଅଛି ଏବଂ ସରକାରୀ ସାହାଯ୍ୟ ଦେଇ ଆଉ ୮ଟି ନୂତନ ଶୀତଳଭଣ୍ଡାର କୃଷିନୀତି ଘୋଷଣା ପରେ କରାଯାଇପାରିଛି । ପିଆଜ ଆମ ରାଜ୍ୟର ଏକ ପୁରାତନ ଚାଷ । ପିଆଜ ଚାଷକୁ ଲାଭଜନକ କରାଇବା ପାଇଁ ସ୍ୱଳ୍ପ ମୂଲ୍ୟର ସାଇତା କୋଠି ନିର୍ମାଣ ପାଇଁ ପଦକ୍ଷେପ ନିଆଯାଉଅଛି । ଏତଦ୍ ବ୍ୟତୀତ ଉନ୍ନତ ମାନର ପିଆଜ ମଞ୍ଜି ରିହାତି ଦରରେ ଚାଷୀମାନଙ୍କୁ ଯୋଗାଇ ଦିଆଯାଉଅଛି । ୧୯୯୭-୯୮ ମସିହାରେ ୧୫୫ କୁଇଣ୍ଟାଲ ମଞ୍ଜି ଯୋଗାଯାଇଥିବା ସ୍ଥଳେ ୧୯୯୮-୯୯ ମସିହାରେ ୨୦୦ କୁଇଣ୍ଟାଲ ପିଆଜ ମଞ୍ଜି ଯୋଗାଇ ଦିଆଯାଉଅଛି ।

କନ୍ଦମୂଳ, ସାରୁ, ଓଲୁଅ, ଗଇଆଳୁ, ଆଦିମୂଳ ଓ କନ୍ଦ ଫସଲର ଉନ୍ନତି କଳ୍ପେ ଚାଷୀ ପ୍ରଶିକ୍ଷଣ ସହ ଉନ୍ନତ ମାନର ବିହନ ଚାଷୀମାନଙ୍କୁ ଯୋଗାଇ ଦିଆଯାଉଅଛି । ଅଦା, ହଳଦି, ଲଙ୍କା, ରସୁଣ, ତେନ୍ତୁଳି, ଗୋଲମରିଚ ଆଦି ମସଲା ଚାଷର ଉନ୍ନତି ପାଇଁ ଅଧିକ ଅମଳକ୍ଷମ ବିହନ ଯୋଗାଣ, ପ୍ରଦର୍ଶନ କ୍ଷେତ୍ର, ଚାଷ ପ୍ରସାର, ଚାଷୀ ପ୍ରଶିକ୍ଷଣ ଓ ଫସଲ ସଂରକ୍ଷଣ କାର୍ଯ୍ୟକ୍ରମ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଅଛି ।

ରାଜ୍ୟରେ ଛତୁ ଚାଷ ପୁଷ୍ଟିସାଧନ ଓ ଅର୍ଥ ଉତ୍ପାଦନ ପାଇଁ ଏକ ସୁଗମ ପନ୍ଥା । ୧୯୯୮-୯୯ ମସିହାରେ ଏକ ନୂତନ ଧରଣର ଛତୁ ବିହନ ଉତ୍ପାଦନ ପ୍ରତିଷ୍ଠାନ ସ୍ଥାପନ ଏପିକଲ ମାଧ୍ୟମରେ କରାଯାଉଅଛି । ଏହା ଅଧିକ ଶ୍ରମଦିବସ ସୃଷ୍ଟି କରିବା ଓ ବେକାର ଯୁବ ଗୋଷ୍ଠୀକୁ ଆତ୍ମନିଯୁକ୍ତି ଯୋଗାଇବାରେ ସହାୟକ ହେବ ।

ଫୁଲଚାଷ ଏକ ଅର୍ଥକରୀ ଓ ଲାଭଜନକ ଚାଷ । ସହର ତଳି ଅଞ୍ଚଳରେ ବ୍ୟବସାୟିକ ଫୁଲଚାଷ ପାଇଁ ୧୯୯୭-୯୮ ମସିହାରେ ୧୫୫ ହେକ୍ଟର ଜମିରେ ଫୁଲଚାଷ ହୋଇଥିବା ସ୍ଥଳେ

୧୯୯୮-୯୯ ମସିହାରେ ୨୫୦ ହେକ୍ଟର କରାଯାଇଅଛି । ଉତ୍ପାଦିକା ଶକ୍ତି ବୃଦ୍ଧି ନିମିତ୍ତ ମହୁମାଛିର ସହାୟତା ଯଥେଷ୍ଟ ରହିଛି । ଏଥିପାଇଁ ବ୍ୟବସାୟିକ ମହୁଚାଷ ଉପରେ ଗୁରୁତ୍ୱ ଦିଆଯାଇଅଛି । ଉନ୍ନତ ମାନର ମହୁମାଛି ପ୍ରଜନନ କରାଇ ଆଗ୍ରହୀ ଚାଷୀମାନଙ୍କୁ ରିହାତି ଦରରେ ଯୋଗାଇ ଦିଆଯାଉଅଛି ।

ରାଜ୍ୟରେ ଖାଦ୍ୟ ଉପଯୋଗୀ ତେଲର ବହୁଳ ଆବଶ୍ୟକତା ରହିଛି । ୧୯୯୭-୯୮ ମସିହା ସୁଦ୍ଧା ରାଜ୍ୟରେ ମୋଟ ୧୩୨୭ ହେକ୍ଟର ଜମିରେ ଅଏଲ ପାମ୍ ଚାଷ କରାଯାଇ ପାରିଛି । ୧୯୯୮-୯୯ ମସିହାରେ ଆଉ ୧୫୦୦ ହେକ୍ଟର ଜମିରେ ଅଏଲ ପାମ୍ ଚାଷ ସହିତ ବୁନ୍ଦା ଜଳସେଚନ ସ୍ଥାପନ କରାଯିବାର ବ୍ୟବସ୍ଥା କରାଯାଉଅଛି । ଉଦ୍ୟାନ ଫସଲରେ ବୁନ୍ଦା ଜଳସେଚନ କରାଯାଉଥିବା ସ୍ଥଳେ ୧୯୯୮-୯୯ ମସିହାରେ ୨୦୦୦ ହେକ୍ଟର କରାଯିବା ପାଇଁ ସର୍ବେକ୍ଷଣ କରାଯାଉଅଛି । ସବୁଜ ଚାରାଗୃହ ମାଧ୍ୟମରେ ଉନ୍ନତ ଚାରା ଉତ୍ପାଦନ ଓ ଅଦିନିଆ ପରିବା ଚାଷ କରିବା ଏକ ଅଭିନବ ଜ୍ଞାନ କୌଶଳ । ଇସ୍ରାଏଲ୍ ରାଜ୍ୟରୁ ଏହି ଜ୍ଞାନ କୌଶଳ ହାସଲ କରାଯାଇ ୧୯୯୭-୯୮ ମସିହାରେ ୧୧ଟି ଗୃହ ସ୍ଥାପନ କରାଯାଇ ପାରିଛି । ୧୯୯୮-୯୯ ମସିହାରେ ୫୦ଟି ସବୁଜ ଗୃହ ସ୍ଥାପନ କରାଯାଉଅଛି ଏବଂ ଇସ୍ରାଏଲ୍‌ରୁ ଫଳ ବିଶେଷଜ୍ଞ ଆଣି ଆମ ରାଜ୍ୟର ୩୦ଜଣ ବୈଷୟିକ ଏବଂ କୁଶଳୀ ଚାଷୀଙ୍କୁ ଫଳ ଚାଷ ଉପରେ ତାଲିମ ଦେବାର ବ୍ୟବସ୍ଥା କରାଯାଉଛି ।

ଘଘଘ

# ଜଳ ବିଭାଜିକା ଉନ୍ନୟନ

ଜଳ ବିଭାଜିକା ଏକ ପରିଚାଳନୀୟ ଭୌଗୋଳିକ ସମ୍ବନ୍ଧୀୟ ଏକକ ଯାହା ପ୍ରଚଳିତ ଜଳବାୟୁ, ମୃତ୍ତିକା, ଜଳ, ସ୍ଥାନୀୟ ଉପଲବ୍ଧ ସାମଗ୍ରୀ ଏବଂ ମାନବ ସମ୍ବଳ ଭିତ୍ତିରେ ସମତାଳ ଦେଇ ଶସ୍ୟ ଉତ୍ପାଦନ ବୃଦ୍ଧି ତଥା ପ୍ରକଳ୍ପ ଅଞ୍ଚଳର ସାମୂହିକ ଉନ୍ନତିରେ ସହାୟକ ହୁଏ । ସ୍ୱଳ୍ପମୂଲ୍ୟ ପ୍ରଯୁକ୍ତି ବିଦ୍ୟା, କୃଷି ଉପଯୋଗୀ ଓ ଅଣକୃଷି ଜମିରେ ଉପ୍ତତି ସ୍ଥଳରେ ଜଳକଣା ସଂରକ୍ଷଣ ଯଥା କ୍ଷୁଦ୍ର ଖୋଦିତ ପୋଖରୀ ସୃଷ୍ଟି, ଢିଲା ପଥର ବନ୍ଧ, ଝାଟି ବାଡ଼ବନ୍ଧ, ମାଟି ପ୍ରତିରୋଧ ବନ୍ଧ ଓ ନିମ୍ନ ସ୍ଥାନରେ ଝରା ପୁଷ୍କରିଣୀ ଦ୍ୱାରା ଜଳ ନିଷ୍କାସନ ନାଳୀର ଉପଚାର କରାଯାଏ । ସ୍ଥାନୀୟ ସଂରକ୍ଷଣ ତଥା ଜୈବିକ ଉତ୍ପାଦନ ପଦ୍ଧତିରେ ବହୁମୂଲ୍ୟ ପ୍ରକଳ୍ପ ପରିବର୍ତ୍ତେ ସବୁଜ ପ୍ରକଳ୍ପଗୁଡ଼ିକୁ ପ୍ରାଥମିକତା ଦିଆଯାଏ । ଜଳ ବିଭାଜିକା ଅଞ୍ଚଳରେ ସଂରକ୍ଷଣ କାର୍ଯ୍ୟକ୍ରମ ସହିତ କୃଷିଭିତ୍ତିକ ଜଙ୍ଗଲ, କୃଷିଭିତ୍ତିକ ଫଳଚାଷ, ସିଲଭି ପାଷ୍ଟର ଇତ୍ୟାଦି କାର୍ଯ୍ୟକ୍ରମ ଜୈବିକ ଉତ୍ପାଦନରେ ଅନ୍ତର୍ଭୁକ୍ତ କରାଯାଏ । ଗତ ଦୁଇ ଦଶନ୍ଧି ହେବ ଉତ୍ପାଦନ ପରିବେଷ୍ଟନୀ ଓ ଉତ୍ପାଦିକା ଶକ୍ତି ବୃଦ୍ଧି କରିବାରେ ଜଳବିଭାଜିକା କାର୍ଯ୍ୟକ୍ରମର ବିଶେଷ ଗୁରୁତ୍ୱ ରହିଛି । ଭାରତ ସରକାର ଅଷ୍ଟମ ଯୋଜନା କାଳରେ କୃଷି ମନ୍ତ୍ରଣାଳୟ ଦ୍ୱାରା ବୃଷ୍ଟିପୁଷ୍ଟ ଅଞ୍ଚଳ ନିମନ୍ତେ ଏକ ବିରାଟ ଜଳ ବିଭାଜିକା କାର୍ଯ୍ୟକ୍ରମ ଜାତୀୟ ଜଳ ବିଭାଜିକା ଉନ୍ନୟନ କାର୍ଯ୍ୟକ୍ରମ ପରିକଳ୍ପନା ମାଧ୍ୟମରେ ପ୍ରାରମ୍ଭ କରିଛନ୍ତି । ଗ୍ରାମ୍ୟ ଉନ୍ନୟନ ମନ୍ତ୍ରଣାଳୟ ମଧ୍ୟ ମରୁଡ଼ି ପ୍ରବଣ ଅଞ୍ଚଳ କାର୍ଯ୍ୟକ୍ରମ (ଡି.ପି.ଏ.ପି.), ସମନ୍ୱିତ ପରିତ୍ୟକ୍ତ ଭୂମି ଉନ୍ନୟନ କାର୍ଯ୍ୟକ୍ରମ (ଆଇ.ଡବ୍ଲ୍ୟୁ.ଡି.ପି.) ଏବଂ ନିଶ୍ଚିତ ରୋଜଗାର ଯୋଜନା (ଇ.ଏ.ଏସ୍.) ପ୍ରଭୃତି ପରିକଳ୍ପନାଗୁଡ଼ିକ ଉପରୋକ୍ତ କାର୍ଯ୍ୟକ୍ରମରେ ସାମିଲ କରିଛନ୍ତି । ଏହାଛଡ଼ା ରାଜ୍ୟର ବିଭିନ୍ନ ନିରୁପିତ ଅଞ୍ଚଳରେ ବୈଦେଶିକ ସାହାଯ୍ୟପ୍ରାପ୍ତ ପରିକଳ୍ପନା ମାଧ୍ୟମରେ ଜଳବିଭାଜିକା ଉନ୍ନୟନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଅଛି । ଜଳବିଭାଜିକା କାର୍ଯ୍ୟକ୍ରମ ଦ୍ୱାରା ବିଭିନ୍ନ ପରିକଳ୍ପନା ମାଧ୍ୟମରେ ୧୯୯୭-୯୮ ମସିହା ପର୍ଯ୍ୟନ୍ତ ହୋଇଥିବା ଭୌତିକ ସଫଳତା ନିମ୍ନରେ ପ୍ରଦାନ କରାଗଲା ।

| କ୍ର.ସଂ | ପରିକଳ୍ପନା ନାମ | ନିରୁପିତ ଜଳ ବିଭାଜିକାର ଲକ୍ଷ୍ୟ ଆୟତନ (ହେକ୍ଟର) | ଭୌତିକ ସଫଳତା (ହେକ୍ଟର) |
|---|---|---|---|
| ୧ | ୨ | ୩ | ୪ |
| ୧. | ଜାତୀୟ ଜଳ ବିଭାଜିକା କାର୍ଯ୍ୟକ୍ରମ ବୃଷ୍ଟିପୁଷ୍ଟ ଅଞ୍ଚଳ ପାଇଁ | ୩,୮୮,୦୦୦ | ୩,୨୫,୦୦୦ |
| ୨. | ସମନ୍ୱିତ ଜଳ ବିଭାଜିକା ଉନ୍ନୟନ (ସମତଳ ଅଞ୍ଚଳ) (ବୈଦେଶିକ ସାହାଯ୍ୟପ୍ରାପ୍ତ) | ୧,୦୦,୮୬୬ | ୯୮,୮୯୭ |
| ୩. | ଭାରତ-ଡେନ୍‌ମାର୍କ ବ୍ୟାପକ ଜଳବିଭାଜିକା ପ୍ରକଳ୍ପ (ବୈଦେଶିକ ସାହାଯ୍ୟପ୍ରାପ୍ତ) | ୪୦,୦୦୦ | ୭,୭୨୨ |
| | ସର୍ବମୋଟ | ୫,୨୮,୮୬୬ | ୪,୩୧,୬୧୯ |

# ଜଳସମ୍ପଦ ବିଭାଗର ସଫଳତା

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବୃହତ୍, ମଧ୍ୟମ ଏବଂ କ୍ଷୁଦ୍ର ଜଳ ସେଚନ ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରି ଏବଂ ନୂତନ ପ୍ରକଳ୍ପମାନ ନିର୍ମାଣ କରାଇ ଅଧିକ ଜମିକୁ ଜଳସେଚନର ସୁବିଧା ଯୋଗାଇ ଦେବାକୁ ରାଜ୍ୟ ସରକାର ତାଙ୍କର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଏଥିପାଇଁ ବିଶ୍ୱବ୍ୟାଙ୍କ ତଥା ଅନ୍ୟାନ୍ୟ ଆନ୍ତର୍ଜାତିକ ସଂସ୍ଥାମାନଙ୍କଠାରୁ ଋଣ ସାହାଯ୍ୟ ନିଆଯାଉଅଛି । ୨୭ ଗୋଟି ବୃହତ୍ ମଧ୍ୟମ ଜଳସେଚନ ପ୍ରକଳ୍ପ ଓ ୬୩ ଗୋଟି କ୍ଷୁଦ୍ରଜଳସେଚନ ପ୍ରକଳ୍ପର ନିର୍ମାଣ, ୨୪୯୧ ଗୋଟି ଉଠାଜଳସେଚନ ପ୍ରକଳ୍ପର ପାଣିନାଳ ନିର୍ମାଣ ପାଇଁ ନାବାର୍ଡ଼ କର୍ତ୍ତୃପକ୍ଷଙ୍କଠାରୁ ଋଣ ସହାୟତା ମିଳିଅଛି । ତ୍ୱରାନ୍ୱିତ ଜଳସେଚନ ସୁବିଧା କାର୍ଯ୍ୟକ୍ରମ ମାଧ୍ୟମରେ ଭାରତ ସରକାରଙ୍କ ସହାୟତାରେ ରାଜ୍ୟରେ ୫ଗୋଟି ଜଳସେଚନ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଚାଲୁଅଛି । ଜର୍ମାନୀର କେ.ଏଫ୍.ଡବ୍ଲ୍ୟୁ. ସଂସ୍ଥାଠାରୁ ଋଣ ଆଣି ନୂତନ ଉଠାଜଳସେଚନ ପ୍ରକଳ୍ପମାନଙ୍କର ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଅଛି । ଉପରୋକ୍ତ ଯୋଜନାଗୁଡ଼ିକ କାର୍ଯ୍ୟକାରୀ ହେବା ଫଳରେ ୧୯୯୭-୯୮ ବର୍ଷ ଜୁନ୍ ମାସ ସୁଦ୍ଧା ଅଧିକ ୬୬୬୯୦ ହେକ୍ଟର ଜମି ପାଇଁ ସେଚ ସୁବିଧା ସୃଷ୍ଟି କରାଯାଇପାରିଛି । ୧୯୯୯ ମସିହା ଜୁନ୍ ମାସ ସୁଦ୍ଧା ପ୍ରାୟ ୭୮୦୦୦ ହେକ୍ଟର ଅଧିକ ଜମି ପାଇଁ ସେଚ ସୁବିଧା ସୃଷ୍ଟି କରାଯିବାର ଲକ୍ଷ୍ୟ ରଖାଯାଇଅଛି । ଭାରତ ସରକାର ଏବଂ ନାବାର୍ଡ କର୍ତ୍ତୃପକ୍ଷଙ୍କ ଋଣ ସହାୟତାରେ ମରୁଡ଼ି ପ୍ରବଣ କେ.ବି.କେ. ଜିଲ୍ଲାମାନଙ୍କରେ ଜଳସେଚନର ସୁବିଧା ପାଇଁ ୫ଗୋଟି ବୃହତ ଓ ମଧ୍ୟମ ଜଳ ସେଚନ ପ୍ରକଳ୍ପ ଓ ୩୮ ଗୋଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନିର୍ମାଣ କରିବା ପାଇଁ ଏଗୁଡ଼ିକୁ ଦୀର୍ଘ ମିଆଦି କାର୍ଯ୍ୟକ୍ରମ ଯୋଜନା (L.T.A.P.) ର ଅନ୍ତର୍ଭୁକ୍ତ କରାଯାଇଅଛି ।

ରାଜ୍ୟରେ ଆସନ୍ତା ୨୦୦୦ ମସିହା ସୁଦ୍ଧା କ୍ଷୁଦ୍ର ଜଳସେଚନ ମାଧ୍ୟମରେ ମୋଟ ୪,୬୨, ୨୮ ହେକ୍ଟର, ମଧ୍ୟମ ଓ ବୃହତ୍ ଜଳସେଚନ ପ୍ରକଳ୍ପ ମାଧ୍ୟମରେ ମୋଟ ୧୨,୯୮,୮୫୦ ହେକ୍ଟର ଓ ଉଠାଜଳସେଚନ ପ୍ରକଳ୍ପ ମାଧ୍ୟମରେ ମୋଟ ୩,୪୫,୦୦୦ ହେକ୍ଟର ଜମିରେ ଜଳସେଚନ ସୁବିଧା ସୃଷ୍ଟି କରିବାକୁ ସରକାର ଲକ୍ଷ୍ୟ ଧାର୍ଯ୍ୟ କରିଛନ୍ତି ।

୧୯୯୫ ମସିହାଠାରୁ ଏଯାବତ୍ ଉପରୋକ୍ତ ବାବଦରେ ସରକାର କରିଥିବା ଖର୍ଚ୍ଚର ପରିମାଣ, ଧାର୍ଯ୍ୟଲକ୍ଷ୍ୟ ଓ ଆଗାମୀ ଲକ୍ଷ୍ୟ ପୂରଣ ନିମନ୍ତେ ଆବଶ୍ୟକ ଅର୍ଥର ବିବରଣୀ ପରିଶିଷ୍ଟ 'କ'ରେ ଦିଆଗଲା ।

ଆଗାମୀ ଲକ୍ଷ୍ୟ ପୂରଣ ପାଇଁ ରାଜ୍ୟ ସରକାରଙ୍କର ନିଜସ୍ୱ ସମ୍ବଳ ବ୍ୟତୀତ ବିଶ୍ୱବ୍ୟାଙ୍କ, ଓ.ଇ.ସି.ଏଫ୍.(ଜାପାନ), କେ.ଏଫ୍.ଡବ୍ଲ୍ୟୁ (ଜର୍ମାନୀ), ନାବାର୍ଡ଼ ଏବଂ କେନ୍ଦ୍ରସରକାରଙ୍କର ଏ.ଆଇ.ବି.ପି. ଯୋଜନା ମାଧ୍ୟମରେ ଅର୍ଥ ବ୍ୟବସ୍ଥା କରିବାକୁ ପଦକ୍ଷେପ ନିଆଯାଉଛି ।

## ପରିଶିଷ୍ଟ - 'କ'

| କ୍ର.ନଂ. | ପ୍ରକଳ୍ପର ନାମ | ୧୯୯୫ ମସିହା ଏପ୍ରିଲ ମାସଠାରୁ ୧୯୯୮ମସିହା ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଖର୍ଚ୍ଚ କରିବା ପାଇଁ ଲକ୍ଷ୍ୟ ଥିବା ଧାର୍ଯ୍ୟ ଅର୍ଥର ପରିମାଣ (ଲକ୍ଷ ଟଙ୍କାରେ) | ୧୯୯୫ ମସିହା ଏପ୍ରିଲ ମାସଠାରୁ ୧୯୯୮ ମସିହା ମାର୍ଚ୍ଚମାସ ପର୍ଯ୍ୟନ୍ତ ଖର୍ଚ୍ଚର ପରିମାଣ (ଲକ୍ଷ ଟଙ୍କାରେ) | ୨୦୦ ମସିହା ପର୍ଯ୍ୟନ୍ତ ଲକ୍ଷ୍ୟ ପୂରଣ ପାଇଁ ଆବଶ୍ୟକୀୟ ଅର୍ଥର ପରିମାଣ (ଲକ୍ଷ ଟଙ୍କାରେ) |
|---|---|---|---|---|
| ୧ | ୨ | ୩ | ୪ | ୫ |
| ୧. | ବୃହତ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ | ୧,୧୬,୭୬୯.୦୦ | ୧,୦୫,୨୩୩.୨୫ | ୧,୪୦,୫୮୭.୦୦ |
| ୨. | କ୍ଷୁଦ୍ରଜଳସେଚନ ପ୍ରକଳ୍ପ | ୧୧,୭୯୦.୦୦ | ୮,୦୧୦.୬୧ | ୧୫,୧୬୭.୮୨ |
| ୩. | ଉଠାଜଳସେଚନ ପ୍ରକଳ୍ପ | ୧୪,୫୧୪.୦୦ | ୯,୦୩୬.୦୦ | ୫,୦୦୦.୦୦ |

## ସାମ୍ଭାବ୍ୟ ଅତିରିକ୍ତ

ଓଡ଼ିଶା ମୋଟ ଚାଷଜମିର ପରିମାଣ ୬୫.୫୯ ଲକ୍ଷ ହେକ୍ଟର ।

ସେଚୋପଯୋଗୀ ଜମିର ପରିମାଣ ୫୯.୦୦ ଲକ୍ଷ ହେକ୍ଟର ।

୨୦୦୦ ମସିହା ସୁଦ୍ଧା ସେଚଉପଯୋଗୀ ଜମିର ୫୦ଶତାଂଶ ଅର୍ଥାତ୍ ୨୯.୫୦ ଲକ୍ଷ ହେକ୍ଟର ଜମି ପାଇଁ ସେଚକ୍ଷମତା ସୃଷ୍ଟି କରିବା ପାଇଁ ସରକାର ଲକ୍ଷ୍ୟ ରଖିଛନ୍ତି ।

୧୯୯୫ ମସିହା ମାର୍ଚ୍ଚ ମାସ ସୁଦ୍ଧା ଆମ ରାଜ୍ୟରେ ସମସ୍ତ ସୂତ୍ରରୁ ମୋଟ ୨୧,୮୫,୮୫୮ ହେକ୍ଟର ଜମିପାଇଁ ସେଚ କ୍ଷମତା ନିମ୍ନ ପ୍ରକାରେ ସୃଷ୍ଟି କରାଯାଇଥିଲା ।

| | |
|---|---|
| ବୃହତ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ | ୯,୭୭,୨୮୮ ହେକ୍ଟର |
| କ୍ଷୁଦ୍ର ଜଳସେଚନ ପ୍ରକଳ୍ପ | ୩,୯୬,୦୬୦ ହେକ୍ଟର |
| ଉଠାଜଳସେଚନ ପ୍ରକଳ୍ପ | ୨,୯୪,୫୧୦ ହେକ୍ଟର |
| ଅନ୍ୟାନ୍ୟ ସୂତ୍ରରୁ | ୫,୧୮,୦୦୦ ହେକ୍ଟର |
| ମୋଟ | ୨୧,୮୫,୮୫୮ ହେକ୍ଟର |

୧୯୯୫ ମସିହା ଜୁଲାଇ ମାସଠାରୁ ୧୯୯୮ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ବିଭିନ୍ନ ସୂତ୍ରରୁ ମୋଟ ୨,୧୭,୨୨୨ ହେକ୍ଟର ଜମିପାଇଁ ସେଚକ୍ଷମତା ସୃଷ୍ଟି କରାଯାଇଛି ।

| | |
|---|---|
| ବୃହତ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ | ୧,୩୪,୧୧୨ ହେକ୍ଟର |
| କ୍ଷୁଦ୍ର ଜଳସେଚନ ପ୍ରକଳ୍ପ | ୩୮,୫୭୦ ହେକ୍ଟର |
| ଉଠାଜଳସେଚନ ପ୍ରକଳ୍ପ | ୩୧,୦୨୦ ହେକ୍ଟର |
| ଅନ୍ୟାନ୍ୟ ସୂତ୍ରରୁ | ୧୩,୫୨୦ ହେକ୍ଟର |
| ମୋଟ | ୨,୧୭,୨୨୨ ହେକ୍ଟର |

୧୯୯୮ ମସିହା ଜୁଲାଇ ମାସଠାରୁ ୨୦୦୦ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଜଳସମ୍ପଦ ବିଭାଗ ଅଧୀନରେ କାର୍ଯ୍ୟକାରୀ ହେଉଥିବା ବୃହତ୍ ଓ ମଧ୍ୟମ, କ୍ଷୁଦ୍ରଜଳସେଚନ ଓ ଉଠାଜଳସେଚନ ମାଧ୍ୟମରେ ନିମ୍ନ ପ୍ରକାରେ ସେଚ ପଦାର୍ଥ ସୃଷ୍ଟି ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

| | |
|---|---|
| ବୃହତ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ | ୧,୮୨,୪୫୦ ହେକ୍ଟର |
| କ୍ଷୁଦ୍ର ଜଳସେଚନ ପ୍ରକଳ୍ପ | ୨୨,୭୬୮ ହେକ୍ଟର |
| ଉଠାଜଳସେଚନ ପ୍ରକଳ୍ପ | ୧୯,୪୭୦ ହେକ୍ଟର |
| ମୋଟ | ୨,୩୪,୫୬୮ ହେକ୍ଟର |

୨୦୦୦ ମସିହା ଜୁନ୍ ମାସ ସୁଦ୍ଧା ବୃହତ ଓ ମଧ୍ୟମ, କ୍ଷୁଦ୍ରଜଳସେଚନ ଓ ଉଠାଜଳସେଚନର ପ୍ରକଳ୍ପ ମାଧ୍ୟମରେ ନିମ୍ନ ପ୍ରକାରେ ସର୍ବମୋଟ ସେଚକ୍ଷମତା ସୃଷ୍ଟି କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

| | |
|---|---|
| ବୃହତ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ | ୧୨,୯୮,୮୫୦ ହେକ୍ଟର |
| କ୍ଷୁଦ୍ର ଜଳସେଚନ ପ୍ରକଳ୍ପ | ୪,୬୨,୨୮୮ ହେକ୍ଟର |
| ଉଠାଜଳସେଚନ ପ୍ରକଳ୍ପ | ୩,୪୫,୦୦୦ ହେକ୍ଟର |
| ମୋଟ | ୨୧,୦୬,୧୩୮ ହେକ୍ଟର |

ଏତଦ୍ ବ୍ୟତୀତ ଅନ୍ୟାନ୍ୟ ସୂତ୍ରରୁ (ସେଚକୂପ, ନଳକୂପ, ଜଳଥଳ ପ୍ରକଳ୍ପ ଇତ୍ୟାଦି) ୮,୪୩,୮୬୨ ହେକ୍ଟର ଜମି ପାଇଁ ସେଚ ସୁବିଧା ସୃଷ୍ଟି କରିବାକୁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

୨୦୦୦ ମସିହା ଜୁନ୍ ମାସ ସୁଦ୍ଧା ଲକ୍ଷ୍ୟ ରଖାଯାଇଥିବା ସେଚ କ୍ଷମତା ସୃଷ୍ଟି କରିବା ପାଇଁ ବୃହତ୍ ଓ ମଧ୍ୟମ, କ୍ଷୁଦ୍ର ଜଳସେଚନ ଓ ଉଠାଜଳସେଚନ ପ୍ରକଳ୍ପ ନିମନ୍ତେ ଆବଶ୍ୟକୀୟ ଅର୍ଥ ନିମ୍ନରେ ଦର୍ଶାଗଲା ।

| | |
|---|---|
| ବୃହତ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ | ୧,୪୦,୫୮୨.୦୦ ଲକ୍ଷ ଟଙ୍କା |
| କ୍ଷୁଦ୍ର ଜଳସେଚନ ପ୍ରକଳ୍ପ | ୧୫,୧୬୭.୮୨ " |
| ଉଠାଜଳସେଚନ ପ୍ରକଳ୍ପ | ୫,୦୦୦.୦୦ " |
| ମୋଟ | ୧,୬୦,୭୫୪.୮୨ " |

ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ମାଧ୍ୟମରେ ସେଚକ୍ଷମତା ସୃଷ୍ଟି କରିବାକୁ ଏକ ହେକ୍ଟର ଜମି ପାଇଁ ପ୍ରାୟ ୭୦,୦୦୦ ଟଙ୍କାରୁ ୮୦,୦୦୦ ଟଙ୍କା ଖର୍ଚ୍ଚ ହୋଇଥାଏ । କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ପାଇଁ ଏକ ହେକ୍ଟର ପିଛା ଖର୍ଚ୍ଚ ପରିମାଣ ପ୍ରାୟ ୫୫,୦୦୦ ଟଙ୍କାରୁ ୬୫,୦୦୦ ଟଙ୍କା ଏବଂ ଉଠା ଜଳସେଚନ କ୍ଷେତ୍ରରେ ହେକ୍ଟର ପ୍ରତି ପ୍ରାୟ ୨୮,୦୦୦ ରୁ ୩୫,୦୦୦ ଟଙ୍କା ଖର୍ଚ୍ଚ ହୋଇଥାଏ ।

ଅନ୍ୟାନ୍ୟ ସୂତ୍ରରୁ ଲକ୍ଷ୍ୟ ରଖାଯାଇଥିବା ୩,୧୨,୩୪୨ ହେକ୍ଟର ସେଚ କ୍ଷମତା ସୃଷ୍ଟି ନିମନ୍ତେ କୃଷି ବିଭାଗ, ଗ୍ରାମ୍ୟ ଉନ୍ନୟନ ବିଭାଗ ଓ ପଞ୍ଚାୟତିରାଜ ବିଭାଗ ପଦକ୍ଷେପ ଗ୍ରହଣ କରିବେ ।

ଜଳସମ୍ପଦ ବିଭାଗ ଅଧୀନରେ କାର୍ଯ୍ୟକାରୀ ହେଉଥିବା ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ, କ୍ଷୁଦ୍ରଜଳସେଚନ ପ୍ରକଳ୍ପ ଓ ଉଠାଜଳସେଚନ ପ୍ରକଳ୍ପ ଦ୍ୱାରା ୨୦୦୦ ମସିହା ସୁଦ୍ଧା ଲକ୍ଷ୍ୟ ରଖାଯାଇଥିବା ସେଚ ସୁବିଧା ସୃଷ୍ଟି କରିବା ପାଇଁ, ଏହି ପ୍ରକଳ୍ପଗୁଡ଼ିକର କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି ।

ପ୍ରଥମ ପଦକ୍ଷେପ ସ୍ୱରୂପ ଜଳସେଚନ ଏକୀକରଣ ପ୍ରକଳ୍ପ (W.R.C.P) ଅଧୀନରେ ପୂର୍ବରୁ ଆରମ୍ଭ କରାଯାଇ ୮ଟି ଅସମ୍ପୂର୍ଣ୍ଣ ଥିବା ବୃହତ୍ ଓ ମଧ୍ୟମ ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରିବା ପାଇଁ ବହୁପୂର୍ବରୁ ନିର୍ମିତ ୨୨ଗୋଟି ବୃହତ୍ ଓ ମଧ୍ୟମ ପ୍ରକଳ୍ପଗୁଡ଼ିକର ସେଚକ୍ଷମତାର ଦୃଢ଼ୀକରଣ ପାଇଁ ଏବଂ ଜଳସେଚନ ସମ୍ପର୍କୀୟ ବିଭିନ୍ନ କାର୍ଯ୍ୟର ସୁପରିଚାଳନା ପାଇଁ ୧,୪୦୯.୯୦ କୋଟି ଟଙ୍କାର ଏକ ଯୋଜନା ପ୍ରସ୍ତୁତ କରି ଏଥିପାଇଁ ବିଶ୍ୱବ୍ୟାଙ୍କଠାରୁ ୧,୧୮୬.୭୦ କୋଟି ଟଙ୍କାର ଋଣ ମଞ୍ଜୁର କରାଇ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ।

ଜଳସମ୍ପଦ ଏକୀକରଣ ପ୍ରକଳ୍ପ ଅଧୀନରେ ଏ ପର୍ଯ୍ୟନ୍ତ ୩୮,୯୪୦ ହେକ୍ଟର ଜମିପାଇଁ ସେଚକ୍ଷମତା ସୃଷ୍ଟି କରାଯାଇପାରିଛି ଏବଂ ୨୦୦୨ ମସିହା ସୁଦ୍ଧା ଅବଶିଷ୍ଟ ୨୭,୮୮୦ ହେକ୍ଟର ଜମିପାଇଁ ସେଚ ସୁବିଧା ସୃଷ୍ଟି କରାଯିବ ।

ଓ.ଇ.ସି.ଏଫ୍ (ଜାପାନ) କର୍ତ୍ତୃପକ୍ଷଙ୍କ ୬୪୮.୮୨ କୋଟି ଟଙ୍କାର ଋଣ ସହାୟତାରେ ୩ଗୋଟି ବୃହତ୍ ସେଚ ଯୋଜନା ଯଥା ଅପର କୋଲାବ (ଜୟପୁର ମୁଖ୍ୟ କେନାଲ, ୧୪ କି.ମି.ରୁ ୪୨ କି.ମି.) ଅପର ଇନ୍ଦ୍ରାବତୀ ବାମପାର୍ଶ୍ୱ କେନାଲ (୧୫. କି.ମି. ରୁ ୫୨ କି.ମି.) ଓ ରେଙ୍ଗାଲି ବାମପାର୍ଶ୍ୱ କେନାଲ (୩୦ କି.ମି. ରୁ ୭୧.୩ କି.ମି.) କାର୍ଯ୍ୟ କରାଯାଇ ୯୨,୯୫୦ ହେକ୍ଟର ଜମିକୁ ସେଚକ୍ଷମ କରାଯିବାର ଲକ୍ଷ୍ୟ ରଖାଯାଇଛି । ଅପରକୋଲାବ ଯୋଜନାର କାର୍ଯ୍ୟ ଏହାମଧ୍ୟରେ ଶେଷ ହୋଇଯାଇଛି ଏବଂ ଏହାଦ୍ୱାରା ୧୫,୨୦୮ ହେକ୍ଟର ଜମିପାଇଁ ସେଚ ସାମର୍ଥ୍ୟ ସୃଷ୍ଟି ହୋଇପାରିଛି । ଅନ୍ୟ ଦୁଇଗୋଟି ଯୋଜନାକୁ ଯଥା ସମୟରେ ଶେଷ କରାଯାଇ ୭୧,୯୫୦ ହେକ୍ଟର ଜମିପାଇଁ ସେଚ ସାମର୍ଥ୍ୟ ସୃଷ୍ଟି ପାଇଁ ପଦକ୍ଷେପ ଗ୍ରହଣ କରାଯାଉଛି ।

ଭାରତ ସରକାରଙ୍କଠାରୁ ୫୦ ଭାଗ ଋଣ ଓ ରାଜ୍ୟ ସରକାରଙ୍କର ଅବଶିଷ୍ଟ ୫୦ଭାଗ ଆର୍ଥିକ ସମ୍ବଳକୁ ନେଇ ତ୍ୱରିତ ଜଳସେଚନ ସୁବିଧା କାର୍ଯ୍ୟକ୍ରମ .(A.I.B.P) ଗ୍ରହଣ କରାଯାଇଛି । ଏହା ଅଧୀନରେ ୫ଗୋଟି ଜଳସେଚନ ଯୋଜନା ଯଥା: ରେଙ୍ଗାଲି ଦକ୍ଷିଣ ପାର୍ଶ୍ୱ କେନାଲ (୦ କି.ମି. ରୁ ୭୯ କି.ମି.) ଅପର ଇନ୍ଦ୍ରାବତୀ ଦକ୍ଷିଣ ପାର୍ଶ୍ୱ କେନାଲ (୦.କି.ମରୁ ୮୪ କି.ମି.), ସୁବର୍ଣ୍ଣରେଖା ଯୋଜନା (ମୁଖ୍ୟ କେନାଲ, ବେତନଟୀ ଶାଖା କେନାଲ ଓ ଜମ୍ବୀରା କେନାଲ), ଆନନ୍ଦପୁର ବ୍ୟାରେଜ୍ ସଂପ୍ରସାରଣ କାର୍ଯ୍ୟ ଏବଂ ଅପର କୋଲାବ ଯୋଜନା (ଜୟପୁର ମୁଖ୍ୟକେନାଲ୪୧.୭୭ କି.ମି.ରୁ ୫୮.୮୩ କି.ମି) କାର୍ଯ୍ୟକାରୀ କରାଯାଉଛି । ଏହି ଯୋଜନା ଅଧୀନରେ ୧୯୯୮ ଜୁନ୍ ସୁଦ୍ଧା ୧୬,୩୨୦ ହେକ୍ଟର ଜମିପାଇଁ ସେଚ ସୁବିଧା ସୃଷ୍ଟି କରାଯାଇଛି ।

୧୯୯୫-୯୬ ଆର୍ଥିକ ବର୍ଷଠାରୁ ରାଜ୍ୟସରକାର ନାବାର୍ଡ଼ ସଂସ୍ଥା ପକ୍ଷରୁ ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି (R.I.D.F) ମାଧ୍ୟମରେ ଏ ପର୍ଯ୍ୟନ୍ତ ୨୭ଗୋଟି ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ନିର୍ମାଣ ପାଇଁ ୨୨୨.୭୮୫୩ କୋଟି ଟଙ୍କା ଋଣ ମଞ୍ଜୁର ପାଇଛନ୍ତି । ଏଥିପାଇଁ ରାଜ୍ୟ ସରକାର ୬୭.୬୫୫୨ କୋଟି ଟଙ୍କା ଯୋଗାଇ ଦେବେ । ଏ ସମସ୍ତ ପ୍ରକଳ୍ପ ନିର୍ମାଣ ସରିଲେ ମୋଟ ୫୭,୭୩୪ ହେକ୍ଟର ଜମିରେ ସେଚ ସୁବିଧା ଯୋଗାଇ ଦିଆଯାଇପାରିବ । ସେହିପରି ୬୩ ଗୋଟି କ୍ଷୁଦ୍ରଜଳସେଚନ ପ୍ରକଳ୍ପ ନିର୍ମାଣ ପାଇଁ ନାବାର୍ଡ଼ କର୍ତ୍ତୃପକ୍ଷ ୯୩.୮୫୮୮ କୋଟି ଟଙ୍କା ଋଣ ମଞ୍ଜୁର କରିଛନ୍ତି । ଏଥିପାଇଁ ରାଜ୍ୟ ସରକାର ୧୯,୨୬୮୩ କୋଟି ଟଙ୍କା ଯୋଗାଇ ଦେବେ । ଏହି ପ୍ରକଳ୍ପଗୁଡ଼ିକ ନିର୍ମାଣ ସରିଲେ ୩୨,୩୮୦ ହେକ୍ଟର ଜମିକୁ ସେଚ ସୁବିଧା ଯୋଗାଇ ଦିଆଯାଇପାରିବେ ।

କେ.ଏଫ୍.ଡବ୍ଲ୍ୟୁ. (ଜର୍ମାନୀ) ସଂସ୍ଥାଙ୍କ ୧୦୦ କୋଟି ଟଙ୍କା ଋଣ ସହାୟତାରେ ଅବିଭକ୍ତ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ପାଇଁ ୭୬୦ ଗୋଟି ନୂତନ ଉଠାଜଳସେଚନ ପ୍ରକଳ୍ପ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି । ରାଜ୍ୟ ସରକାର ଏଥିପାଇଁ ୧୪କୋଟି ଟଙ୍କା ଯୋଗାଇ ଦେବେ । ଏପର୍ଯ୍ୟନ୍ତ ୬୫.୮୫ କୋଟି ଟଙ୍କା ଖର୍ଚ୍ଚ କରାଯାଇ ୪୨୯ ଗୋଟି ପ୍ରକଳ୍ପ ନିର୍ମାଣ କରାଯାଇ ୧୦,୬୭୭ ହେକ୍ଟର ଜମିପାଇଁ ସେଚ ସୁବିଧା ସୃଷ୍ଟି କରାଯାଇଛି । ଅବଶିଷ୍ଟ ୩୩୧ ଗୋଟି ଉଠାଜଳସେଚନ ପ୍ରକଳ୍ପ ୨୦୦୦ ମସିହା ମାର୍ଚ୍ଚ ସୁଦ୍ଧା ଶେଷ କରାଯାଇ ୧୭,୮୭୩ ହେକ୍ଟର ଜମି ପାଇଁ ସେଚ ସାମର୍ଥ୍ୟ ସୃଷ୍ଟି କରାଯିବ ।

❑❑❑

# ପର୍ଯ୍ୟଟନ ଓ ସଂସ୍କୃତି ବିଭାଗର ପ୍ରଗତି

ଉନ୍ନତମାନର ସେବା ଓ ସୁଯୋଗ ଯୋଗାଇ ଦେଇ ରାଜ୍ୟକୁ ପର୍ଯ୍ୟଟକଙ୍କ ଆଗମନ ସଂଖ୍ୟା ବୃଦ୍ଧି କରିବା ନିମନ୍ତେ ମିଳିତ ପଦକ୍ଷେପ ନିଆଯାଇଅଛି । ଓଡ଼ିଶା ପର୍ଯ୍ୟଟନ ସମ୍ପର୍କୀୟ ସୂଚନା ବର୍ତ୍ତମାନ ଇଣ୍ଟରନେଟ୍ ମାଧ୍ୟମରେ ଉପଲବ୍ଧ ହୋଇପାରୁଛି । ଓଡ଼ିଶାର ପର୍ଯ୍ୟଟନ ବିଭବ ଓ ପୁଞ୍ଜି ବିନିଯୋଗ ସମ୍ପର୍କୀୟ ଦୁଇଗୋଟି ସି.ଡି. ରୋମ୍ ପ୍ରସ୍ତୁତ ହୋଇଅଛି । ଓଡ଼ିଶା ପର୍ଯ୍ୟଟନ ବର୍ତ୍ତମାନ ଭାରତ ମହାସାଗର ପର୍ଯ୍ୟଟନ ସଂସ୍ଥାର ଜଣେ ସଭ୍ୟ ହୋଇଅଛି । ୧୯୯୯-୨୦୦୦ ଆର୍ଥିକ ବର୍ଷରେ କୋଣାର୍କରେ ଶବ୍ଦାଲୋକ ବ୍ୟବସ୍ଥାର ପୂର୍ଣ୍ଣାଙ୍ଗିକରଣ ତଥା ଭୁବନେଶ୍ୱରରେ ଦକ୍ଷିଣ-ପୂର୍ବ ଏସିଆ ଓ ଇଉରୋପୀୟ ରାଷ୍ଟ୍ରମାନଙ୍କର ଚାଟାର୍ଡ ଫ୍ଲାଇଟ ଅବତରଣ କରିବାର ପ୍ରସ୍ତାବ ରହିଅଛି ।

୧୯୯୮ ମସିହାରେ ଉଚ୍ଚନ୍ୟାୟାଳୟ, ଓଡ଼ିଶାଙ୍କ ସହାୟତାରେ ପୁରୀର ନ୍ୟାୟାଳୟ ମାଲଖାନାରୁ ମୂଲ୍ୟବାନ କଳାତ୍ମକ ଜିନିଷମାନ ସଂଗ୍ରହ କରାଯାଇଛି ଓ ରାଜ୍ୟ ସଂଗ୍ରହାଳୟରେ ପ୍ରଦର୍ଶନ ପାଇଁ ଏସବୁ ରଖାଯାଇଛି ।

ସାମାଜିକ ସୁରକ୍ଷା ଯୋଗାଇ ଦେବା ନିମିତ୍ତ ଅତିରିକ୍ତ ଏକଶତ ବୃଦ୍ଧ କଳାକାରଙ୍କୁ ଭତ୍ତା ନେବା ନିମନ୍ତେ ମନୋନୟନ କରାଯାଉଛି । ବୁଦ୍ଧିଜୀବୀ ଓ ପାଠକମାନଙ୍କ ପାଇଁ ପାଠାଗାର ସୁବିଧା ଯୋଗାଇ ଦେବା ନିମନ୍ତେ ସରକାର ଓଡ଼ିଶା ଜନସାଧାରଣଙ୍କ ପାଠାଗାର ଆଇନ୍ ପ୍ରଣୟନ କରୁଛନ୍ତି ।

# ବିଜ୍ଞାନ ଓ ବୈଷୟିକ ବିଭାଗର ସଫଳତା

ବିଭିନ୍ନ ପ୍ରକାର ଅଣପାରମ୍ପରିକ ଶକ୍ତି ଉପର ଉନ୍ନତି ଓ ପ୍ରସାରଣ କରିବା ପାଇଁ ଓଡ଼ିଶା ଅକ୍ଷୟଶକ୍ତି ବିକାଶ ସଂସ୍ଥା (ଓରେଡ଼ା) ରାଜ୍ୟ ସରକାରଙ୍କ ବିଜ୍ଞାନ ଓ ବୈଷୟିକ ବିଭାଗ ଅଧୀନରେ ୧୯୮୩-୮୪ ମସିହା ଆର୍ଥିକ ବର୍ଷରେ ଗଠିତ ହୋଇଅଛି । ଏହି ସଂସ୍ଥାର ପ୍ରବର୍ତ୍ତିତ କାର୍ଯ୍ୟକ୍ରମଗୁଡ଼ିକ ମୁଖ୍ୟତଃ କେନ୍ଦ୍ରୀୟ ଅନୁଦାନରେ ପରିଚାଳିତ ହୋଇଥାଏ ।ଏହି ସଂସ୍ଥାର ପରିଚାଳନାରେ ବ୍ୟବହୃତ ଆବଶ୍ୟକ ଅର୍ଥ ରାଜ୍ୟ ସରକାର ମୁଖ୍ୟତଃ ଅନୁଦାନ ହିସାବରେ ଉକ୍ତ ସଂସ୍ଥାକୁ ଯୋଗାଇ ଦେଇଥାଆନ୍ତି । ଏହି ସଂସ୍ଥାର ମୁଖ୍ୟ କାର୍ଯ୍ୟକ୍ରମମାନ ନିମ୍ନରେ ପ୍ରଦତ୍ତ ହେଲା:—

## ଜୈବିକ ବାଷ୍ପବିକାଶ ନିମିତ୍ତ ଜାତୀୟ ପରିଯୋଜନା

ଏହି ଜନପ୍ରିୟ ଅଣପାରମ୍ପରିକ ଶକ୍ତି କାର୍ଯ୍ୟକ୍ରମ ରାଜ୍ୟରେ ବିଗତ ୧୪ବର୍ଷ ଧରି କାର୍ଯ୍ୟକାରୀ ହୋଇଆସୁଅଛି । ଜୈବିକ ବାଷ୍ପ ପ୍ଲାଣ୍ଟ ରୋଷେଇ ନିମନ୍ତେ ଇନ୍ଧନ ଯୋଗାଇଦେବା ସଂଗେ ସଂଗେ ଆଲୋକ ମଧ୍ୟ ଯୋଗାଇଥାଏ । ଭାରତ ସରକାର ରାଜ୍ୟରେ ଉକ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ରିହାତି, ଟର୍ଣ୍ଣକି ଓ ପ୍ରଶିକ୍ଷଣ ସୁବିଧା ଆଦି ଯୋଗାଇଥାଆନ୍ତି । ଏହା ଭାରତ ସରକାରଙ୍କ ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଅଟେ । କାର୍ଯ୍ୟକ୍ରମଟି ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ଆତ୍ମନିଯୁକ୍ତ କର୍ମୀ ଏବଂ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ କାର୍ଯ୍ୟକାରୀ ହେଉଅଛି । ୧୯୯୪-୯୫ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମର ସାମୂହିକ ସଫଳତା ନିମନ୍ତେ ଏହି ରାଜ୍ୟକୁ ଗତ ୩.୫.୧୯୯୭ ତାରିଖରେ ଏବଂ ୧୯୯୫-୯୬ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମର ଉତ୍ତମ ସଫଳତା ନିମନ୍ତେ ଗତ ୫.୨.୧୯୯୮ ତାରିଖରେ ଦୁଇଗୋଟି ସ୍ୱର୍ଣ୍ଣ ସିଲଡ୍ ପୃଥକ୍ ପୃଥକ୍ ଭାବେ ପ୍ରଦାନ କରାଯାଇଅଛି । ୧୯୯୮-୯୯ ମସିହା ଆର୍ଥିକ ବର୍ଷରେ ରାଜ୍ୟରେ ସ୍ଥିରୀକୃତ ୬୦୦୦ ଜୈବିକ ବାଷ୍ପ ପ୍ଲାଣ୍ଟ ନିର୍ମାଣ ଲକ୍ଷ୍ୟ ଥିବା ସ୍ଥଳେ ନଭେମ୍ବର ମାସ ଶେଷ ସୁଦ୍ଧା ୨୭୬୦ ଗୋଟି ଜୈବିକ ବାଷ୍ପ ପ୍ଲାଣ୍ଟ ନିର୍ମାଣ କରାଯାଇଛି ।

## ଗୋଷ୍ଠୀଗତ/ଆନୁଷ୍ଠାନିକ ଜୈବିକ ବାଷ୍ପ ପ୍ଲାଣ୍ଟ

ଉଚ୍ଚ କ୍ଷମତା ସମ୍ପନ୍ନ ଗୋଷ୍ଠୀ/ ଅନୁଷ୍ଠାନ ଶ୍ରେଣୀୟ ଜୈବିକ ବାଷ୍ପ ପ୍ଲାଣ୍ଟ ରୋଷେଇ ପାଇଁ ଜାଳେଣୀ ବାଷ୍ପ ଯୋଗାଇବା ସଂଗେ ସଂଗେ ଜଳସେଚନ ପମ୍ପ ଚଳାଇବା ପାଇଁ ବିଦ୍ୟୁତ ଶକ୍ତି ଏବଂ ଆଲୋକ ଯୋଗାଇଥାଏ । ୧୯୯୭-୯୮ ଆର୍ଥିକ ବର୍ଷ ଶେଷ ସୁଦ୍ଧା ୨୩ଟି ଏହି ପ୍ରକାରର ପ୍ଲାଣ୍ଟ ରାଜ୍ୟରେ ସ୍ଥାପନ କରାଯାଇଅଛି । ଏତଦ୍ ବ୍ୟତୀତ ୫ଟି ନାଇଟ୍ ସଏଲ୍ ବାୟୋଗ୍ୟାସ ପ୍ଲାଣ୍ଟ ନିର୍ମାଣ କରାଯାଇଅଛି ।

## ଜାତୀୟ ଉନ୍ନତଚୁଲା କାର୍ଯ୍ୟକ୍ରମ

୧୯୮୩-୮୪ ଆର୍ଥିକ ବର୍ଷଠାରୁ ଏହି ପ୍ରକଳ୍ପ ଜରିଆରେ ଧୂମବିହୀନ ଓ ଇନ୍ଧନ ମିତବ୍ୟୟୀ ଉଭୟ ସ୍ଥାୟୀ ଏବଂ ଉଠାଚୁଲା ରାଜ୍ୟରେ ଯୋଗାଇ ଦିଆଯାଉଅଛି, ଯାହାଫଳରେ ରାଜ୍ୟରେ ଜାଳେଣୀ କାଠ ସଞ୍ଚିତ ହେବା ସଂଗେ ସଂଗେ ଜଙ୍ଗଲ ସମ୍ପଦର ସୁରକ୍ଷା ହୋଇପାରୁଛି । ଏହି ପ୍ରକଳ୍ପଟି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଏବଂ ସର୍ବନିମ୍ନ ଚାହିଦା କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ । ଭାରତ ସରକାର ଏବଂ ରାଜ୍ୟସରକାର ଏହାର କାର୍ଯ୍ୟକାରିତା ପାଇଁ ଅର୍ଥ ଯୋଗାଇ ଦେଇଆସୁଛନ୍ତି । ଏହି ପ୍ରକଳ୍ପଟି ଜିଲ୍ଲାସ୍ତରରେ ଗ୍ରାମ୍ୟ ଉନ୍ନୟନ ସଂସ୍ଥା ମାଧ୍ୟମରେ ଏବଂ ବ୍ଲକ ସ୍ତରରେ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏବଂ ଆତ୍ମନିଯୁକ୍ତ କର୍ମୀଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଅଛି । ୧୯୯୮-୯୯ ମସିହା ଆର୍ଥିକ ବର୍ଷରେ ରାଜ୍ୟରେ ସ୍ଥିରୀକୃତ ୧,୦୦,୦୦୦ ଉନ୍ନତ ଚୁଲ୍ଲା ନିର୍ମାଣ ନିମନ୍ତେ ଲକ୍ଷ୍ୟ ଥିବା ସ୍ଥଳେ ନଭେମ୍ବର ମାସ ଶେଷ ସୁଦ୍ଧା ୫୯,୭୩୦ଟି ସ୍ଥାୟୀ ଚୁଲା ଏବଂ ୨୦୫ଟି ଉଠାଚୁଲାର ପ୍ରଚଳନ କରାଯାଇଅଛି । ୧୯୯୫-୯୬ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମର ଉଲ୍ଲେଖନୀୟ ସଫଳତା ନିମନ୍ତେ ଏହି ରାଜ୍ୟକୁ ଗତ ୫.୨.୧୯୯୮ ତାରିଖରେ ଏକ ସ୍ୱର୍ଣ୍ଣ ସିଲଡ୍ ପ୍ରଦାନ କରାଯାଇଅଛି ।

## ସୌର ଫଟୋ ଭୋଲଟାଇକ୍ ଆଲୋକକରଣ ବ୍ୟବସ୍ଥା

ରାଜ୍ୟରେ ଯେଉଁସବୁ ଦୁର୍ଗମସ୍ଥାନକୁ ପାରମ୍ପରିକ ଆଲୋକ ଦିଆଯାଇ ପାରିନଥାଏ, ସେ ସବୁ ସ୍ଥାନକୁ ଉକ୍ତ ସୌର ଫଟୋ ଭୋଲ୍‌ଟାଇକ୍ ଆଲୋକ ମାଧ୍ୟମରେ ଆଲୋକ ଯୋଗାଇ ଦିଆଯାଇଥାଏ । ଉକ୍ତ ପ୍ରକଳ୍ପ ମାଧ୍ୟମରେ (୧) ଗ୍ରାମ୍ୟ ରାସ୍ତା ଆଲୋକୀକରଣ (୨) ପରିବାର ଉପଯୋଗୀ ସୌର ଆଲୋକ ପ୍ରଦାନ (୩) ସୌରଶକ୍ତି ଚାଳିତ ଟେଲିଭିଜନ (୪) ସୌରଲଣ୍ଠନ ଇତ୍ୟାଦି ଯୋଗାଇ ଦେବା ସମ୍ଭବପର ହୋଇଥାଏ । ୧୯୯୮-୯୯ ଆର୍ଥିକ ବର୍ଷର ନଭେମ୍ବର ମାସ ଶେଷସୁଦ୍ଧା ୨୯୦ଟି ସୌର ଲଣ୍ଠନ, ୯୦ଟି ସୌର ଗୃହବତୀ ଏବଂ ୩୬ଟି ସୌର ରାସ୍ତାବତୀ ବିକ୍ରୟ ତଥା ସ୍ଥାପନ କରାଯାଇଅଛି । ଏତଦ୍‌ବ୍ୟତୀତ ଉକ୍ତ ସଂସ୍ଥା ତରଫରୁ ରାଜ୍ୟସରକାରଙ୍କ ଗ୍ରାମ୍ୟ ବିଦ୍ୟୁତକରଣ କାର୍ଯ୍ୟକ୍ରମ ମାଧ୍ୟମରେ ୧୯୯୮-୯୯ ଆର୍ଥିକ ବର୍ଷରେ ୨୦୦୦ଟି ଗ୍ରାମକୁ ଅଣପାରମ୍ପରିକ ଶକ୍ତି ମାଧ୍ୟମରେ ବିଦ୍ୟୁତକରଣ ନିମନ୍ତେ କାର୍ଯ୍ୟାରମ୍ଭ କରାଯାଇଅଛି ।

## ସୌର ତାପଜ ସଂପ୍ରସାରଣ କାର୍ଯ୍ୟକ୍ରମ

ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଶକ୍ତି ସଞ୍ଚୟ କରୁଥିବା ଯନ୍ତ୍ର ଯଥାः– ସୌରଶକ୍ତି ଦ୍ୱାରା ପାଣି ଗରମ ପଦ୍ଧତି, ସୌର ପରିଶ୍ରବଣ ପଦ୍ଧତି ଏବଂ ସୌର ରନ୍ଧନ ଚୁଲା ଇତ୍ୟାଦି ରିହାତି ଦରରେ ଯୋଗାଇ ଦିଆଯାଇଅଛି । ଯାହାଦ୍ୱାରାକି ପାରମ୍ପରିକ ଶକ୍ତିର ସଞ୍ଚୟ ହୋଇପାରୁଛି । ୧୯୯୭-୯୮ ଆର୍ଥିକ ବର୍ଷ ଶେଷ ସୁଦ୍ଧା ରାଜ୍ୟରେ ହୋଇପାରୁଛି । ୧୯୯୭-୯୮ ଆର୍ଥିକ ବର୍ଷ ଶେଷ ସୁଦ୍ଧା ରାଜ୍ୟରେ ଓରେଡ଼ା ଦ୍ୱାରା ୧,୧୪,୧୩୦ ଏଲ୍.ପି.ଡି. କ୍ଷମତା ସମ୍ପନ୍ନ ପାଣି ଗରମ ଯନ୍ତ୍ର, ୧୧୪୦ ଏଲ୍.ପି.ଡି. କ୍ଷମତା ସମ୍ପନ୍ନ ପରିଶ୍ରବଣଯନ୍ତ୍ର ଏବଂ ୨୭୯୯ଟି ସୌରଚୁଲ୍ଲାର ପ୍ରଚଳନ କରାଯାଇଅଛି । ୧୯୯୮-୯୯ ଆର୍ଥିକ ବର୍ଷର ନଭେମ୍ବର ମାସ ଶେଷସୁଦ୍ଧା ୧୦୦୦ ଏଲ୍.ପି.ଡି. କ୍ଷମତା ସମ୍ପନ୍ନ ପାଣିଗରମ ଯନ୍ତ୍ର ବସାଯାଇଅଛି । ଏତଦ୍‌ବ୍ୟତୀତ ରାଜଧାନୀ ଭୁବନେଶ୍ୱରଠାରେ ଗୋଟିଏ ଆଦିତ୍ୟ ସୌର ଦୋକାନ ଖୋଲିବା ନିମନ୍ତେ ଯୋଜନା କରାଯାଇଅଛି । ରାଜ୍ୟର ୩୦ଟି ଜିଲ୍ଲାର ସଦର ମହକୁମାଠାରେ ୩୦ଟି ବିକ୍ରୟ ତଥା ମରାମତି କେନ୍ଦ୍ର ଖୋଲାଯିବାର ପ୍ରସ୍ତାବ ରଖାଯାଇଛି ।

## ଗ୍ରାମୋପଯୋଗୀ ବୈଷୟିକ ବିଦ୍ୟା

ଗ୍ରାମୋପଯୋଗୀ ବୈଷୟିକ ବିଦ୍ୟା କ୍ଷେତ୍ରରେ କ୍ଷୁଦ୍ର, ଶସ୍ତା ଏବଂ ସୁବିଧାରେ ଗ୍ରହଣୀୟ ଯନ୍ତ୍ରପାତି ବ୍ୟବହାର ଦ୍ୱାରା ଗ୍ରାମବାସୀମାନଙ୍କର ଶ୍ରମ ଲାଘବ ସହିତ ଉତ୍ପାଦକତା ବୃଦ୍ଧି ପାଇଁ ଏହି କାର୍ଯ୍ୟକ୍ରମ ରହିଛି । ଏହି ପରିକଳ୍ପନା ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ସଂସ୍ଥା ଦ୍ୱାରା କାର୍ଯ୍ୟକାରୀ ହୋଇଛି ।

## ସମନ୍ୱିତ ଗ୍ରାମ୍ୟ ଶକ୍ତି ଯୋଜନା କାର୍ଯ୍ୟକ୍ରମ

ବିଗତ ୧୯୮୬-୮୭ ମସିହାଠାରୁ ସମନ୍ୱିତ ଗ୍ରାମ୍ୟ ଶକ୍ତି ଯୋଜନା ଓଡ଼ିଶାରେ କେତେକ ସ୍ଥିରୀକୃତ ବ୍ଲକରେ କାର୍ଯ୍ୟକାରୀ ହେଉଅଛି । ସ୍ଥିରୀକୃତ ବ୍ଲକର ଶକ୍ତି ଆବଶ୍ୟକତା ନିରୂପଣ କରିବା ଏବଂ ପାରମ୍ପରିକ ଓ ଅଣପାରମ୍ପରିକ ପଦ୍ଧତି ମାଧ୍ୟମରେ ଶକ୍ତିର ଚାହିଦା ପୂରଣ କରିବା ଏହି ପରିକଳ୍ପନାର ଆଭିମୁଖ୍ୟ । ୧୯୯୭-୯୮ ଆର୍ଥିକ ବର୍ଷର ଶେଷସୁଦ୍ଧା ୪୫ଟି ବ୍ଲକ ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ । ୧୯୯୮-୯୯ ଆର୍ଥିକବର୍ଷର ନଭେମ୍ବର ମାସ ଶେଷ ସୁଦ୍ଧା ୫୧୨ଟି ବାୟୋଗ୍ୟାସ ପ୍ଲାଣ୍ଟ, ୬ଟି ନାଇଟ୍ ସଏଲ୍ ପ୍ଲାଣ୍ଟ, ୧୮,୪୯୬ଟି ଉନ୍ନତ ଚୁଲା, ୩୨୯ଟି ସୌର ଗୃହବତୀ, ୬୩ଟି ସୌର ଲଣ୍ଠନ ଉକ୍ତ ସ୍ଥିରୀକୃତ ବ୍ଲକରେ କାର୍ଯ୍ୟକାରୀ କରାଯାଇଛି । ଉଭୟ ଭାରତସରକାର ଏବଂ ଓଡ଼ିଶା ସରକାର ଉକ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ଆବଶ୍ୟକ ଅର୍ଥ ବହନ କରିଥାଆନ୍ତି ।

## ଓଡ଼ିଶା ବିଜ୍ଞାନ ଏକାଡେମୀ ଦ୍ୱାରା କାର୍ଯ୍ୟକ୍ରମ

ରାଜ୍ୟର ବିଭିନ୍ନ ଅଞ୍ଚଳରେ ଅବସ୍ଥିତ ସ୍କୁଲ ଓ କଲେଜମାନଙ୍କରେ ବିଜ୍ଞାନ ପ୍ରଦର୍ଶନୀ, ବିଜ୍ଞାନ ଭିତ୍ତିକ ପ୍ରତିଯୋଗିତା ଏବଂ ବିଶିଷ୍ଟ ବୈଜ୍ଞାନିକମାନଙ୍କ ଦ୍ୱାରା ବକ୍ତୃତା ଆଦି କାର୍ଯ୍ୟକ୍ରମର ଆୟୋଜନ ।

ଅନ୍ଧବିଶ୍ୱାସ ଦୂରୀକରଣ ପାଇଁ ଅଲୌକିକ ଘଟଣାମାନଙ୍କର ବୈଜ୍ଞାନିକ ତତ୍ତ୍ୱ ଉପସ୍ଥାପନ ।

ଭାରତ ସରକାରଙ୍କ ବିଜ୍ଞାନ ଓ ବୈଷୟିକ ବିଭାଗ ଅଧୀନସ୍ଥ ରାଷ୍ଟ୍ରୀୟ ବିଜ୍ଞାନ ଓ ବୈଷୟିକ ସଂଚାର ପରିଷଦ (NCSTC) ର ସହଯୋଗରେ ସ୍କୁଲ ଓ କଲେଜମାନଙ୍କରେ ଜାତୀୟ ବିଜ୍ଞାନ ଦିବସ ପାଳନ, ଓଡ଼ିଶା ବିଜ୍ଞାନ କଂଗ୍ରେସ ଏବଂ ବିଜ୍ଞାନ କୁଇଜ୍ ପ୍ରତିଯୋଗିତା ଆଦି କାର୍ଯ୍ୟକ୍ରମର ଆୟୋଜନ ।

ବିଜ୍ଞାନର ପ୍ରଗତି ଓ ନୂତନ ତତ୍ତ୍ୱଗୁଡ଼ିକୁ ସରଳ ଓଡ଼ିଆ ଭାଷାରେ ଉପସ୍ଥାପନ କରିବା ପାଇଁ ଏକ ଉଚ୍ଚମାନର ଲୋକପ୍ରିୟ ବିଜ୍ଞାନ ପତ୍ରିକା ''ବିଜ୍ଞାନ ଦିଗନ୍ତ''ର ପ୍ରକାଶନ । ଦୃଷ୍ଟିହୀନମାନଙ୍କ ପାଇଁ ଓଡ଼ିଆ ବ୍ରେଲୀ ଭାଷାରେ ''ବିଜ୍ଞାନ ଦିଗନ୍ତ''ର ପ୍ରକାଶନ ।

ପରିବେଶ ପ୍ରତି ଜନସଚେତନତା ସୃଷ୍ଟି କରିବା ପାଇଁ ରାଜ୍ୟ ସରକାରଙ୍କର ପରିବେଶ ବିଭାଗ ସହାୟତାରେ ବକ୍ତୃତା ପ୍ରତିଯୋଗିତା ଏବଂ ମାନବ ଶକ୍ତି ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆଦିର ଆୟୋଜନ ।

ଓଡ଼ିଆ ଭାଷାରେ ଉପାଦେୟ ବିଜ୍ଞାନ ରଚନାକୁ ପ୍ରୋତ୍ସାହନ ଦେବାପାଇଁ ବିଜ୍ଞାନ ଏକାଡେମୀ ଦ୍ୱାରା ରାଜ୍ୟର ବିଭିନ୍ନ ଅଞ୍ଚଳରେ ବିଜ୍ଞାନ ଲେଖକ ସମ୍ମିଳନୀ ଓ କର୍ମଶାଳାର ଆୟୋଜନ ।

## ପଠାଣୀସାମନ୍ତ ପ୍ଲାନେଟୋରିୟମ ଦ୍ୱାରା ଆୟୋଜିତ କାର୍ଯ୍ୟକ୍ରମ

ଛାତ୍ରଛାତ୍ରୀ ଏବଂ ଜନସାଧାରଣଙ୍କ ନିମନ୍ତେ ଜ୍ୟୋତିର୍ବିଜ୍ଞାନ ଓ ମହାକାଶ ବିଜ୍ଞାନ ସମ୍ବନ୍ଧୀୟ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇ ପ୍ରଦର୍ଶନର ବ୍ୟବସ୍ଥା ।

ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ କୁଇଜ୍, ବକ୍ତୃତା ଓ ଅଙ୍କନ ପ୍ରତିଯୋଗିତାର ଆୟୋଜନ ।

ଭାରତ ସରକାରଙ୍କ ସହାୟତାରେ ସ୍କୁଲ ଛାତ୍ରଛାତ୍ରୀମାନଙ୍କ ପାଇଁ ଦୂରବୀକ୍ଷଣ ଯନ୍ତ୍ର ପ୍ରସ୍ତୁତି କାର୍ଯ୍ୟକ୍ରମ ପରିଚାଳନା ।

''ଛାୟାପଥ'' ନାମକ ଏକ ପ୍ରାଚୀର ପତ୍ର (Wall Magazine) ପ୍ରକାଶନ ଏବଂ ସ୍କୁଲ ପିଲାମାନଙ୍କୁ ତାହା ମାଗଣାରେ ଯୋଗାଣ ।

ସୂର୍ଯ୍ୟପରାଗ ଓ ଲଞ୍ଜାତାରାମାନଙ୍କର ଆବିର୍ଭାବ ଆଦି ସାମୟିକ ଘଟଣାବଳୀ ପର୍ଯ୍ୟବେକ୍ଷଣ ଏବଂ ସେଗୁଡ଼ିକର ବୈଜ୍ଞାନିକ ତଥ୍ୟ ଅନୁଶୀଳନ ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତି ।

## ବିଜ୍ଞାନ କେନ୍ଦ୍ର ସ୍ଥାପନ କାର୍ଯ୍ୟକ୍ରମ

ବିଜ୍ଞାନ ପ୍ରତି ଜନସଚେତନତା ସୃଷ୍ଟି ଓ ବିଜ୍ଞାନର ବହୁଳ ପ୍ରଚାର ନିମନ୍ତେ ଭୁବନେଶ୍ୱର ଓ ଢେଙ୍କାନାଳ ଠାରେ ଦୁଇଟି ବିଜ୍ଞାନ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ବିଜ୍ଞାନ କେନ୍ଦ୍ର ପ୍ରତିଷ୍ଠା କାର୍ଯ୍ୟକ୍ରମର ଅଂଶସ୍ୱରୂପ କପିଳାସଠାରେ ଏକ ବିଜ୍ଞାନ ଉଦ୍ୟାନ (Science Park) ପ୍ରତିଷ୍ଠା କରାଯାଇଛି ।

## ଓଡ଼ିଶା ଅକ୍ଷୟଶକ୍ତି ବିକାଶ ସଂସ୍ଥା ଦ୍ୱାରା ଆୟୋଜିତ କାର୍ଯ୍ୟକ୍ରମ

ଅଣପାରମ୍ପରିକ ଶକ୍ତି ଉତ୍ସ ଗୁଡ଼ିକର ବ୍ୟବହାର ଏବଂ ଉପାଦେୟତା ସମ୍ବନ୍ଧରେ ଜନସାଧାରଣମାନଙ୍କୁ ଅବଗତ କରାଇବା ନିମନ୍ତେ ଓଡ଼ିଶା ଅକ୍ଷୟଶକ୍ତି ବିକାଶ ସଂସ୍ଥା ଦ୍ୱାରା ପ୍ରଦର୍ଶନୀ ଓ କର୍ମଶାଳା ଆଦିର ଆୟୋଜନ ।

ଏତଦ୍‌ବ୍ୟତୀତ ରାଜ୍ୟରେ ବିଜ୍ଞାନକୁ ଲୋକାଭିମୁଖୀ କରାଇବା ପାଇଁ ରାଜ୍ୟ ସରକାରଙ୍କର ସ୍କୁଲ ଏବଂ ଗଣଶିକ୍ଷା ବିଭାଗ ରାଜ୍ୟ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଓ ଗବେଷଣା ପ୍ରତିଷ୍ଠାନ ପରିଷଦ ଜରିଆରେ ବ୍ଲକ, ମଣ୍ଡଳ ଓ ରାଜ୍ୟସ୍ତରୀୟ ବିଜ୍ଞାନମେଳା ପ୍ରତି ବର୍ଷ ଆୟୋଜନ କରୁଛନ୍ତି । ଛାତ୍ରଛାତ୍ରୀ, ଅଭିଭାବକ ଓ ଜନସାଧାରଣଙ୍କ ମନରେ ବିଜ୍ଞାନ ପ୍ରତି ଆଗ୍ରହ ଓ ସଚେତନତା ସୃଷ୍ଟି କରିବା ଏହି ମେଳାର ଆଭିମୁଖ୍ୟ ।

## ରାଜ୍ୟରେ କ୍ରୀଡ଼ା କ୍ଷେତ୍ରରେ ପ୍ରଗତି

ଗ୍ରାମାଞ୍ଚଳରେ ଖେଳପଡ଼ିଆର ଉନ୍ନତିକରଣ କରାଯାଉଛି ।

ରାଜ୍ୟରେ କ୍ରୀଡ଼ା ଓ କସରତର ଉନ୍ନତି ତଥା ପ୍ରଚାର ଓ ପ୍ରସାର ନିମନ୍ତେ ଗ୍ରାମାଞ୍ଚଳରେ ଖେଳପଡ଼ିଆର ଉନ୍ନତିକରଣ କରାଯାଉଛି । ଭୁବନେଶ୍ୱର ଏବଂ ଫୁଲବାଣୀଠାରେ ଆନ୍ତଃ କ୍ରୀଡ଼ାଙ୍ଗନ ନିର୍ମାଣ ସମ୍ପୂର୍ଣ୍ଣ

କଳିଙ୍ଗ ଷ୍ଟାଡିୟମ ତା ୧.୪.୯୮ ରିଖରେ ଉନ୍ମୋଚନ କରାଯାଇଛି ।

ହୋଇଯାଇଛି ।

କ୍ରୀଡାବିତ୍‌ମାନଙ୍କୁ କ୍ରୀଡ଼ା ପ୍ରୋତ୍ସାହନ ଏବଂ କ୍ରୀଡ଼ା ପେନ୍‌ସନ୍ ଦିଆଯାଉଅଛି ।

ଜାତୀୟ ଯୁବ ଏବଂ ଦୁଃସାହସିକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ

ରାଜ୍ୟରେ ୩ଗୋଟି ଯୁବହଷ୍ଟେଲ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ।

କରିବା ପାଇଁ ରାଜ୍ୟର ଯୁବକ ଓ ଯୁବତୀମାନଙ୍କୁ ପ୍ରୋତ୍ସାହନ ଦିଆଯାଉଛି ।

## ସମବାୟ ବିଭାଗର ଅଗ୍ରଗତି

ପ୍ରାଥମିକ କୃଷିଋଣ ସମବାୟ ସମିତି ଓ ବୃହଦାକାର ବହୁମୁଖୀ ସମବାୟ ସମିତି ରାଜ୍ୟରେ କୃଷିଋଣ ବିତରଣରେ ୬୫% ରୁ ଅଧିକ ବ୍ୟାଙ୍କମାନଙ୍କ ଜରିଆରେ ବଣ୍ଟନ କରିଥାନ୍ତି । ଗତ ୧୯୯୭ ମସିହା ଡିସେମ୍ବରର ଋଣ ବିତରଣ ୧୫୧ କୋଟି ଟଙ୍କା ତୁଳନାରେ ଏବର୍ଷ ଡିସେମ୍ବର ୩୧.୧୨.୯୮ ସୁଦ୍ଧା ୨୪୧ କୋଟି ଟଙ୍କା ବିତରଣ କରି ସାରିଛନ୍ତି । ଏବର୍ଷ ସମବାୟ ସଂସ୍ଥା ୩୦୦ କୋଟି ଟଙ୍କାରୁ ଅଧିକ ଋଣ ବଣ୍ଟନ ପାଇଁ ଆଶା ରଖିଛନ୍ତି । ଚାଷ କ୍ଷେତ୍ରରେ ସାର ଏକ ସବୁଠାରୁ ଦରକାରୀ ପଦାର୍ଥ ହୋଇଥିବାରୁ ବାଣିଜ୍ୟିକ ମହାସଂଘ, ଆଞ୍ଚଳିକ ବାଣିଜ୍ୟ ସମବାୟ ସମିତି ଓ ପ୍ରାଥମିକ କୃଷିଋଣ ସମବାୟ ସମିତିର ମୂଳ ବିକ୍ରୟ କେନ୍ଦ୍ରରେ ବଣ୍ଟନ କରାଯାଏ । ଗତ ୧୯୯୭ର ଖରିଫର ବଣ୍ଟନ ୧,୨୭,୫୦୦ ମେଟ୍ରିକ୍ ଟନ୍ ତୁଳନାରେ ଏବର୍ଷର ଖରିଫ (୧୯୯୮) ୧,୫୩,୦୦୦ ମେଟ୍ରିକ ଟନ୍ ସାର ବଣ୍ଟନ କରିଅଛନ୍ତି ।

ଓଡ଼ିଶା ରାଜ୍ୟ ବେଳେ ବେଳେ ପ୍ରାକୃତିକ ବିପତ୍ତିର ସମ୍ମୁଖୀନ ହେଉଥିବାରୁ ଶସ୍ୟ ବୀମା ଯୋଜନା ଶସ୍ୟ କ୍ଷତିର ଏକ କ୍ଷତିପୂରଣ ରୂପେ ସାହାଯ୍ୟ କରୁଅଛି । ପ୍ରାକୃତିକ ବିପର୍ଯ୍ୟୟରେ କ୍ଷତି ଭୋଗିଥିବା ଚାଷୀମାନଙ୍କୁ ଖରିଫ ୯୮ରେ ୪୨.୬୩ କୋଟି ଟଙ୍କା ଓ ୧୯୯୬-୯୭ରେ ରବିର କ୍ଷତି ବାବଦକୁ ୧.୬୮ କୋଟି ଟଙ୍କା ବ୍ୟାପକ ଶସ୍ୟ ବୀମା ଯୋଜନା ଦ୍ୱାରା କ୍ଷତିପୂରଣ ଦିଆଯାଉଅଛି । ଖରିଫ ୧୯୯୭ ଓ ରବି ୧୯୯୭-୯୮ର କ୍ଷତି ବାବଦକୁ ଭାରତ ସରକାର ୫.୨୪ କୋଟି ଟଙ୍କା ମଞ୍ଜୁର କରିଅଛନ୍ତି ଏବଂ ଏହା ଅତିଶୀଘ୍ର ବଣ୍ଟନ ପାଇଁ ଭାରତ ସରକାରଙ୍କଠାରୁ ପାଣ୍ଠି ପାଇଲାପରେ ପଦକ୍ଷେପ ନିଆଯିବ ।

ସମବାୟ ବିଭାଗ ଅଧୀନରେ ଥିବା ସମବାୟ ସମିତି ଓ ଓଡ଼ିଶା ରାଜ୍ୟ ପଣ୍ୟାଗାର ନିଗମର ଗଚ୍ଛିତ କ୍ଷମତା (Storage Capacity) ଅତି ଦରକାରୀ ସଂସ୍ଥା ରୂପେ କାର୍ଯ୍ୟ କରୁଅଛନ୍ତି । ସମବାୟ ସମିତିମାନଙ୍କ ନିଜସ୍ୱ ୩୬୨୩ଟି ଗୋଦାମ ଅଛି ଯାହାର ୩୭୬ ମେଟ୍ରିକ ଟନ୍ ଓ ଓଡ଼ିଶା ରାଜ୍ୟ ପଣ୍ୟାଗାର ନିଗମର ୨.୩୫ ମେଟ୍ରିକ ଟନ୍ ଗଚ୍ଛିତ କ୍ଷମତା ଅଛି । ୧୯୯୭-୯୮ ବର୍ଷରେ ଏହି ସମବାୟ ସଂସ୍ଥାର ଗୋଦାମ ସମ୍ପୂର୍ଣ୍ଣ ବିନିଯୋଗ ହୋଇପାରିଛି ଓ ନଭେମ୍ବର ୯୮ ସୁଦ୍ଧା ୮୨% ବ୍ୟବସାୟ କରାଯାଇପାରିଛି ଓ ଆଶାକରାଯାଉଛି ଏବର୍ଷ ପୂର୍ଣ୍ଣମାତ୍ରାରେ ବ୍ୟବସାୟରେ ଆସିପାରିବ ।

# ନିର୍ମାଣ ବିଭାଗର ସଫଳତା

ଗତ ୧୯୯୫-୯୬, ୯୬-୯୭ ଓ ୯୭-୯୮ ମସିହା ମଧ୍ୟରେ ୮୦ଟି ସେତୁର ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇଛି ଏବଂ ଚଳିତ ୧୯୯୮-୯୯ ମସିହା ବର୍ତ୍ତମାନ ସୁଦ୍ଧା ୧୧ଟି ସେତୁର କାମ ଶେଷ କରାଯାଇଛି ।

୧୯୯୦ ମସିହାରେ ଗଞ୍ଜାମ ଜିଲ୍ଲାର ପ୍ରଳୟଂକରୀ ବନ୍ୟାରେ ଧୋଇ ହୋଇଯାଇଥିବା ୬ଟି ବୃହତ ସେତୁ ବିଶ୍ୱବ୍ୟାଙ୍କ ସହାୟତାରେ ନିର୍ମାଣ କରାଯାଇଛି ।

୫୫ଗୋଟି ସେତୁ ଓ ୫ଗୋଟି ରାସ୍ତା କାର୍ଯ୍ୟ ସମ୍ପୂର୍ଣ୍ଣ ପାଇଁ ରାଷ୍ଟ୍ରୀୟ କୃଷି ଓ ଗ୍ରାମ୍ୟ ବିକାଶ ବ୍ୟାଙ୍କରୁ ୧୫୪.୭୯ କୋଟି ଟଙ୍କା ଋଣ ସହାୟତା ମଞ୍ଜୁର କରାଯାଇଛି ଏବଂ ସେଥିମଧ୍ୟରୁ ୧୪ଗୋଟି ସେତୁ ଓ ଗୋଟିଏ ରାସ୍ତା କାର୍ଯ୍ୟ ଶେଷ କରାଯାଇଛି ।

ଏସିଆନ ଡେଭ୍‌ଲପ୍‌ମେଣ୍ଟ ବ୍ୟାଙ୍କ ସହାୟତାରେ ୨୧୭ କୋଟି ଟଙ୍କା ଅଟକଳରେ ୧୦ନମ୍ବର ରାଜ୍ୟ ରାଜପଥରେ ଥିବା ୧୬୩ କି.ମି. ଦୈର୍ଘ୍ୟ ବିଶିଷ୍ଟ ସମ୍ବଲପୁର- ରାଉରକେଲା ରାସ୍ତାର ପ୍ରଶସ୍ତିକରଣ ଓ ଦୃଢ଼ୀକରଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଛି ।

ଏହି ସମୟ ମଧ୍ୟରେ ୨୩୮ କି.ମି. ରାସ୍ତାର ମୁରମ ଓ ୧୯୩ କି.ମି. ରାସ୍ତାର ପିଚୁ କାର୍ଯ୍ୟ ସମ୍ପାଦିତ ହୋଇଛି ।

କେନ୍ଦ୍ରସରକାରଙ୍କ ଭୂପୃଷ୍ଠ ଓ ପରିବହନ ମନ୍ତ୍ରଣାଳୟ ଏବଂ ବିଶ୍ୱବ୍ୟାଙ୍କ ସହାୟତାରେ ଜାତୀୟ ରାଜପଥ-୫ର ବରମୁଣ୍ଡାଠାରୁ ଜଗତପୁର ପର୍ଯ୍ୟନ୍ତ ୩୨.୩ କି.ମି. ଅଂଶକୁ ୪ ଧାରିଆ ରାସ୍ତାରେ ପରିଣତ କରିବା ଏବଂ ତତ୍‌ସହିତ ୫ଗୋଟି ବୃହତ ସେତୁର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଉଛି ।

ଓ.ଇ.ସି.ଏଫ୍ (ଜାପାନ)ଙ୍କ ସହାୟତାରେ ଏହି ରାସ୍ତାର ଜଗତପୁର ଠାରୁ ଚଣ୍ଡିଖୋଲ ପର୍ଯ୍ୟନ୍ତ ୩୩.୨ କି.ମି. ଦୈର୍ଘ୍ୟ ଅଂଶକୁ ୪ ଧାରିଆ ରାସ୍ତାରେ ପରିଣତ କରିବା ପାଇଁ ଜାତୀୟ ରାଜପଥ କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରାଥମିକ କାର୍ଯ୍ୟ ଆରମ୍ଭ କରାଯାଇଛି ।

ବିଶ୍ୱବ୍ୟାଙ୍କ ସହାୟତାରେ ୭୦୦ କି.ମି. ବିଶିଷ୍ଟ ରାଜ୍ୟ ରାଜପଥ ଓ ଜିଲ୍ଲା ମୁଖ୍ୟ ରାସ୍ତାର ଉନ୍ନତିକରଣ ଏବଂ ୮୦୦ କି.ମି.-୨୦୦୦ କି.ମି. ରାସ୍ତାର ମରାମତି ତଥା ଅନୁରକ୍ଷଣ ପାଇଁ ଯୋଜନା ପ୍ରସ୍ତୁତି କାର୍ଯ୍ୟ ତ୍ୱରାନ୍ୱିତ କରାଯାଇଛି । ପ୍ରାଥମିକ ଅଟକଳ ଅନୁଯାୟୀ ଉକ୍ତ ପ୍ରକଳ୍ପ ପାଇଁ ୧୮୪୦ କୋଟି ଟଙ୍କା ଆବଶ୍ୟକ ଏବଂ ଏଥିପାଇଁ ବିଶ୍ୱବ୍ୟାଙ୍କ ୧୩୨୨ କୋଟି ଟଙ୍କା ଯୋଗାଇ ଦେବେ ।

□□□

## ଗ୍ରାମ୍ୟ ଉନ୍ନୟନ ବିଭାଗର ପ୍ରଗତି

ଗ୍ରାମାଞ୍ଚଳରେ ଗ୍ରାମ୍ୟ ରାସ୍ତା ନିର୍ମାଣ, ବିଶୁଦ୍ଧ ପାନୀୟ ଜଳ ଯୋଗାଣ, ଘରୋଇ ପାଇଖାନା ଏବଂ ମହିଳା ତଥା ବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କ ପାଇଁ ଶୌଚାଳୟ ନିର୍ମାଣ ଗ୍ରାମ୍ୟ ଉନ୍ନୟନ ବିଭାଗର ମୁଖ୍ୟ କାର୍ଯ୍ୟ ।

ଚଳିତ ଆର୍ଥିକ ବର୍ଷରେ ଗମନାଗମନର ସୁବିଧା ପାଇଁ ବିଭିନ୍ନ ନଦୀ ଏବଂ ନାଳ ଉପରେ ୬୦ଟି ସେତୁ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ରାଜ୍ୟରେ ଥିବା ୭୧୩୬ ଟି ସଂପୂର୍ଣ୍ଣ ଜଳକ୍ଲିଷ୍ଟ ଗ୍ରାମରେ ନଳକୂପ ଏବଂ ପରିମଳ କୂପ ସ୍ଥାପନ କରି ଜନସାଧାରଣଙ୍କର ପାନୀୟ ଜଳ ସମସ୍ୟା ଦୂରୀକରଣ କରାଯିବାର ଲକ୍ଷ୍ୟ ରଖାଯାଇଛି । ୨୫୪୦ ଟି ଆଂଶିକ ଜଳସେଚିତ ଜନବସତିରେ ମଧ୍ୟ ଏ ପ୍ରକାର ସୁବିଧା ଯୋଗାଇ ଦିଆଯିବ । ୧୦,୩୮୯ ଟି ନଳକୂପ ଏବଂ ୧୩୧୬ ଟି ପରିମଳ କୂପ ସ୍ଥାପନ କରିବା ସହିତ ପ୍ରାୟ ୧୩୪ ଟି ଗ୍ରାମ୍ୟ ପାଇପ୍ ଜଳଯୋଗାଣ ପ୍ରକଳ୍ପ ସ୍ଥାପନର ଲକ୍ଷ୍ୟ ମଧ୍ୟ ରଖାଯାଇଛି । ଗ୍ରାମାଞ୍ଚଳରେ ୮୨,୦୦୦ ଟି ଘରୋଇ ପାଇଖାନା ଏବଂ ୨୪୦ ଟି ମହିଳା ଶୌଚାଳୟ ନିର୍ମାଣ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଅଛି ।

ଆସନ୍ତା ଆର୍ଥିକ ବର୍ଷରେ ୬୦ ଟି ସେତୁ ନିର୍ମାଣ, ୬୦୦୦ ନଳକୂପ ସ୍ଥାପନ ଏବଂ ୫୦ ଗୋଟି ଗ୍ରାମ୍ୟ ପାଇପ୍ ଜଳ ଯୋଗାଣ ପ୍ରକଳ୍ପ ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟ ରଖାଯାଇଛି । ଅଚଳ ନଳକୂପ ପରିବର୍ତ୍ତେ ୪୫୦୦ ଟି ନୂତନ ନଳକୂପ ସ୍ଥାପନ କରିବା ପାଇଁ ମଧ୍ୟ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଗ୍ରାମାଞ୍ଚଳରେ ପ୍ରାୟ ଏକ ଲକ୍ଷ ଘରୋଇ ପାଇଖାନା ନିର୍ମାଣ କରିବା ସହିତ ପରିମଳ ପରିବେଶର ସୁରକ୍ଷା ପାଇଁ ଜନସଚେତନା ସୃଷ୍ଟି କରିବାର ଲକ୍ଷ୍ୟ ରଖାଯାଇଛି ।

# କଲ୍ୟାଣ ବିଭାଗର ସଫଳ କାର୍ଯ୍ୟାବଳୀ

ତଫସିଲଭୁକ୍ତ ଜାତି, ତଫସିଲଭୁକ୍ତ ଜନଜାତି, ସାମାଜିକ ତଥା ଶିକ୍ଷାକ୍ଷେତ୍ରରେ ଅନଗ୍ରସର ବର୍ଗ ଓ ସଂଖ୍ୟାଲଘୁ ସମ୍ପ୍ରଦାୟଙ୍କ ସର୍ବାଙ୍ଗୀନ ଉନ୍ନତି ନିମନ୍ତେ କଲ୍ୟାଣ ବିଭାଗ ଯଥାଯଥ କାର୍ଯ୍ୟ କରୁଅଛି ।

ତଫସିଲଭୁକ୍ତ ଜାତି ଓ ଜନଜାତି ଛାତ୍ରଛାତ୍ରୀଙ୍କ ପାଇଁ ଆବାସିକ ଶିକ୍ଷାନୁଷ୍ଠାନ ସ୍ଥାପନ କରାଯାଇ ସେମାନଙ୍କର ଶିକ୍ଷାର ମାନବୃଦ୍ଧି ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦିଆଯାଉଛି । ସଂପୃକ୍ତ ଗୋଷ୍ଠୀର ଛାତ୍ରଛାତ୍ରୀମାନଙ୍କୁ ବିଦ୍ୟାବୃତ୍ତି, ବିନାମୂଲ୍ୟରେ ଜାତୀୟକରଣ ପାଠ୍ୟପୁସ୍ତକ, ପୋଷାକ ପରିଚ୍ଛଦ, ଲେଖନ ଓ ପଠନ ସାମଗ୍ରୀ ଇତ୍ୟାଦି ବଣ୍ଟନ କରାଯାଉଛି ଏବଂ ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷା ନିମନ୍ତେ ସ୍ୱତନ୍ତ୍ର ତାଲିମ ଦେବାର ବ୍ୟବସ୍ଥା ରଖାଯାଇଛି । ୧୯୯୮-୯୯ ବର୍ଷରେ ୧୯ଟି ଶିକ୍ଷାନୁଷ୍ଠାନକୁ ଉଚ୍ଚ ବିଦ୍ୟାଳୟ, ଆଶ୍ରମ ବିଦ୍ୟାଳୟ ଓ ଆବାସିକ ସେବାଶ୍ରମରେ ନୂତନ ଭାବେ ସ୍ଥାପନ ଓ ଉନ୍ନୀତ କରାଯାଇଛି । ଚଳିତ ବର୍ଷ ସୁଦ୍ଧା ୫୫ଟି ଉଚ୍ଚବାଳିକା ବିଦ୍ୟାଳୟକୁ ମିଶାଇ ୨୧୮ଟି ଉଚ୍ଚ ବିଦ୍ୟାଳୟ, ୩୬ଟି କନ୍ୟାଶ୍ରମକୁ ମିଶାଇ ୧୪୯ଟି ଆଶ୍ରମ ବିଦ୍ୟାଳୟ, ୧୪୨ଟି ଆବାସିକ ସେବାଶ୍ରମ, ୯୨୦ଟି ସେବାଶ୍ରମ ଏବଂ ୧୫୪୮ଟି ପ୍ରାଥମିକ ବିଦ୍ୟାଳୟ ଛାତ୍ରାବାସ କାର୍ଯ୍ୟ କରୁଅଛି । ଚଳିତ ବର୍ଷ ୨୦୪୦ ଜଣ ତଫସିଲଭୁକ୍ତ ଜାତି ଓ ଜନଜାତିର ଛାତ୍ରଛାତ୍ରୀଙ୍କ ନିମନ୍ତେ ୬୮ଟି ଛାତ୍ରାବାସର ସୁବିଧା ଯୋଗାଇ ଦିଆଯାଇଛି ।

୩୨୮୩୯୪ ଜଣ ତଫସିଲଭୁକ୍ତ ଜନଜାତି ଓ ୩୨୨୫୯୪ ଜଣ ତଫସିଲଭୁକ୍ତ ଜାତି ଛାତ୍ରଛାତ୍ରୀଙ୍କୁ ବିଦ୍ୟାବୃତ୍ତି ପ୍ରଦାନ କରାଯାଇଛି ଏବଂ ୩୧୨୭ ଜଣ ସାମାଜିକ ତଥା ଶିକ୍ଷାକ୍ଷେତ୍ରରେ ଅନଗ୍ରସର ବର୍ଗର ଛାତ୍ରଛାତ୍ରୀଙ୍କୁ ମେଧାବୃତ୍ତି ଯୋଜନାରେ ଉପକୃତ କରାଯାଇଛି ।

୨୧ଟି ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନା, ୪୬ଟି ପରିବର୍ତ୍ତିତ ଆଞ୍ଚଳିକ ଆଭିମୁଖ୍ୟ, ୧୭ଟି ଅଣୁ ଯୋଜନା, ୧୪ଟି ପୁଞ୍ଜି ଯୋଜନା ଓ ଓଡ଼ିଶା ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ଜନଜାତି ଉନ୍ନୟନ ଅର୍ଥଲଗାଣ ନିଗମ ଜରିଆରେ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାଗୁଡ଼ିକ କାର୍ଯ୍ୟକାରୀ କରାଯାଉଛି । ଏତଦ୍‌ବ୍ୟତୀତ ସାମାଜିକ ତଥା ଶିକ୍ଷା କ୍ଷେତ୍ରରେ ଅନଗ୍ରସର ବର୍ଗ ଓ ସଂଖ୍ୟାଲଘୁ ସମ୍ପ୍ରଦାୟଙ୍କ କଲ୍ୟାଣ ନିମନ୍ତେ ମଧ୍ୟ ସ୍ୱତନ୍ତ୍ର କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଉଛି ।

ବିଭିନ୍ନ ପଦ ଓ ସେବାରେ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ଜନଜାତିମାନଙ୍କର ପର୍ଯ୍ୟାପ୍ତ ପ୍ରତିନିଧିତ୍ୱ ପାଇଁ ଆରକ୍ଷଣ ଅଧିନିୟମ ବଳବତ୍ତର ରହିଅଛି । ଚଳିତ ବର୍ଷ (ନଭେମ୍ବର'୯୮ ସୁଦ୍ଧା) ୨୯୬୭୮ ତଫସିଲଭୁକ୍ତ ଜନଜାତି ଓ ୧୩୨୫୯ ତଫସିଲଭୁକ୍ତ ଜାତି ପରିବାରଙ୍କୁ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ସହାୟତା ପ୍ରଦାନ କରାଯାଇଛି । ଏତଦ୍‌ବ୍ୟତୀତ ୭୦୬ ଜଣ ସାମାଜିକ ତଥା ଶିକ୍ଷା କ୍ଷେତ୍ରରେ ଅନଗ୍ରସର ବର୍ଗର ହିତାଧିକାରୀ ମିଆଦି ଋଣ ଯୋଜନାରେ ଉପକୃତ ହୋଇଛନ୍ତି ।

୧୯୯୯-୨୦୦୦ ବର୍ଷରେ ୪ଟି ନୂତନ ବିଦ୍ୟାଳୟ ପ୍ରତିଷ୍ଠା, ୩ଟି ଆଶ୍ରମ ବିଦ୍ୟାଳୟକୁ ଉଚ୍ଚ ବିଦ୍ୟାଳୟରେ, ୩ଟି ସେବାଶ୍ରମକୁ ଆଶ୍ରମ ବିଦ୍ୟାଳୟରେ ଉନ୍ନୀତକରଣ ଓ ୧୦ଟି ସେବାଶ୍ରମକୁ ଆବାସିକ ବିଦ୍ୟାଳୟରେ ପରିବର୍ତ୍ତନ କରିବା ଏବଂ ସାମାଜିକ ତଥା ଶିକ୍ଷା କ୍ଷେତ୍ରରେ ଅନଗ୍ରସର ବର୍ଗର ୫୪୬ ଜଣଙ୍କୁ ମିଆଦି ଋଣ ଯୋଗାଇ ଦେବାର ପ୍ରସ୍ତାବ ରହିଅଛି ।

❑❑❑

# ପଞ୍ଚାୟତିରାଜ ବିଭାଗର ପ୍ରଗତିମୂଳକ କାର୍ଯ୍ୟକ୍ରମ

ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ସମ୍ବିଧାନର ୭୩ତମ ସଂଶୋଧନ ଅନୁସାରେ ସାମ୍ବିଧାନିକ ସ୍ୱୀକୃତି ମିଳିଅଛି । ରାଜ୍ୟ ସରକାର ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ଶକ୍ତିଶାଳୀ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ସ୍ୱାୟତ୍ତ ଶାସନ ସଂସ୍ଥାରେ ପରିଣତ କରିବାକୁ ବଳିଷ୍ଠ ପଦକ୍ଷେପ ନେଇଛନ୍ତି । ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ସମ୍ପୂର୍ଣ୍ଣ ଭାବରେ ପ୍ରତିଷ୍ଠା କରିବା ପାଇଁ ୧୯୬୮ ମସିହାରେ ବନ୍ଦ କରିଦିଆଯାଇଥିବା ଜିଲ୍ଲାପରିଷଦ ବ୍ୟବସ୍ଥାକୁ ପୁନଃ ପ୍ରତିଷ୍ଠା କରାଯାଇଛି । ୧୯୯୭ ମସିହା ତ୍ରିସ୍ତରୀୟ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କ ନିମନ୍ତେ ନିର୍ବାଚନ କରାଯାଇ ନିର୍ବାଚିତ ପ୍ରତିନିଧିମାନଙ୍କୁ କ୍ଷମତା ଅର୍ପଣ କରାଯାଇଛି । ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ନିର୍ବାଚିତ ପ୍ରତିନିଧିମାନଙ୍କୁ ଶାସନରେ ଏପରି ବିପୁଳ ସୁଯୋଗ ଦେବା ପଞ୍ଚାୟତିରାଜ ବିଭାଗର ଅନ୍ୟତମ ସଫଳତା ।

## ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ:

ଗ୍ରାମାଞ୍ଚଳରୁ ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ସରକାର ବିଭିନ୍ନ ଶ୍ରମ ଓ ଆତ୍ମନିଯୁକ୍ତି ଯୋଜନା ମାଧ୍ୟମରେ ରାଜ୍ୟରେ ବିଭିନ୍ନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛନ୍ତି । ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ଜରିଆରେ ଗ୍ରାମାଞ୍ଚଳରେ ବସବାସ କରୁଥିବା ଶ୍ରମଜୀବୀମାନଙ୍କୁ ସେମାନଙ୍କର ଆବଶ୍ୟକତା ଅନୁସାରେ କର୍ମଯୋଗାଣର ସୁବିଧା ସୃଷ୍ଟି କରି ପାରିଶ୍ରମିକ ବାବଦକୁ ସର୍ବନିମ୍ନ ମଜୁରୀ ପ୍ରଦାନର ବ୍ୟବସ୍ଥା କରାଯାଇଥିବା ବେଳେ, ଗ୍ରାମାଞ୍ଚଳରେ ସ୍ଥାୟୀ ଗୋଷ୍ଠୀ ସମ୍ବଳ ସୃଷ୍ଟି କରି ଗ୍ରାମ୍ୟ ଭିତ୍ତିଭୂମିର ବହୁଳଭାବରେ ଉନ୍ନତି କରାଯାଇପାରିଛି । ଅନ୍ୟଦିଗରେ, ଦାରିଦ୍ର୍ୟ ସୀମାରେଖା ତଳେଥିବା ବ୍ୟକ୍ତିମାନଙ୍କ ନିମିତ୍ତ ବ୍ୟାଙ୍କ ଋଣ ଓ ସରକାରୀ ରିହାତି ସାହାଯ୍ୟରେ ଆତ୍ମନିଯୁକ୍ତିର ସୁଯୋଗ ସୃଷ୍ଟି କରି ଦାରିଦ୍ର୍ୟ ସୀମାରେଖା ଉପରକୁ ଉଠାଇବା ନିମିତ୍ତ ବିଭିନ୍ନ ଆତ୍ମନିଯୁକ୍ତି ଯୋଜନାମାନ କାର୍ଯ୍ୟକାରୀ କରାଯାଇଛି । ଆର୍ଥିକ ସହାୟତା ଓ ଋଣ ପ୍ରଦାନ ଏଥିପାଇଁ ପର୍ଯ୍ୟାପ୍ତ ନଥିବାରୁ ଆତ୍ମନିଯୁକ୍ତି ପାଇଁ ଗ୍ରାମ୍ୟ ଯୁବତାଲିମ କାର୍ଯ୍ୟକ୍ରମ ଜରିଆରେ ହିତାଧିକାରୀମାନଙ୍କର ଉନ୍ନତି ନିମନ୍ତେ ପ୍ରଚେଷ୍ଟା ଅବ୍ୟାହତ ରହିଛି ।

ଆଦିବାସୀ ଓ ହରିଜନ ଅଧ୍ୟୁଷିତ ଗ୍ରାମାଞ୍ଚଳର ଗରିବ ଲୋକମାନଙ୍କୁ ଶସ୍ତା ଦରରେ କେ.ଜି. ପ୍ରତି ୨ ଟଙ୍କା ଚାଉଳ ଯୋଗାଣ କରିବା ପାଇଁ ରାଜ୍ୟର ୧୪୩ ଗୋଟି ବ୍ଲକରେ ପର୍ଯ୍ୟାପ୍ତ ବ୍ୟବସ୍ଥା କରାଯାଇଛି । ଏଥିପାଇଁ ଆମ ସରକାର ୧୧୦ କୋଟି ଟଙ୍କା ସବ୍‌ସିଡି ପ୍ରଦାନ କରିଛନ୍ତି । ଗତ ୧୯୯୭-୯୮ ଆର୍ଥିକ ବର୍ଷରେ ରାଜ୍ୟ ସରକାରଙ୍କର ପଞ୍ଚାୟତିରାଜ ବିଭାଗ ଦ୍ୱାରା କାର୍ଯ୍ୟକାରୀ କରାଯାଉଥିବା ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ଯଥା: JRY, EAS, IAY, NWS, OBB, IRDP, DWCRA, TRYSEM ଏବଂ Improved Tool Kits ମାଧ୍ୟମରେ ରାଜ୍ୟରେ ସମୁଦାୟ ୫୩୧୫୦.୪୪ ଲକ୍ଷ ଟଙ୍କା ବିନିଯୋଗ କରାଯାଇପାରିଛି । ସେହିପରି ଉପରୋକ୍ତ ଯୋଜନା ମାଧ୍ୟମରେ ଚଳିତ ୧୯୯୮-୯୯ ଆର୍ଥିକ ବର୍ଷର ନଭେମ୍ବର ମାସ ଶେଷ ସୁଦ୍ଧା ୨୬୯୭୨.୦୫ ଲକ୍ଷ ଟଙ୍କା ଦାରିଦ୍ର୍ୟ ସୀମାରେଖା ତଳେଥିବା ଲୋକମାନଙ୍କୁ ଉପକୃତ କରିବା ନିମନ୍ତେ ବିନିଯୋଗ କରାଯାଇଛି ।

ରାଜ୍ୟର ଗ୍ରାମାଞ୍ଚଳରେ ବାସ କରୁଥିବା ଇଚ୍ଛୁକ କାର୍ଯ୍ୟକ୍ଷମ ଶ୍ରମଜୀବୀମାନଙ୍କୁ ସେମାନଙ୍କର ଆବଶ୍ୟକତା ଅନୁସାରେ କାମ ଧନ୍ଦା ଯୋଗାଇବା ସହିତ ଗ୍ରାମଗୁଡ଼ିକର ଆର୍ଥିକ ମାନଦଣ୍ଡର ସୁଦୃଢ଼ୀକରଣ ତଥା ଗ୍ରାମ୍ୟ ଜୀବନର ସର୍ବାଙ୍ଗୀନ ଉନ୍ନତି କଳ୍ପେ ୧୯୯୭-୯୮ ଆର୍ଥିକ ବର୍ଷରେ ଜବାହର ରୋଜଗାର ଯୋଜନା ଓ ନିଯୁକ୍ତି ପ୍ରତିଶ୍ରୁତି ଯୋଜନା ଭଳି ଶ୍ରମଭିତ୍ତିକ ଯୋଜନାରେ ଯଥାକ୍ରମେ ୧୫୦୭୩.୭୨ ଲକ୍ଷ ଓ ୧୮୮୬୫.୫୭ ଲକ୍ଷ ଟଙ୍କା ବିନିଯୋଗ କରି ୨୯୯.୮୨ ଓ ୩୮୨.୧୪ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇପାରିଛି । ସେହିପରି ଗ୍ରାମାଞ୍ଚଳର ଗରିବ ବ୍ୟକ୍ତିଙ୍କୁ ୮୮୪୪.୮୧ ଲକ୍ଷ ଟଙ୍କା ବିନିଯୋଗରେ ୫୦୦୨୩ ଗୋଟି ଇନ୍ଦିରା ଆବାସ ଗୃହ ଓ ୩୧୩୨.୬୬ ଲକ୍ଷ ଟଙ୍କା ବିନିଯୋଗରେ ୧୫୬୯୮ ଗୋଟି ସେଚକୂପ ନିଯୁତକୂପ ଯୋଜନାରେ ବିନାମୂଲ୍ୟରେ ଯୋଗାଇ ଦିଆଯାଇଛି । ପ୍ରାରମ୍ଭିକ ସୂଚନା ଅନୁଯାୟୀ ୧୯୯୭-୯୮ ଆର୍ଥିକ ବର୍ଷରେ ଜବାହାର ରୋଜଗାର ଯୋଜନା ଓ ନିଯୁକ୍ତି ପ୍ରତିଶ୍ରୁତି ଯୋଜନାରେ ୧୩୧୮୮ ଗୋଟି ବିଭିନ୍ନ ପ୍ରକାରର କ୍ଷୁଦ୍ର ଜଳସେଚନ ପ୍ରକଳ୍ପ, ୧୮୦୬୫.୬୫ କି.ମି. ଗ୍ରାମ୍ୟ ରାସ୍ତାର ଉନ୍ନତି, ୧୦୫୮୧.୩୫ ହେକ୍ଟର ଚାଷଜମିର ଉନ୍ନୟନ, ୮୫୬୫ ଗୋଟି ବିଦ୍ୟାଳୟ ଗୃହ, ୯୩୫ ଗୋଟି ଅଙ୍ଗନବାଡ଼ି ଗୃହ ତଥା ୩୦୨୨ ଗୋଟି ଅନ୍ୟାନ୍ୟ ଆବଶ୍ୟକ ଗୃହନିର୍ମାଣ କାର୍ଯ୍ୟ, ବନୀକରଣରେ ୨୬,୨୭୨.୯୪ ହେକ୍ଟର ଜମିରେ ଚାରା ରୋପଣ କରାଯିବା ସହିତ ୯୮୭ ଗୋଟି ଜଳଛାୟା ପ୍ରକଳ୍ପ ହାତକୁ ନିଆଯାଇଛି ।

ସେହିପରି ଚଳିତ ୧୯୯୮-୯୯ ଆର୍ଥିକ ବର୍ଷର ନଭେମ୍ବର ମାସ ଶେଷ ସୁଦ୍ଧା ଜବାହର ରୋଜଗାର ଯୋଜନା ଓ ନିଯୁକ୍ତି ପ୍ରତିଶ୍ରୁତି ଯୋଜନାରେ ୧୭,୪୯୧.୭୩ ଲକ୍ଷ ଟଙ୍କା ବ୍ୟୟ କରାଯାଇ ୩୪୫.୨୪ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଥିବା ବେଳେ ଇନ୍ଦିରା ଆବାସ ଯୋଜନା ଓ ନିଯୁତକୂପ ଯୋଜନାରେ ଯଥାକ୍ରମେ

୪୩୩୯.୧୩ ଲକ୍ଷ ଟଙ୍କା ଓ ୧୪୫୮.୦୬ ଲକ୍ଷ ଟଙ୍କା ବିନିଯୋଗ କରାଯାଇ ହିତାଧିକାରୀଙ୍କୁ ଉପକୃତ କରିବା ନିମନ୍ତେ ୨୦୪୦୪ ଗୋଟି ଗୃହ ଓ ୬୧୬୬ ଗୋଟି କୂପ ବିନା ମୂଲ୍ୟରେ ଯୋଗାଇ ଦିଆଯାଇଅଛି ।

ଗ୍ରାମାଞ୍ଚଳର ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରଙ୍କୁ ବ୍ୟାଙ୍କ ଋଣ ଓ ସରକାରୀ ରିହାତି ଦେଇ ବିଭିନ୍ନ ଅର୍ଥନୈତିକ କାର୍ଯ୍ୟକ୍ରମ ଜରିଆରେ ଆତ୍ମନିଯୁକ୍ତି ନିମନ୍ତେ ୧୯୯୭-୯୮ ଆର୍ଥିକ ବର୍ଷରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ସର୍ବମୋଟ ୬୯୮୭.୬୨ ଲକ୍ଷ ଟଙ୍କା ବିନିଯୋଗ କରି ୭୪୮୭୪ ଗୋଟି ପରିବାରଙ୍କୁ ସହାୟତା ଦିଆଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ମାତ୍ର ଉକ୍ତ ବର୍ଷରେ ମୋଟ ୬୦୩୭.୮୮ ଲକ୍ଷ ଟଙ୍କା ବିନିଯୋଗ କରାଯାଇ ୭୫୩୪୩ ଗୋଟି ପରିବାରଙ୍କୁ ସହାୟତା ଦିଆଯାଇଛି । ସେହିପରି ଡୋକ୍ରା ଯୋଜନା ମାଧ୍ୟମରେ ଗ୍ରାମୀଣ ମହିଳାଙ୍କୁ ସଂଗଠିତ କରାଯାଇ ୧୬୧୬ଟି ଦଳ ଗଠନ କରାଯାଇଛି ଏବଂ ବିଭିନ୍ନ ଅର୍ଥନୈତିକ କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ କରାଯାଇ ସେମାନଙ୍କୁ ଅଧିକ ଉପାର୍ଜନକ୍ଷମ କରାଯାଇପାରିଛି । ଆତ୍ମନିଯୁକ୍ତି ପାଇଁ ଗ୍ରାମ୍ୟଯୁବ ତାଲିମ କାର୍ଯ୍ୟକ୍ରମ (ଟ୍ରାଇସେମ୍) ଜରିଆରେ ୧୪୯୫୧ ଜଣ ହିତାଧିକାରୀଙ୍କୁ ବିଭିନ୍ନ ବୈଷୟିକ ଜ୍ଞାନକୌଶଳର ଅଭିବୃଦ୍ଧି ନିମନ୍ତେ ତାଲିମ ଦିଆଯିବା ସହିତ ୭୦୬୭ ଜଣ ଗ୍ରାମ୍ୟ କାରୀଗରଙ୍କୁ ଉନ୍ନତଧରଣର ଯନ୍ତ୍ରପାତି ଯୋଗାଇ ଦିଆଯାଇ ସେମାନଙ୍କୁ ଉପାର୍ଜନକ୍ଷମ କରାଯାଇପାରିଛି ।

ଗ୍ରାମାଞ୍ଚଳରେ ଗମନାଗମନର ସୁବିଧାପାଇଁ ଗ୍ରାମ୍ୟ ସଂଯୋଗୀକରଣ ଯୋଜନା ମାଧ୍ୟମରେ ବିଭିନ୍ନ ଯୋଜନାର ଉଦ୍ଦିଷ୍ଟ ଅର୍ଥକୁ ଏକତ୍ରିତ କରାଯାଇ ସମ୍ପୂର୍ଣ୍ଣ ରୂପେ ବ୍ୟବହାର କରାଯାଇପାରିଛି । ଏହି ଯୋଜନାରେ ଗ୍ରାମପଞ୍ଚାୟତର ସଦର ମହକୁମାକୁ ପଞ୍ଚାୟତ ସମିତି ସଦର ମହକୁମା ସହିତ ସଂଯୋଗ କରିବା ପାଇଁ ଦଶମ ଅର୍ଥ ଆୟୋଗଙ୍କ ପ୍ରଦତ୍ତ ଅର୍ଥରୁ ୬୧୮୯.୯୩ ଲକ୍ଷ ଟଙ୍କା ବିଭିନ୍ନ ଜିଲ୍ଲା ପରିଷଦକୁ ଯୋଗାଇ ଦିଆଯାଇଥିବା ବେଳେ ୩୧୪.୦୦ ଲକ୍ଷ ଟଙ୍କା ପଞ୍ଚାୟତ ଗୃହନିର୍ମାଣ ନିମନ୍ତେ ଯୋଗାଇ ଦିଆଯାଇଛି । ସେହିଭଳି ଚଳିତ ଆର୍ଥିକ ବର୍ଷର ନଭେମ୍ବର ମାସ ଶେଷ ସୁଦ୍ଧା ଗ୍ରାମ୍ୟ ସଂଯୋଗୀକରଣ ଯୋଜନାରେ ୩୦୨୩.୧୫୩ ଲକ୍ଷ ଟଙ୍କା ବ୍ୟୟ କରାଯାଇ ଗ୍ରାମ୍ୟ ରାସ୍ତାର ଉନ୍ନତି କରାଯାଇଛି ।

ଜାଗ୍ରତ ଜନମତ ଓ ପ୍ରଶାସନରେ ସ୍ୱଚ୍ଛତା ଆଣିବା ଦିଗରେ ସରକାରଙ୍କର ଅହରହ ଚେଷ୍ଟା ଯୋଗୁଁ ଗ୍ରାମାଞ୍ଚଳରେ ସଚେତନତା ବୃଦ୍ଧି ପାଇଛି ଏବଂ ବିଭିନ୍ନ ସ୍ତରରୁ କାର୍ଯ୍ୟକ୍ରମ ସମ୍ବନ୍ଧରେ ଅଭିଯୋଗ ଓ ଜନମତମାନ ସରକାରଙ୍କ ଦୃଷ୍ଟିକୁ ଆସିପାରିଛି । ଏକ ପୃଥକ ଦୁର୍ନୀତି ନିବାରଣ ଓ ନିରୀକ୍ଷଣ ପ୍ରକୋଷ୍ଠ ରାଜ୍ୟ ସ୍ତରରେ ଗଠନ କରାଯାଇ କାର୍ଯ୍ୟ ସମ୍ପାଦନରେ ଅନିୟମିତତା, ତ୍ରୁଟି ଆଦି ସମ୍ବନ୍ଧରେ ତଦନ୍ତ କରାଯାଉଥିବା ବେଳେ, ଜିଲ୍ଲା ଭିଜିଲାନ୍ସ କମିଟି, ବ୍ଲକ ଭିଜିଲାନ୍ସ କମିଟି, ଗ୍ରାମ୍ୟ ଭିଜିଲାନ୍ସ କମିଟି, ଜିଲ୍ଲା ଓ ବ୍ଲକ ସ୍ତରୀୟ କମିଟିମାନ ଗଠନ କରାଯାଇଛି । ଜିଲ୍ଲା ସ୍ତରୀୟ ପରିଚାଳନା ମଣ୍ଡଳୀଠାରୁ ଆରମ୍ଭ କରି ସମସ୍ତ କମିଟିରେ ଲୋକ ପ୍ରତିନିଧିମାନେ ସଭ୍ୟ ଅଛନ୍ତି । ଜିଲ୍ଲାସ୍ତରରେ ଭିଜିଲାନ୍ସ ସ୍କ୍ୱାର୍ଡ଼ ଗଠନ ନିମନ୍ତେ ଅନୁଦେଶ ନିର୍ଗମିତ ହୋଇସାରିଛି । ପଞ୍ଚାୟତିରାଜ ବିଭାଗରେ ଗୋଷ୍ଠୀ ଉନ୍ନୟନ ଅଧିକାରୀ ଓ କନିଷ୍ଠ ଯନ୍ତ୍ରୀମାନଙ୍କ କାର୍ଯ୍ୟକାଳକୁ ନିର୍ଦ୍ଦିଷ୍ଟ କାର୍ଯ୍ୟକାଳ ପାଇଁ ସୀମିତ ରଖାଯିବା ନିମନ୍ତେ ପଦକ୍ଷେପ ନିଆଯାଇଛି (Impanelment)ସୂଚୀଭୁକ୍ତ ପ୍ରକ୍ରିୟା ଜରିଆରେ P.D., DRDA ଭାବରେ ଦକ୍ଷ ଅଧିକାରୀମାନଙ୍କୁ ଚୟନ କରି ତାଲିକା ପ୍ରସ୍ତୁତ କରାଯାଉଛି ।

ବିଗତ ବର୍ଷ ମଧ୍ୟରେ ବ୍ଲକମାନଙ୍କର କାର୍ଯ୍ୟଭାର ବହୁପରିମାଣରେ ବୃଦ୍ଧି ପାଇଛି । ବାର୍ଦ୍ଧକ୍ୟଭତ୍ତା, ଜାତୀୟ ବାର୍ଦ୍ଧକ୍ୟ ଭତ୍ତା, ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ, ଜାତୀୟ ପରିବାର କଲ୍ୟାଣ କାର୍ଯ୍ୟକ୍ରମ, ଗଙ୍ଗା କଲ୍ୟାଣ କାର୍ଯ୍ୟକ୍ରମ ପ୍ରଭୃତି ନୂତନ କାର୍ଯ୍ୟମାନ ବ୍ଲକ ପରିସର ଅନ୍ତର୍ଭୁକ୍ତ ହୋଇଥିଲେ ସୁଦ୍ଧା ପର୍ଯ୍ୟାପ୍ତ ସଂଖ୍ୟକ କର୍ମଚାରୀ ତଥା ଆନୁଷଙ୍ଗିକ ଭିତ୍ତିଭୂମିର ବିକାଶ କରାଯାଇନାହିଁ ।

ସଂପ୍ରତି ୧୯୯୭-୯୮ ମସିହାରେ ପ୍ରତି ବ୍ଲକକୁ ଏକକୋଟି ପଞ୍ଚସ୍ତରୀ ଲକ୍ଷଟଙ୍କା ଅନୁଦାନ ଦିଆଯାଉଥିବା ବେଳେ ୧୯୯୨-୯୩ରେ ତାହା ମାତ୍ର ୫୦.୦୦ଲକ୍ଷ ଟଙ୍କାରେ ସୀମିତ ଥିଲା । ଏହି ପରିପ୍ରେକ୍ଷୀରେ ବ୍ଲକ କାର୍ଯ୍ୟକୁ ଶୃଙ୍ଖଳିତ ତଥା ସୁଦୃଢ଼ କରିବା ପାଇଁ ପ୍ରତି ବ୍ଲକରେ ଜଣେ ଲେଖାଏଁ ସମୀକ୍ଷକଙ୍କୁ ନିଯୁକ୍ତି ଦିଆଯାଇ ପ୍ରାକ୍ ସମୀକ୍ଷା (ପ୍ରି-ଅଡିଟ) ବ୍ୟବସ୍ଥା ଗ୍ରହଣ କରିବା ପାଇଁ ନିଷ୍ପତ୍ତି ନିଆଯାଇଛି । ପ୍ରଥମ ପର୍ଯ୍ୟାୟରେ ୪୩ ଜଣ ସମୀକ୍ଷକଙ୍କୁ ନିଯୁକ୍ତି ଦିଆଯାଇଛି । ପ୍ରକଳ୍ପ ନିର୍ମାଣ ନିମନ୍ତେ ଆବଶ୍ୟକୀୟ ସାମଗ୍ରୀ ସ୍ଥାନୀୟ ଦରରେ କ୍ରୟ କରିବା ପାଇଁ ଜିଲ୍ଲାପାଳ ଓ ଆଇ.ଡି.ସିଙ୍କୁ ଦର ନିର୍ଦ୍ଧାରଣ ନିମନ୍ତେ କ୍ଷମତା ପ୍ରଦାନ କରାଯାଇଛି । ହିତାଧିକାରୀମାନଙ୍କୁ ଗ୍ରାମସଭା ଦ୍ୱାରା ଚିହ୍ନଟ କରିବା ବ୍ୟବସ୍ଥା ପ୍ରଚଳନ କରାଯାଇଛି ।

❑❑❑

# ରାଜସ୍ୱ ବିଭାଗର ପ୍ରଗତିଶୀଳ ପଦକ୍ଷେପ

ଓଡ଼ିଶାଭଳି ବିକାଶମୁଖୀ ରାଜ୍ୟର ପ୍ରଶାସନ କ୍ଷେତ୍ରରେ ପ୍ରଗତିଶୀଳ ପଦକ୍ଷେପଗୁଡ଼ିକ କାର୍ଯ୍ୟକାରୀ କରି ପ୍ରଶାସନକୁ ଲୋକାଭିମୁଖୀ କରିବାରେ ରାଜସ୍ୱ ବିଭାଗ ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ଆସୁଅଛି । ରାଜସ୍ୱ ପ୍ରଶାସନ ଆଇନ ପ୍ରଣୟନ, ଭୂ-ଅଭିଲେଖଗୁଡ଼ିକର କମ୍ପ୍ୟୁଟରକରଣ, କୃଷି ଜମିକୁ ଅଣକୃଷି ଉଦ୍ଦେଶ୍ୟରେ ପରିବର୍ତ୍ତନ କରାଯାଉଥିବା ଜମି ପାଇଁ ଆଇନର ସଂଶୋଧନ, ସହରାଞ୍ଚଳ ଲିଜ୍ ସୂତ୍ରେ ପାଇଥିବା ଜମିକୁ ସ୍ଥିତିବାନ ସ୍ୱତ୍ୱ ପ୍ରଦାନ, ବାସହୀନଙ୍କୁ ଜମି ଯୋଗାଣ କ୍ଷମତାର ବିକେନ୍ଦ୍ରୀକରଣ, ବନ୍ୟାପ୍ରବଣ ଅଞ୍ଚଳରେ ବିଶୁଦ୍ଧ ପାନୀୟ ଜଳ ଯୋଗାଣ ଇତ୍ୟାଦି ଏଥି ମଧ୍ୟରେ ଅନ୍ତର୍ଭୁକ୍ତ ।

ଭୂ-ଅଭିଲେଖଗୁଡ଼ିକ କମ୍ପ୍ୟୁଟର କରିବା ଯୋଜନା ସରକାର ହାତକୁ ନେଇଛନ୍ତି । ପ୍ରଥମ ପର୍ଯ୍ୟାୟରେ ରାଜ୍ୟର ୬୨ ତହସିଲକୁ କମ୍ପ୍ୟୁଟରକରଣ କରିବା ନିମନ୍ତେ ନିଆଯାଇଛି ।

କୃଷି ଜମିକୁ ଅଣକୃଷି ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଥିଲେ ଏହାକୁ ଉଚ୍ଛେଦ କରିବା ନିମନ୍ତେ ଭୂ-ସଂସ୍କାର ଆଇନରେ ବ୍ୟବସ୍ଥା ଥିଲା । ଜନସଂଖ୍ୟା ବୃଦ୍ଧି, ଶିଳ୍ପର ବିକାଶ ଓ ସହରାଞ୍ଚଳର ଅଭିବୃଦ୍ଧିକୁ ଦୃଷ୍ଟିରେ ରଖି ପ୍ରୋକ୍ତ ଆଇନର ଆବଶ୍ୟକ ସଂଶୋଧନ କରାଯାଇ ଏହାକୁ ଅଣକୃଷି ବ୍ୟବହାରକାରୀଙ୍କ ନାମରେ ବନ୍ଦୋବସ୍ତ କରାଯିବାର ବ୍ୟବସ୍ଥା କରାଯାଇଛି । ଏଥିଯୋଗୁଁ ସରକାରଙ୍କ ରାଜସ୍ୱ ବୃଦ୍ଧି ହେବା ସଂଗେ ସଂଗେ ଏକ ବହୁ ଦିନର ସମସ୍ୟା ସମାଧାନ ହୋଇଯାଇଛି ।

ଭୁବନେଶ୍ୱର ଓ ସୁନାବେଡ଼ା ବ୍ୟତୀତ ରାଜ୍ୟର ସମସ୍ତ ସହରାଞ୍ଚଳ ଗୃହ ନିର୍ମାଣ ନିମନ୍ତେ ଲିଜ୍ ଦିଆଯାଇଥିବା ଜମିକୁ ସ୍ଥିତିବାନ ସ୍ୱତ୍ୱରେ ରେକର୍ଡ଼ କରାଯିବା ପାଇଁ ଆବଶ୍ୟକ ନିୟମାବଳୀ ପ୍ରଣୟନ କରାଯାଇ ଓଡ଼ିଶା ସରକାରୀ ଜମି ବନ୍ଦୋବସ୍ତ ନିୟମାବଳୀ ଓଡ଼ିଶା ୧୯୮୩ରେ ସଂଶୋଧନ ମାଧ୍ୟମରେ ସନ୍ନିବେଶିତ କରାଯାଇଅଛି ।

ରାଜ୍ୟର ସମସ୍ତ ବାସହୀନ ପରିବାରଙ୍କୁ ଘରଡିହ ଯୋଗାଇ ଦେବା ଲକ୍ଷ୍ୟ ନେଇ ୧୯୯୮ ଅଗଷ୍ଟ ମାସ ୧୫ ତାରିଖଠାରୁ ୧୯୯୯;୨୬ ଜାନୁଆରୀ ପର୍ଯ୍ୟନ୍ତ ଏକ ସଘନ କାର୍ଯ୍ୟକ୍ରମ ନିଆଯାଇଅଛି । ଡିସେମ୍ବର ୧୯୯୮ ସୁଦ୍ଧା ୧,୨୦,୩୭୧ ବାସହୀନ ପରିବାରଙ୍କୁ ଘରଡିହ ଯୋଗାଯାଇ ସାରିଲାଣି ।

ଉପ ପ୍ରଜା ଏବଂ ଅଧଃ ରୟତଙ୍କୁ ରୟତି ସ୍ୱତ୍ୱ ପ୍ରଦାନ କରାଯିବା ନିମନ୍ତେ ୧୯୭୬ ସୁଦ୍ଧା ଦରଖାସ୍ତ କରାଯିବା ପାଇଁ ସମୟ ଦିଆଯାଇଥିଲା କିନ୍ତୁ କେତେକ କାରଣ ବଶତଃ ସେମାନେ ଓଡ଼ିଶା ଭୂ-ସଂସ୍କାର ଆଇନରେ ଥିବା ବ୍ୟବସ୍ଥାନୁଯାୟୀ ଏହି ସୁବିଧା ପାଇପାରିନଥିବାରୁ ଆଇନର ସଂଶୋଧନ କରାଯିବା ନିମନ୍ତେ ପଦକ୍ଷେପ ନିଆଯାଇ ଏକ ବିଧେୟକ ଗତ ବିଧାନସଭାରେ ଆଗତ କରାଯାଇଅଛି ।

ଶିଳ୍ପ ଓ ଖଣିର ବିକାଶ ଯୋଗୁଁ ବାସଚ୍ୟୁତ ହେଉଥିବା ପରିବାରଙ୍କ ନିମନ୍ତେ ଏକୀକୃତ ଯୋଜନା ନିକଟରେ ପ୍ରଣୟନ କରାଯାଇଅଛି । ଏହି ନୀତି ପ୍ରଣୟନର ବୈଶିଷ୍ଟ୍ୟ ହେଲା ଯେ ବାସହୀନ ଓ ଭୂମିହୀନ ଲୋକଙ୍କୁ ଅନ୍ୟମାନଙ୍କ ପରି ପୁନର୍ବାସ ଓ ଥଇଥାନ ଯୋଗାଣରେ ସମାନ ସୁବିଧା ସୁଯୋଗ ଯୋଗାଇ ଦେବା । ଦ୍ୱିତୀୟତଃ ଏଥି ନିମନ୍ତେ ହେଉଥିବା ଖର୍ଚ୍ଚ ଭୂମି ଅଧିଗ୍ରହଣ ହେଉଥିବା ଖର୍ଚ୍ଚ ସହ ସଂପୃକ୍ତ ଯୋଜନା ଖର୍ଚ୍ଚରୁ ଭରଣା କରାଯିବ ।

ରାଜ୍ୟରେ ଥିବା ବିଭିନ୍ନ ନିବନ୍ଧନ କାର୍ଯ୍ୟାଳୟଗୁଡ଼ିକରେ ଫ୍ରାଙ୍କିଙ୍ଗ ମେସିନ ବ୍ୟବହାର କରାଯିବା ପାଇଁ ସରକାର ନିଷ୍ପତ୍ତି ଗ୍ରହଣ କରିଅଛନ୍ତି । ଫ୍ରାଙ୍କିଙ୍ଗ ମେସିନ୍‌ର ପ୍ରବର୍ତ୍ତନ ଅଣନ୍ୟାୟିକ ଷ୍ଟାମ୍ପ କାଗଜର ଅଭାବ ସମସ୍ୟାକୁ ଦୂରକରିବା ସଂଗେ ସଂଗେ କ୍ରେତାମାନଙ୍କୁ ସନ୍ତୁଷ୍ଟ କରିପାରିବ ଏବଂ ଷ୍ଟାମ୍ପ ଓ ନିବନ୍ଧନ ପଦ୍ଧତିର କାର୍ଯ୍ୟକୁଶଳତାରେ ବିଶେଷ ଉନ୍ନତି ସାଧନ କରିପାରିବ । ୧୯୯୮-୯୯ ଆର୍ଥିକ ବର୍ଷରେ ୨୭ଗୋଟି ଫ୍ରାଙ୍କିଙ୍ଗ୍ ମେସିନ କିଣିବା ପାଇଁ ସରକାର ଆବଶ୍ୟକୀୟ ଅର୍ଥ ମଞ୍ଜୁର କରିସାରିଛନ୍ତି । ଏହି ମେସିନଗୁଡ଼ିକ ରାଜ୍ୟର ୨୭ଗୋଟି ଗୁରୁତ୍ୱପୂର୍ଣ୍ଣ ନିବନ୍ଧନ କାର୍ଯ୍ୟାଳୟରେ ସ୍ଥାପନ କରାଯିବ ।

ତହସିଲମାନଙ୍କରେ ମୂଲ୍ୟବାନ ନଥିର ସଂରକ୍ଷଣ ନିମନ୍ତେ ୮୭ଟି ତହସିଲରେ ରେକର୍ଡ଼ ରୁମ୍ ନିର୍ମାଣ ନିମନ୍ତେ ୩.୫ କୋଟି ଟଙ୍କାର ଅର୍ଥ ବ୍ୟବସ୍ଥା କରାଯାଇଅଛି । ବନ୍ୟା ପ୍ରବଣ ଅଞ୍ଚଳରେ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ଲକ୍ଷ୍ୟରେ ୪କୋଟି ଟଙ୍କା ବ୍ୟୟରେ ୮୦୦ଫୁଟ ଗଭୀର ନଳକୂପ ଖନନ କରାଯିବାର ବ୍ୟବସ୍ଥା ହୋଇଅଛି । ସେହିଭଳି ପ୍ରୋକ୍ତ ଅଞ୍ଚଳରେ ୪କୋଟି ଟଙ୍କା ବ୍ୟୟରେ ୧୦୦ଟି ପ୍ରାଣୀ ଆଶ୍ରୟସ୍ଥଳ (Live stock Shelter) ନିର୍ମାଣ କରାଯିବାର ବ୍ୟବସ୍ଥା କରାଯାଇଅଛି ।

ବିହାର- ଓଡ଼ିଶା ଅବକାରୀ (ସଂଶୋଧନ) ଆଇନ ୧୯୯୮ ବିଲ୍ ବିଧାନସଭାରେ ଗୃହୀତ ହୋଇଛି । ଚୋରା ମାଦକ ଦ୍ରବ୍ୟ କାରବାର, ଗଚ୍ଛିତ ରଖିବା ଇତ୍ୟାଦି ଅପରାଧ ପାଇଁ ବ୍ୟାପକ ଦଣ୍ଡ ବ୍ୟବସ୍ଥା କରାଯାଇଛି । ମଦ ମୃତ୍ୟୁ ଜନିତ ବିଭୀଷିକାକୁ ଭବିଷ୍ୟତରେ ଏଡ଼ାଇଦେବା ଏହି ସଂଶୋଧନ ଆଇନର ମୂଳ ଲକ୍ଷ୍ୟ ।

# ପରିବେଶ ବିଭାଗର ପ୍ରଗତି

ରାଜ୍ୟର ପୋଷଣୀୟ ଉନ୍ନତି ( Sustainable Development) ର ଲକ୍ଷ୍ୟ ହାସଲ କରିବା ଦିଗରେ ପରିବେଶର ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଷୟରେ ରାଜ୍ୟ ସରକାର ସଚେତନ ଅଛନ୍ତି । ନରୱେ ସରକାରଙ୍କ ଆର୍ଥିକ ସହାୟତାରେ ପୁରୀଠାରେ ଗତ ନଭେମ୍ବର ମାସ ୧୪ ତାରିଖଠାରୁ ଏକ କଠିନ ବର୍ଜ୍ୟବସ୍ତୁ ପରିଚାଳନା କାରଖାନା ଆରମ୍ଭ କରାଯାଇଛି । ଏହାଦ୍ୱାରା ପୁରୀ ସହରର ପରିବେଶ ଉନ୍ନତି ହେବା ସଂଗେ ସଂଗେ ସହରର କଠିନ ଆବର୍ଜନାକୁ ଜୈବସାରରେ ପରିଣତ କରାଯାଇପାରିବ । ନାଲ୍କୋ ସ୍ମେଲଟର ଚତୁଃପାର୍ଶ୍ୱରେ ଥିବା ୧୧ଟି ଫ୍ଲୋରାଇଡ୍ ଆକ୍ରାନ୍ତ ଗ୍ରାମକୁ ବିଶୁଦ୍ଧ ପାନୀୟ ଜଳ ଯୋଗାଇବା କାର୍ଯ୍ୟକ୍ରମ ସନ୍ତୋଷଜନକ ଭାବେ ଆଗେଇ ଚାଲିଛି ଏବଂ ଏହା ଆସନ୍ତା ଜୁନ୍ ମାସ (୧୯୯୯ ମସିହା) ସୁଦ୍ଧା କାର୍ଯ୍ୟକାରୀ ହେବ ବୋଲି ଆଶା କରାଯାଏ । ଦଶମ ଅର୍ଥ କମିଶନଙ୍କ ସୁପାରିଶ ଅନୁଯାୟୀ କେନ୍ଦ୍ର ସରକାରଙ୍କଠାରୁ ପ୍ରାପ୍ତ ଅର୍ଥରେ ଚିଲିକା ହ୍ରଦର ସଂରକ୍ଷଣ ନିମନ୍ତେ ଅନେକ ଗୁଡ଼ିଏ ପଦକ୍ଷେପ ନିଆଯାଇଛି । ସେଗୁଡ଼ିକ ମଧ୍ୟରୁ ଚିଲିକା ମୁହାଣର ଖନନ ଅନ୍ୟତମ । ଏହି ଖନନ ଦ୍ୱାରା ଚିଲିକାକୁ ସମୁଦ୍ର ଜଳ ସୁବିଧାରେ ଆସିପାରିବ ଏବଂ ଚିଲିକାରୁ ପଟୁମାଟି ସମୁଦ୍ରକୁ ଖଲାସ ହୋଇପାରିବ । ଏହା ବ୍ୟତୀତ ଜଳ ବିଭାଜିକା ଅଞ୍ଚଳରେ ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମ, ନଳବଣ ପକ୍ଷୀ ଅଭୟାରଣ୍ୟର ଉନ୍ନତି, ହ୍ରଦର ଜଳ ପରିଚାଳନା ଏବଂ ଚିଲିକା ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କର ସର୍ବାଙ୍ଗୀନ ଉନ୍ନତି ପ୍ରଭୃତି କାର୍ଯ୍ୟକ୍ରମ ମଧ୍ୟ ହାତକୁ ନିଆଯାଇଛି । ଦେଶ ତଥା ରାଜ୍ୟର ବିଭିନ୍ନ ବୃକ୍ଷ ସମ୍ପଦର ସୁରକ୍ଷା ଏବଂ ଆବଶ୍ୟକ ଗବେଷଣା ନିମନ୍ତେ ଭୁବନେଶ୍ୱରସ୍ଥ ଏକାମ୍ର କାନନଠାରେ ଏକ ଜାତୀୟ ଗବେଷଣା କେନ୍ଦ୍ର ସ୍ଥାପନ କରାଯାଇଛି । (National Institute for Plant Biodiversity Conservation & Research) ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ ତାଙ୍କର ରେଗୁଲେଟୋରୀ କାର୍ଯ୍ୟକ୍ରମ କରିବା ସଂଗେ ସଙ୍ଗେ ଭବିଷ୍ୟତରେ ରାଜ୍ୟରେ ଶିଳ୍ପ ବିକାଶର ଯୋଜନା ପ୍ରସ୍ତୁତ କରାଯିବା ପାଇଁ କେତେକ ସମ୍ଭାବ୍ୟ ସ୍ଥାନର ବହନ କ୍ଷମତା ଆକଳନ କରିବା ନିମନ୍ତେ ପଦକ୍ଷେପ ନେଇଛନ୍ତି ।

## ଅର୍ଥନୈତିକ ବିକାଶରେ ଜଙ୍ଗଲ ଓ ପରିବେଶ ବିଭାଗର ପଦକ୍ଷେପ

ରାଜ୍ୟର ଅର୍ଥନୀତିରେ ଜଙ୍ଗଲ ସମ୍ପଦର ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ସରକାର ଏହାର ସୁରକ୍ଷା ତଥା ଅବକ୍ଷୟ ଜଙ୍ଗଲର ପୁନଃ ଉଦ୍ଧାର ପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି । ଯୌଥ ଜଙ୍ଗଲ ପରିଚାଳନା ଅଧୀନରେ ଜଙ୍ଗଲଜାତ ଦ୍ରବ୍ୟ ଉପରେ ସ୍ୱତ୍ୱପ୍ରଦାନ କରି ଗ୍ରାମ ନିକଟସ୍ଥ ଜଙ୍ଗଲର ସୁରକ୍ଷା, ପୁନଃ ଉଦ୍ଧାର ଓ ପରିଚାଳନାରେ ସ୍ଥାନୀୟ ଗ୍ରାମ୍ୟ ଗୋଷ୍ଠୀକୁ ସକ୍ରିୟ ଭାବେ ସଂଶ୍ଳିଷ୍ଟ କରିବା ପାଇଁ ରାଜ୍ୟ ସରକାର ନିଷ୍ପତ୍ତି ଗ୍ରହଣ କରିଅଛନ୍ତି । ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ରାଜ୍ୟ ସରକାର ଆନ୍ତର୍ଜାତିକ ସହାୟତାରେ (ସିଡ଼ା) ଏକ ନୂତନ ପ୍ରକଳ୍ପ କାର୍ଯ୍ୟକାରୀ କରୁଅଛନ୍ତି । ଯାହାଦ୍ୱାରା ସ୍ଥାନୀୟ ଗ୍ରାମ୍ୟ ଗୋଷ୍ଠୀ ଜଙ୍ଗଲଜାତ ଦ୍ରବ୍ୟ ଉପରେ ଉଚିତ ସ୍ୱତ୍ୱ ଅଧିକାର ପାଇପାରିବେ । ଗୁରୁତର ଜଙ୍ଗଲ ଅପରାଧ ଓ ପେଶାଦାର ଜଙ୍ଗଲ ଅପରାଧୀଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କରିବା ପାଇଁ ଓଡ଼ିଶା ଜଙ୍ଗଲ ଆଇନ ୧୮୭୨ ର ସଂଶୋଧନ ନିମନ୍ତେ ପଦକ୍ଷେପ ନିଆଯାଉଅଛି । ୱାର୍କିଙ୍ଗ୍ ପ୍ଲାନ ଦ୍ୱାରା ଅନୁମୋଦିତ ସୀମିତ ଗଛ କଟା ବ୍ୟତୀତ ଜଙ୍ଗଲ ଅଞ୍ଚଳରୁ ଗଛକଟା ଉପରେ ନିଷେଧାଦେଶ ବଳବତ୍ତର ରହିବ ।

ଜଙ୍ଗଲ ଉପରେ ନିର୍ଭର କରୁଥିବା ଗରିବ ଗ୍ରାମ୍ୟ ଶ୍ରମଜୀବୀ ଓ ଆଦିବାସୀମାନଙ୍କ ଉନ୍ନତି ନିମନ୍ତେ ବିଶ୍ୱଖାଦ୍ୟ କାର୍ଯ୍ୟକ୍ରମ ଗରିବ ଆଦିବାସୀମାନଙ୍କୁ ଖାଦ୍ୟ, ବିଶୁଦ୍ଧ ପାନୀୟ ଜଳ, ଚିକିତ୍ସା ଇତ୍ୟାଦିର ସୁବିଧା ଯୋଗାଇ ଦେବାପାଇଁ ତା ୩୧।୧୨।୨୦୦୦ ପର୍ଯ୍ୟନ୍ତ ବୃଦ୍ଧି କରାଯାଇଅଛି । ଅବାଧ ପ୍ରତି-ଯୋଗିତା ନିମନ୍ତେ ଲଘୁବନ ଜାତ ଦ୍ରବ୍ୟର ସଂଗ୍ରହ ପାଇଁ କୌଣସି ସଂସ୍ଥା କିମ୍ବା ବ୍ୟକ୍ତିଗତ ପଟ୍ଟାଧାରୀଙ୍କୁ ଏକ୍‌ଚାଟିଆ ବ୍ୟବସାୟ ଅଧିକାର ଦିଆଯାଇ ନାହିଁ । ଏହା ଦ୍ୱାରା ପ୍ରାଥମିକ ଲଘୁବନଜାତ ସଂଗ୍ରହକାରୀମାନେ ସଂଗ୍ରହ କରୁଥିବା ଦ୍ରବ୍ୟର ଉଚିତ ମୂଲ୍ୟ ପାଇପାରୁଛନ୍ତି । ତୋଳାଳିମାନଙ୍କ ସୁବିଧା ପାଇଁ ପ୍ରତି ୨୦ଟି କେନ୍ଦୁପତ୍ରର ସଂଗ୍ରହ ମୂଲ୍ୟ ୧୩ ପଇସାକୁ ବୃଦ୍ଧି କରାଯାଇଅଛି ।

କେ.ବି.କେ. ଜିଲ୍ଲାରେ ଏନ୍.ଡି. ଏ.ସି ଯୋଜନା ମାଧ୍ୟମରେ ଜଙ୍ଗଲ ପରିସୀମା ବୃଦ୍ଧି ନିମନ୍ତେ ବୃକ୍ଷରୋପଣର ଏକ ବିସ୍ତୃତ କାର୍ଯ୍ୟକାରୀ ଯୋଜନା ପ୍ରସ୍ତୁତ କରାଯାଇଅଛି ।

ରାଜ୍ୟର ସମୃଦ୍ଧ ଜୀବମଣ୍ଡଳର ବିଭିନ୍ନତା ଏବଂ ବନ୍ୟ ଜନ୍ତୁର ସୁରକ୍ଷା ପାଇଁ ଦୃଢ଼ ପଦକ୍ଷେପ ନିଆଯାଇଅଛି । ସମୁଦ୍ର କଇଁଛମାନଙ୍କ ସୁରକ୍ଷା ନିମନ୍ତେ ଗହିରମଥାକୁ ଏକ ସାମୁଦ୍ରିକ ଜାତୀୟ ଉଦ୍ୟାନ ଭାବେ ଘୋଷଣା କରାଯାଇଅଛି ।

# ସାଧାରଣ ପ୍ରଶାସନ ବିଭାଗର ସଫଳତା

ରାଜ୍ୟରେ ଏକ ନିର୍ମଳ, ଦାୟିତ୍ୱପୂର୍ଣ୍ଣ ତଥା ଫଳପ୍ରଦ ଶାସନ ବ୍ୟବସ୍ଥା ପ୍ରଚଳନ ନିମନ୍ତେ ମୁଖ୍ୟମନ୍ତ୍ରୀମାନଙ୍କ ସମ୍ମିଳନୀରେ ନିଆଯାଇଥିବା ପ୍ରସ୍ତାବ ଅନୁସାରେ 'ନାଗରିକ ସନନ୍ଦ' ଉପଯୁକ୍ତ ଭାବରେ କାର୍ଯ୍ୟକାରୀ କରିବା ନିମନ୍ତେ ସମସ୍ତ ପ୍ରକାର ପଦକ୍ଷେପ ଗ୍ରହଣ କରାଯାଇଅଛି ।

ରାଜ୍ୟରେ ଏକ ଉତ୍ତରଦାୟୀ ଓ ସମ୍ବେଦନଶୀଳ ସରକାର କାର୍ଯ୍ୟକାରୀ କରିବା ନିମନ୍ତେ ଉପଯୁକ୍ତ ଯୋଜନା ପ୍ରସ୍ତୁତ କରିବା ପାଇଁ ମୁଖ୍ୟ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ କମିଟି ଗଠନ କରାଯାଇଅଛି ।

ଶାସନ କ୍ଷେତ୍ରରେ ଦୁର୍ନୀତି ରୋକିବା ପାଇଁ ଆୟ ତୁଳନାରେ ଅଧିକ ସମ୍ପତ୍ତି ଠୁଳ କରିବା ଅଭିଯୋଗରେ ୫୮ ଜଣ ପ୍ରଥମ ଶ୍ରେଣୀ, ୫୫ ଜଣ ଦ୍ୱିତୀୟ ଶ୍ରେଣୀ, ୧୦୪ ଜଣ ତୃତୀୟ ଶ୍ରେଣୀ ଓ ୩ ଜଣ ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ବିରୁଦ୍ଧରେ ମୋଟ ୨୨୫ ଗୋଟି ମୋକଦ୍ଦମା ରୁଜୁ କରାଯାଇଅଛି ତଥା ଟ୍ରିପ୍ କେସ୍‌ରେ ୧୫ ଜଣ ପ୍ରଥମ ଶ୍ରେଣୀ, ୪୦ ଜଣ ଦ୍ୱିତୀୟ ଶ୍ରେଣୀ ତଥା ୨୬୦ ଜଣ ତୃତୀୟ ଶ୍ରେଣୀ କର୍ମଚାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଅଛି । ଅଦାଲତରେ ଜଣେ ପ୍ରଥମ ଶ୍ରେଣୀ, ଜଣେ ଦ୍ୱିତୀୟ ଶ୍ରେଣୀ ତଥା ୧୩ ଜଣ ତୃତୀୟ ଶ୍ରେଣୀ କର୍ମଚାରୀଙ୍କୁ ଦଣ୍ଡିତ କରାଯାଇଅଛି । ଏହା ବ୍ୟତୀତ ବିକ୍ରୀକର ଫାଙ୍କି ମାମଲାରେ ୩୭୪୨ ଗୋଟି ମାମଲାରେ ମୋଟ ୩,୬୩,୯୩,୦୧୭ ଟଙ୍କା ଆଦାୟ କରାଯାଇଅଛି ।

ପ୍ରଶାସନିକ ସେବାକୁ ଦକ୍ଷ ଓ ଲୋକାଭିମୁଖୀ କରିବା ପାଇଁ ଗୋପବନ୍ଧୁ ପ୍ରଶାସନ ଏକାଡେମୀରେ ଅଧିକାରୀମାନଙ୍କୁ ନିୟମିତ ତାଲିମ ଦିଆଯାଉଅଛି । ଗତ ଚାରିବର୍ଷ ମଧ୍ୟରେ ୫୦୧ ଜଣ ପ୍ରଶାସନିକ ସେବା ଅଧିକାରୀ ତଥା ୨୫ ଜଣ ଭାରତୀୟ ପ୍ରଶାସନିକ ସେବା ଅଧିକାରୀଙ୍କୁ ତଥା ୬ ଗୋଟି ରାଜ୍ୟର ୧୯ ଜଣ ନିର୍ବାଚନ ଅଧିକାରୀଙ୍କୁ ଏଠାରେ ତାଲିମ ପ୍ରଦାନ କରାଯାଇଅଛି ।

ରାଜଧାନୀର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଗତ ଚାରିବର୍ଷ ମଧ୍ୟରେ ୬ କୋଟି ଟଙ୍କା ବ୍ୟୟ ବରାଦ କରାଯାଇ ଜଳ ଯୋଗାଣ, ରାଜପଥ ସଂପ୍ରସାରଣ, ସାମାଜିକ ବନୀକରଣ, ହ୍ରଦ ନିର୍ମାଣ ପ୍ରଭୃତି କାର୍ଯ୍ୟ ତ୍ୱରାନ୍ୱିତ କରାଯାଇ ରାଜଧାନୀ ଭୁବନେଶ୍ୱରକୁ ଏକ ସୁନ୍ଦର ସହର ରୂପେ ଗଢ଼ି ତୋଳା ଯାଉଅଛି । ଏ ପର୍ଯ୍ୟନ୍ତ ରାଜଧାନୀରେ ମୋଟ ୧୮ ଗୋଟି ପାର୍କ ଓ ବଗିଚା ମଧ୍ୟ ସୃଷ୍ଟି କରାଯାଉଅଛି ।

ସର୍ବସାଧାରଣଙ୍କ ସୁବିଧା ନିମନ୍ତେ ରାଜଧାନୀରେ ୧୨୦୮ ଗୋଟି ବାସୋପଯୋଗୀ ପ୍ଲଟ, ୭୪୨ ଗୋଟି ଦୋକାନ ପାଇଁ ଜମି ଯୋଗାଇ ଦିଆଯାଇଛି ଓ ଅନେକ ହୋଟେଲ, ନର୍ସିଂହୋମ, ଧର୍ମାନୁଷ୍ଠାନ, ଶିଳ୍ପ ଉଦ୍ୟୋଗ ପ୍ରଭୃତି ଆରମ୍ଭ କରିବା ପାଇଁ ପ୍ରୋତ୍ସାହନ ଦିଆଯାଉଅଛି । ଅଦ୍ୟାବଧି ଏ ବାବଦରେ ୧୧୪.୭୧ ଏକର ଜମି ବଣ୍ଟନ କରା ସାରିଲାଣି । ସେହିପରି ସରକାରୀ କର୍ମଚାରୀମାନଙ୍କ ସୁବିଧା ପାଇଁ ୩୫୦୦ ରୁ ଊର୍ଦ୍ଧ୍ୱ ବାସଗୃହ ବଣ୍ଟନ କରାଯାଉଅଛି ।

ସମସ୍ତ ସରକାରୀ କାର୍ଯ୍ୟାଳୟରେ କର୍ମଚାରୀମାନଙ୍କ ନିୟମିତ ଉପସ୍ଥାନ ଏବଂ ସମୟାନୁବର୍ତ୍ତିତା ସୁନିଶ୍ଚିତ କରିବା ନିମନ୍ତେ ତଥା ସରକାରୀ କର୍ମଚାରୀମାନଙ୍କ ବଦଳି ନିରପେକ୍ଷ ଓ ସମୟଭିତ୍ତିକ ଭାବରେ କରିବା ପାଇଁ ସରକାରଙ୍କ ତରଫରୁ ନିର୍ଦ୍ଦେଶନାମା ପ୍ରକାଶ କରାଯାଇଅଛି ।

ରାଜ୍ୟସ୍ତରରେ ସରକାରୀ ଭାଷା ରୂପେ ଓଡ଼ିଆ ଭାଷାର ବ୍ୟବହାର ବହୁଳ ପ୍ରସାର କରିବା ନିମନ୍ତେ ସମସ୍ତ ପ୍ରକାର ପଦକ୍ଷେପ ଗ୍ରହଣ କରାଯାଇଅଛି ।

ରାଜ୍ୟରେ ବିଭିନ୍ନ କ୍ଷେତ୍ରରେ ଅସାଧାରଣ ପାରଦର୍ଶିତା ଦର୍ଶାଇଥିବା ଉପଯୁକ୍ତ ବ୍ୟକ୍ତିମାନଙ୍କୁ ଚିହ୍ନଟ କରାଯାଇ ଭାରତ ସରକାରଙ୍କୁ ସେମାନଙ୍କୁ ପଦ୍ମ, ପଦ୍ମଶ୍ରୀ ଏବଂ ପଦ୍ମ ବିଭୂଷଣ ଉପାଧିରେ ଭୂଷିତ କରିବା ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କ ଜରିଆରେ ସୁପାରିଶ କରାଯାଇଛି । ଗତବର୍ଷ ଦୁଇଜଣ ପଦ୍ମଶ୍ରୀ ଉପାଧିରେ ଭୂଷିତ ହୋଇଛନ୍ତି ।

□□□

# କ୍ଷୁଦ୍ର ଶିଳ୍ପର ବିକାଶ

୧୯୯୮ ମସିହା ନଭେମ୍ବର ମାସରେ ରାଜ୍ୟରେ ସର୍ବମୋଟ ୩୪୫ ଗୋଟି କ୍ଷୁଦ୍ରଶିଳ୍ପ ସ୍ଥାପିତ ହୋଇଅଛି । ଉକ୍ତ ଶିଳ୍ପ ସ୍ଥାପନରେ ଟ.୬୮୭.୧୯ ଲକ୍ଷ ପୁଞ୍ଜି ବିନିଯୋଗ କରାଯାଇଅଛି । ୨୯୨୩ ଜଣ ଲୋକଙ୍କୁ ଉକ୍ତ ସଂସ୍ଥାମାନଙ୍କରେ ନିଯୁକ୍ତି ଦିଆଯାଇଅଛି ।

ଉତ୍ପାଦନକ୍ଷମ ପ୍ରମାଣପତ୍ର ପ୍ରଦାନ: ଉପରୋକ୍ତ ସମୟସୀମା ମଧ୍ୟରେ ଶିଳ୍ପ ନିର୍ଦ୍ଦେଶକଙ୍କ ଦ୍ୱାରା ୩ଗୋଟି ଶିଳ୍ପାନୁଷ୍ଠାନକୁ ଉତ୍ପାଦନକ୍ଷମ ପ୍ରମାଣପତ୍ର ପ୍ରଦାନ କରାଯାଇଅଛି ।

ବିକ୍ରୀକର ଛାଡ଼ ପ୍ରମାଣ ପତ୍ର: ଉପରୋକ୍ତ ସମୟସୀମା ମଧ୍ୟରେ ଶିଳ୍ପ ନିର୍ଦ୍ଦେଶକଙ୍କ ଦ୍ୱାରା ୪ଗୋଟି ଶିଳ୍ପ ସଂସ୍ଥାକୁ ବିକ୍ରୀକର ଛାଡ଼ ସଂକ୍ରାନ୍ତୀୟ ଯୋଗ୍ୟତା ଭିତ୍ତିକ ପ୍ରମାଣପତ୍ର ପ୍ରଦାନ କରାଯାଇଅଛି ।

କଞ୍ଚାମାଲ ଯୋଗାଣ: ଉପରୋକ୍ତ ସମୟସୀମା ମଧ୍ୟରେ ଶିଳ୍ପାନୁଷ୍ଠାନଗୁଡ଼ିକୁ ଭିନ୍ନ ଭିନ୍ନ କଞ୍ଚାମାଲ ଯୋଗାଇବା ପାଇଁ ନିର୍ଦ୍ଦିଷ୍ଟ ବିଭାଗର କର୍ତ୍ତୃପକ୍ଷମାନଙ୍କୁ ନିମ୍ନଲିଖିତ ମତେ ସୁପାରିଶ କରାଯାଇଅଛି ।

| ଶିଳ୍ପ ସଂସ୍ଥାର ନାମ ଓ ସଂଖ୍ୟା | କଞ୍ଚାମାଲର ନାମ ଓ ପରିମାଣ | ସୁପାରିଶ କରାଯାଇଥିବା କର୍ତ୍ତୃପକ୍ଷଙ୍କ ଠିକଣା |
|---|---|---|
| ୧ | ୨ | ୩ |
| ୨ଗୋଟି କ୍ଷୁଦ୍ରଶିଳ୍ପ | ୧୦୦ ମେଟ୍ରିକଟନ୍ ବ୍ୟବହୃତ ରିଫ୍ରାକ୍ଟରୀ ଇଟା | ବରିଷ୍ଠ ପରିଚାଳକ (ବିକ୍ରିବଟା) ରାଉରକେଲା ଇସ୍ପାତ କାରଖାନା, ରାଉରକେଲା |
| ମେସର୍ସ ଉତ୍କଳ ହୋମିଓ ଲାବ୍ରୋଟୋରୀ ବି-୨୮, ଶିଳ୍ପାଞ୍ଚଳ, ରସୁଲଗଡ଼, ଭୁବନେଶ୍ୱର | ୫୦୦୦ ବି.ଏଲ୍ ରେକ୍ଟିଫାଏଡ୍ ସ୍ପିରିଟ | ଅବକାରୀ କମିଶନର, ଓଡ଼ିଶା, କଟକ |
| ୧୧୫ ଗୋଟି କ୍ଷୁଦ୍ରଶିଳ୍ପ | ୫,୭୫୦ ମେଟ୍ରିକ ଟନ୍ ରାଉରକେଲା ଇସ୍ପାତ କାରଖାନାର ଲୌହ ଓ ଇସ୍ପାତ ଟୁକୁଡ଼ା | ବରିଷ୍ଠ ପରିଚାଳକ (ବିକ୍ରିବଟା) ରାଉରକେଲା ଇସ୍ପାତ କାରଖାନା, ରାଉରକେଲା |
| ୧୦ ଗୋଟି କ୍ଷୁଦ୍ର ଶିଳ୍ପ | ୭୩,୫୩୪ ମେଟ୍ରିକ୍ ଟନ୍ କୋଇଲା (ରାସ୍ତାଯୋଗେ) | ମହାନଦୀ କୋଲ୍ଡ଼ ଫିଲ୍ଡ, ସମ୍ବଲପୁର |
| ୩ଗୋଟି ବୃହତ ଶିଳ୍ପ | ୮୦୭୩୬ ମେଟ୍ରିକ୍ ଟନ୍ କୋଇଲା (ରେଳ ଯୋଗେ) | ନିର୍ବାହୀ ନିର୍ଦ୍ଦେଶକ, ରେଳ ଯାତାୟତ |

ଚଚଚ

# ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା

୧୯୯୮ ମସିହା ନଭେମ୍ବର ମାସ ସୁଦ୍ଧା ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନାର ୧୯୯୭-୯୮ ମସିହା କାର୍ଯ୍ୟକ୍ରମର ସଫଳତା ସମ୍ପର୍କରେ ତଥ୍ୟ ନିମ୍ନରେ ପ୍ରଦାନ କରାଗଲା ।

| | | |
|---|---|---|
| କେତେଜଣ ହିତାଧିକାରୀଙ୍କୁ ଋଣ ପ୍ରଦାନ କରାଯାଇଅଛି | : | ୫୩ ଜଣ |
| ଋଣର ପରିମାଣ | : | ଟ.୧୮୦.୦୬ ଲକ୍ଷ |
| କେତେଗୋଟି ପ୍ରକଳ୍ପ ସ୍ଥାପିତ ହୋଇଅଛି | : | ୩୦୪ ଗୋଟି |
| କେତେଜଣ ବ୍ୟକ୍ତିଙ୍କୁ ନିଯୁକ୍ତି ପ୍ରଦାନ କରାଯାଇଅଛି | : | ୬୩୮ ଜଣ |

# ରାଜ୍ୟରେ ଜଳସେଚନ କ୍ଷେତ୍ରରେ ପ୍ରଗତି

ଓଡ଼ିଶାର ମୋଟ୍ ୬୬ ଲକ୍ଷ ହେକ୍ଟର ଚାଷପୋଯୋଗୀ ଜମି ମଧ୍ୟରୁ ପ୍ରାୟ ୫୯ ଲକ୍ଷ ହେକ୍ଟର ଜମିକୁ ଜଳସେଚିତ କରାଯାଇପାରିବ । ସ୍ୱାଧୀନତା ପ୍ରାପ୍ତି ବେଳକୁ ଓଡ଼ିଶାରେ ଜଳସେଚନ କ୍ଷେତ୍ରରେ ଆଶାନୁରୂପ ଅଗ୍ରଗତି ହୋଇନଥିଲା । ଓଡ଼ିଶା କେନାଲ ପ୍ରଣାଳୀ, ଋଷିକୁଲ୍ୟା କେନାଲ ପ୍ରଣାଳୀ ସହ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଥିବା ଅଳ୍ପ ସଂଖ୍ୟକ ମଧ୍ୟମ ଜଳସେଚନ ପ୍ରକଳ୍ପ ଜରିଆରେ ମାତ୍ର ୧,୭୬,୯୨୦ ହେକ୍ଟର ଜମି ପାଇଁ ଜଳସେଚନର ସୁବିଧା ଯୋଗାଇ ଦିଆଯାଇ ପାରୁଥିଲା । ସ୍ୱାଧୀନତା ପରବର୍ତ୍ତୀ କାଳରେ ଜଳସେଚନର ବିକାଶ ନିମିତ୍ତ ପ୍ରଥମ ପଦକ୍ଷେପ ସ୍ୱରୂପ ହୀରାକୁଦ ବନ୍ଧର ନିର୍ମାଣ ଓ ୩୮ ଗୋଟି ମଧ୍ୟମ ସେଚ ପ୍ରକଳ୍ପର ନିର୍ମାଣ ସମ୍ପୂର୍ଣ୍ଣ କରାଯାଇଛି । ଏହି ପ୍ରକଳ୍ପଗୁଡ଼ିକ ପ୍ରଥମ ଓ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ନିର୍ମାଣ କରାଯାଇ ୧,୧୭,୦୮୦ ହେକ୍ଟର ଜମିକୁ ଜଳସେଚିତ କରାଯାଇପାରିଛି । ମହାନଦୀ ତ୍ରିକୋଣ ଭୂମି-୨ୟ ପର୍ଯ୍ୟାୟ ଓ କିଛି ମଧ୍ୟମ ସେଚ ପ୍ରକଳ୍ପର କାର୍ଯ୍ୟାନ୍ୱୟନ ଏ ଦିଗରେ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ । ଚତୁର୍ଥ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ଉପରୋକ୍ତ ପ୍ରକଳ୍ପଗୁଡ଼ିକ ସମ୍ପୂର୍ଣ୍ଣ କରାଯାଇ ୩,୦୧,୬୨୦ ହେକ୍ଟର ଅଧିକ ଜମି ପାଇଁ ସେଚ ସୁବିଧା କରାଯାଇଅଛି । ବର୍ତ୍ତମାନର ସରକାର ଦେଶକୁ ଶସ୍ୟ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବୀ କରିବା ପାଇଁ ଅଧିକ ପୁଞ୍ଜି ବିନିଯୋଗ କରି ଅଧିକରୁ ଅଧିକ ଜମିକୁ ସେଚ କ୍ଷମ କରିବା ପାଇଁ ଚେଷ୍ଟିତ । ସ୍ୱାଧୀନତା ପ୍ରାପ୍ତି ପରଠାରୁ ରାଜ୍ୟରେ ୨୫୬୪.୦୯ କୋଟି ଟଙ୍କା ବ୍ୟୟ କରାଯାଇ ୧୦ ଗୋଟି ବୃହତ ଓ ୪୬ ଗୋଟି ମଧ୍ୟମ ସେଚ ପ୍ରକଳ୍ପ ଜରିଆରେ ପ୍ରାୟ ୮,୯୬,୪୯୦ ହେକ୍ଟର ଜମି ପାଇଁ ସେଚ କ୍ଷମତା ସୃଷ୍ଟି କରାଯାଇଛି ।

ପ୍ରାକ୍ ସ୍ୱାଧୀନତା କାଳରେ ଆମ ରାଜ୍ୟରେ ସରକାରଙ୍କ ତରଫରୁ କୌଣସି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ କାର୍ଯ୍ୟକାରୀ ହେଉନଥିଲା । ସ୍ୱାଧୀନତା ପରେ କ୍ଷୁଦ୍ର ଓ ଉଠା ଜଳସେଚନ ପ୍ରକଳ୍ପ ଜରିଆରେ ସେଚ ସୁବିଧା ଯୋଗାଇଦେବା ନିମନ୍ତେ ପଦକ୍ଷେପ ନିଆଯାଇଅଛି । ୧୯୪୭ରୁ ୧୯୯୭ ମସିହା ମଧ୍ୟରେ ୨୬୩୨ ଗୋଟି କ୍ଷୁଦ୍ର ଓ ୧୪,୪୧୮ ଗୋଟି ଉଠା ଜଳସେଚନ ପ୍ରକଳ୍ପ ସମ୍ପୂର୍ଣ୍ଣ କରାଯାଇ ଯଥାକ୍ରମେ ୪,୨୨,୭୯୬ ହେକ୍ଟର ଓ ୩,୧୪,୨୫୦ ହେକ୍ଟର ଜମି ପାଇଁ ସେଚ କ୍ଷମତା ସୃଷ୍ଟି କରାଯାଇଛି । ଏତଦ୍ ବ୍ୟତୀତ ଅନ୍ୟାନ୍ୟ ଅଣ ପାରମ୍ପରିକ ସୂତ୍ର ଯଥା– ଡଗ୍‌ୱେଲ, ଜଳଅମଳ ପ୍ରକଳ୍ପ ଇତ୍ୟାଦି ଜରିଆରେ ୬,୩୦,୦୦୦ ହେକ୍ଟର ଜମିପାଇଁ ସେଚ ସୁବିଧା ଯୋଗାଇ ଦିଆଯାଇଛି । ତେଣୁ ବିଗତ ୫୦ବର୍ଷ ମଧ୍ୟରେ ସମୁଦାୟ ୨୧,୬୩,୫୩୬ ହେକ୍ଟର ଜମିପାଇଁ ସେଚ ସାମର୍ଥ୍ୟ ସୃଷ୍ଟି କରାଯାଇଛି ।

ସେଚ ସୁବିଧାର ସଦୁପଯୋଗ ନିମିତ୍ତ ସରକାରଙ୍କ ଦ୍ୱାରା ୮୦,୪୧୮ ହେକ୍ଟର ଜମିପାଇଁ କ୍ଷେତ୍ର ନିଷ୍କାସନ ନାଳୀ ଓ ୩,୪୧,୯୭୫ ହେକ୍ଟର ଜମିପାଇଁ ସେଚ ନାଳୀ ନିର୍ମାଣ କରାଯାଇଛି । ସେହିପରି ୯୪,୪୮୭ ଜଣ କୃଷକଙ୍କୁ କୃଷି ଉତ୍ପାଦନ ବୃଦ୍ଧି ନିମିତ୍ତ ଆଧୁନିକ ପ୍ରଣାଳୀରେ ଫସଲ ଉତ୍ପାଦନ, ଜଳର ସୁପରିଚାଳନା ବିଷୟରେ ତାଲିମ ପ୍ରଦାନ କରାଯାଇଛି ।

ରାଜ୍ୟର ଚାଷଜମିକୁ ବନ୍ୟା ପ୍ରକୋପରୁ ରକ୍ଷା କରିବା ପାଇଁ ୧୫୮୮ କି.ମି. ବୃହତ ଆଡ଼ିବନ୍ଧ, ୨୦୮୪ କି.ମି. କୃଷି ଆଡ଼ିବନ୍ଧ, ୧୬୧୮ କି.ମି. ଲୁଣା ବନ୍ଧର ନିର୍ମାଣ କରାଯାଇଛି । ଏତଦ୍ ବ୍ୟତୀତ ଜଳ ନିଷ୍କାସନ ପ୍ରଣାଳୀ, ଜରନାଳୀ, ନଦୀବନ୍ଧ ଜଳଭଣ୍ଡାର ଓ ଆନିକଟ ନିର୍ମାଣ କରି ବନ୍ୟା ପ୍ରତିରୋଧ କ୍ଷେତ୍ରରେ ସଫଳତା ହାସଲ କରାଯାଇଛି ।

❑❑❑

# ଗୃହ ଓ ନଗର ଉନ୍ନୟନ ବିଭାଗର ସଫଳତା

ସହରାଞ୍ଚଳ ଅଧିବାସୀମାନଙ୍କର ବିକାଶ ତଥା ସେମାନଙ୍କର ଉତ୍ପାଦିକା ଓ ପରିଚାଳନା ଶକ୍ତିର ଅଭିବୃଦ୍ଧି, ଦାରିଦ୍ର୍ୟ ଦୂରୀକରଣ, ସମସ୍ତଙ୍କ ପାଇଁ କଳିଙ୍ଗ କୁଟୀର ଯୋଜନା ମାଧ୍ୟମରେ ଅଗ୍ନି ନିରୋଧକ ଆଶ୍ରୟସ୍ଥଳର ବ୍ୟବସ୍ଥା, ସ୍ୱୟଂ ସାହାଯ୍ୟ ଗୋଷ୍ଠୀ ପରିଚାଳନା ଭିତ୍ତିକ ଆଭିମୁଖ୍ୟ, ସହରାଞ୍ଚଳ ଦରିଦ୍ର ଲୋକମାନଙ୍କର ଜୀବନ ଧାରଣ ମାନର ଉନ୍ନତି, ସ୍ଥାନୀୟ ଜଳ ସମ୍ପଦର ବ୍ୟବହାର ଓ ପୂର୍ଣ୍ଣ ବିନିଯୋଗ ଏବଂ ପୌରାଞ୍ଚଳ ଅଧିବାସୀମାନଙ୍କର ଅନ୍ୟାନ୍ୟ ଆବଶ୍ୟକତା ପୂରଣ ପାଇଁ ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗ ସଙ୍କଳ୍ପବଦ୍ଧ ।

କଳିଙ୍ଗ କୁଟୀର ଯୋଜନା ମାଧ୍ୟମରେ ସମସ୍ତଙ୍କ ପାଇଁ ଆଶ୍ରୟସ୍ଥଳର ବ୍ୟବସ୍ଥା କରିବା ପାଇଁ ଓଡ଼ିଶା ରାଜ୍ୟ ଗୃହ ନିର୍ମାଣ ବୋର୍ଡ଼ ବ୍ୟତୀତ ଓଡ଼ିଶା ଗ୍ରାମ୍ୟ ଗୃହ ନିର୍ମାଣ ଉନ୍ନୟନ ନିଗମ ନାମରେ ଅନ୍ୟ ଏକ ସ୍ୱତନ୍ତ୍ର ସାଧାରଣ ସୀମିତ କମ୍ପାନୀ ପ୍ରତିଷ୍ଠା କରାଯାଇ ଗୋଷ୍ଠୀ ପରିଚାଳନା ସମୂହ ଜରିଆରେ ସହଜ ଉପାୟରେ ଅର୍ଥ ବ୍ୟବସ୍ଥା, ଜ୍ଞାନକୌଶଳ ଏବଂ ପରିଚାଳନା ଦକ୍ଷତା ଇତ୍ୟାଦି ଯୋଗାଇ ଦେଇ "ସହାୟକ"ର ଭୂମିକା ନିର୍ବାହ କରାଯାଉଅଛି । ଗ୍ରାମାଞ୍ଚଳରେ ନିମ୍ନ ଆୟକାରୀଙ୍କ ନିମନ୍ତେ ୯୮୩ ଓ ଆର୍ଥିକ ଦୁର୍ବଳ ଶ୍ରେଣୀଙ୍କ ନିମନ୍ତେ ୧୫୨୧ ଟି ବାସଗୃହ ୧୯୯୭-୯୮ ମସିହାରେ ସମ୍ପୂର୍ଣ୍ଣ କରାଯାଇଛି । ଏଥିସହିତ ୧୭୬ଟି ଅଗ୍ନି ପ୍ରପୀଡ଼ିତ ପରିବାରଙ୍କୁ ପୁନଃ ନିର୍ମାଣ ନିମନ୍ତେ ଅନୁଦାନ ଦିଆଯାଇଛି ।

୧୯୯୮-୯୯ ମସିହାରେ ଟ.୫୭.୬୮ କୋଟି ଟଙ୍କା ଅଟକଳରେ ଭୁବନେଶ୍ୱର, କଟକ ଓ ରାଉରକେଲା ସହରମାନଙ୍କରେ ବହୁସଂଖ୍ୟାରେ ଗୃହ ନିର୍ମାଣ ନିମନ୍ତେ ଯୋଜନା ପ୍ରସ୍ତୁତ କରାଯାଇଛି । ଉକ୍ତ ଯୋଜନା ଅନୁଯାୟୀ ଭୁବନେଶ୍ୱରର ଆଇଗିଣିଆ ଓ ମାଛି ସାହିରେ ୯୮୩ ଟି ବାସଗୃହ ୪୬.୦୦ କୋଟି ଟଙ୍କାରେ ତିଆରି କରିବାର ବ୍ୟବସ୍ଥା କରାଯାଉଅଛି । ୧୯୯୮-୯୯ ଆର୍ଥିକ ବର୍ଷ ପାଇଁ ଗୃହ ନିର୍ମାଣ ପାଇଁ ଲେଖାନୁଦାନ ବଜେଟରେ ଟ.୧୮୨୪.୦୦ ଲକ୍ଷ ଅର୍ଥ ବ୍ୟବସ୍ଥା ରହିଥିଲା । ଏହି ଅର୍ଥରେ କଳିଙ୍ଗ କୁଟୀର ଯୋଜନା ଏବଂ ସମନ୍ୱିତ ଗୃହ ନିର୍ମାଣ ଯୋଜନାରେ ଯଥାକ୍ରମେ ୩୦୭୮ ଏବଂ ୧୨୦୦୦ ହିତାଧିକାରୀ ଉପକୃତ ହେବେ ।

ପୌରାଞ୍ଚଳର ଦରିଦ୍ର ଲୋକଙ୍କର ସାମଗ୍ରିକ ଉନ୍ନତି ନିମିତ୍ତ ନେହେରୁ ରୋଜଗାର ଯୋଜନା, ସହରାଞ୍ଚଳ ବସ୍ତି ପରିବେଶ ଉନ୍ନୟନ ଯୋଜନା, ସହରାଞ୍ଚଳ ମୌଳିକ ସେବା କାର୍ଯ୍ୟକ୍ରମ ଏବଂ ପ୍ରଧାନମନ୍ତ୍ରୀଙ୍କ ସମନ୍ୱିତ ସହରାଞ୍ଚଳ ଦାରିଦ୍ର୍ୟ ନିରାକରଣ କାର୍ଯ୍ୟକ୍ରମ ଯୋଜନା ଆଦି କାର୍ଯ୍ୟକାରୀ କରାଯାଉଅଛି । ସହରାଞ୍ଚଳ ଦରିଦ୍ର ଲୋକଙ୍କ ଜୀବନର ମାନ ବର୍ଦ୍ଧନ ଓ ସମ୍ମାନାର୍ଥେ ଅନୁକୂଳ ପରିବେଶ ସୃଷ୍ଟି କରିବା ପାଇଁ ଗୋଷ୍ଠୀ ପରିଚାଳନା ଆଭିମୁଖ୍ୟ ଗ୍ରହଣ କରୁଅଛି ।

ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାଗୁଡ଼ିକ ଏକାଠିକରି ସ୍ୱର୍ଣ୍ଣଜୟନ୍ତୀ ସହରୀ ରୋଜଗାର ଯୋଜନା ନାମରେ ଏକ ବଳିଷ୍ଠ କର୍ମ ନିଯୁକ୍ତି ଭିତ୍ତିକ ଯୋଜନା ୧.୧୨.୯୭ ଠାରୁ କାର୍ଯ୍ୟକାରୀ କରାଯାଉଛି । ଏହି ଯୋଜନା ରାଜ୍ୟର ସମସ୍ତ ସହରରେ କାର୍ଯ୍ୟକାରୀ କରାଯାଉଛି ଓ ଯୋଜନା ବ୍ୟୟ ବରାଦର ଶତକଡ଼ା ୭୫ଭାଗ ଅର୍ଥ କେନ୍ଦ୍ର ସରକାର ଅନୁଦାନ ଆକାରରେ ଯୋଗାଉଛନ୍ତି । ପୌରାଞ୍ଚଳ ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକମାନଙ୍କୁ କ୍ଷୁଦ୍ର ଉଦ୍ୟୋଗ ପ୍ରତିଷ୍ଠା ମାଧ୍ୟମରେ ଆତ୍ମନିଯୁକ୍ତି ଓ ଶ୍ରମଭିତ୍ତିକ କର୍ମନିଯୁକ୍ତି ଯୋଗାଇ ଦେବା ଏହି ଯୋଜନାର ମୁଖ୍ୟ ଲକ୍ଷ୍ୟ । ମହିଳାମାନଙ୍କୁ ସ୍ୱାବଲମ୍ବୀ କରାଇବା, ଗୋଷ୍ଠୀ ବିକାଶ, ନିମ୍ନରୁ ଉର୍ଦ୍ଧ୍ୱାଭିମୁଖୀ ଯୋଜନା, ଅତ୍ୟାବଶ୍ୟକ ଶିକ୍ଷା, ସ୍ୱାସ୍ଥ୍ୟ ଓ ପରିମଳ ସେବା, ଶିଶୁ ଓ ମହିଳାମାନଙ୍କ ଯତ୍ନ ସର୍ବୋପରି ସାମାଜିକ ସୁରକ୍ଷା ଯୋଗାଇ ଦେବା ଇତ୍ୟାଦି ଏହି ଯୋଜନାର ମୁଖ୍ୟ ବୈଶିଷ୍ଟ୍ୟ । ଗତ ବର୍ଷ ରାଜ୍ୟର ପ୍ରାୟ ୩ଲକ୍ଷ ସହରାଞ୍ଚଳ ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକ ଏହି ଯୋଜନାରେ ଉପକୃତ ହେବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । କଟକ ସହରର ବସ୍ତି ଉନ୍ନୟନ ପ୍ରକଳ୍ପ ୬୦ କୋଟି ଟଙ୍କା ବ୍ୟୟ ଅଟକଳରେ ୧୯୯୭-୯୮ ମସିହା ଠାରୁ ୫ବର୍ଷ କାର୍ଯ୍ୟ ଚାଲୁ ରଖିବାକୁ ବରିଆପାରି ଉନ୍ନୟନ ପ୍ରଶାସନ (ODA) ଦ୍ୱାରା ଅନୁମୋଦନ ଲାଭକରିଅଛି । ଏହାଫଳରେ ୧ଲକ୍ଷ ୪୦ହଜାର ବସ୍ତିବାସିନ୍ଦା ଉକ୍ତ ଯୋଜନାରେ ଉପକୃତ ହେବେ ।

ସହରାଞ୍ଚଳ ଅଧିବାସୀଙ୍କ ଜୀବନଧାରାର ମାନ ଅଭିବୃଦ୍ଧି ସକାଶେ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟର ସଫଳ ରୂପାୟନ ପାଇଁ ଗତ ବର୍ଷ ୭ଗୋଟି ଉନ୍ନୟନ କର୍ତ୍ତୃପକ୍ଷ, ୮ଗୋଟି ସହରାଞ୍ଚଳ ଉନ୍ନୟନ ସଂସ୍ଥା ଏବଂ ୩୨ଗୋଟି ସହରାଞ୍ଚଳ ସ୍ୱତନ୍ତ୍ର ଯୋଜନା କର୍ତ୍ତୃପକ୍ଷ ଗଠନ କରାଯାଇଛି । ଏହି ଉନ୍ନୟନ କର୍ତ୍ତୃପକ୍ଷଗୁଡ଼ିକ ସେମାନଙ୍କ ନିଜ ନିଜ ମାଷ୍ଟର ପ୍ଲାନ ଅଞ୍ଚଳରେ ବିଭିନ୍ନ ଉନ୍ନୟନ ଯୋଜନା, ଗୃହ ବ୍ୟବସ୍ଥା ଯୋଜନା, ବାଣିଜ୍ୟିକ ଯୋଜନାମାନ ଜନସାଧାରଣଙ୍କର ହିତ ସାଧନ ନିମନ୍ତେ ସଫଳ ରୂପାୟନ କରୁଛନ୍ତି । ୧୧ଗୋଟି ସହରରେ ଦିଗ ମାଷ୍ଟର ପ୍ଲାନ ପ୍ରସ୍ତୁତ କରିବା ଯୋଜନା ଅଛି । ନଗର ଉନ୍ନୟନ କାର୍ଯ୍ୟକ୍ରମ ପାଇଁ ୧୯୯୮-୯୯ ବର୍ଷ ପାଇଁ ରାଜ୍ୟ ଯୋଜନାରେ ଟ.୧୩୯୫.୦୦ ଲକ୍ଷ ବ୍ୟୟ ବରାଦ କରାଯାଇଥିଲା । ତନ୍ମଧ୍ୟରୁ ଟ.୫୭୭.୦୦ ଲକ୍ଷ ବସ୍ତି ବାସିନ୍ଦାଙ୍କ ଉନ୍ନୟନ ପାଇଁ ଉଦ୍ଦିଷ୍ଟ ।

ଜନସ୍ୱାସ୍ଥ୍ୟ ଇଞ୍ଜିନିୟରିଂ ସଂସ୍ଥା ଓ ଓଡ଼ିଶା ଜଳଯୋଗାଣ ଓ ପରିମଳ ସଂସ୍ଥା କ୍ରମବର୍ଦ୍ଧିଷ୍ଣୁ ସହରାଞ୍ଚଳ ଜନସଂଖ୍ୟାର ମୌଳିକ ଜଳଯୋଗାଣ ଆବଶ୍ୟକତାକୁ ପୂରଣ କରିବା ପାଇଁ ମିଳିତ ଭାବେ ପଦକ୍ଷେପ ଗ୍ରହଣ କରୁଅଛନ୍ତି । ରାଜ୍ୟର ମୋଟ ୧୦୨ଟି ପୌରସଂସ୍ଥା ମଧ୍ୟରୁ ୧୦୧ଟି ପୌରସଂସ୍ଥାରେ ଜଳଯୋଗାଣ ପାଇଁ କାର୍ଯ୍ୟ ଆଗେଇ ଚାଲିଛି । ପୌରସଂସ୍ଥାର ସମସ୍ତ ଜନସାଧାରଣଙ୍କୁ ପାଇପ୍ ପାନୀୟଜଳ ଯୋଗାଣର ଉନ୍ନତି, ନବୀକରଣ ଓ ଅଭିବୃଦ୍ଧି କରିବା ପାଇଁ ବଳିଷ୍ଠ ପଦକ୍ଷେପ ନିଆଯାଇଅଛି । ୧୯୯୮-୯୯ ବର୍ଷ ପାଇଁ ସହରାଞ୍ଚଳ ଜଳଯୋଗାଣ ପାଇଁ ଟ.୩୪୮୦.୦୦ ଲକ୍ଷ ରାଜ୍ୟ ଯୋଜନାରେ ବ୍ୟୟ ବରାଦ ହୋଇଥିଲା ।

୧୯୯୭-୯୮ ଆର୍ଥିକ ବର୍ଷରେ ସମନ୍ୱିତ କ୍ଷୁଦ୍ର ଓ ମଧ୍ୟମ ଧରଣର ସହର ଉନ୍ନୟନ ଯୋଜନାରେ ରାଜ୍ୟର ୪ଗୋଟି ସହର ଯଥା: ପଟାମୁଣ୍ଡାଇ, ବରପାଲି, ଆନନ୍ଦପୁର ଓ ସୋର ସହରକୁ ଏହି ଯୋଜନାରେ ଅନ୍ତର୍ଭୁକ୍ତ କରିବା ପାଇଁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯାଇଛି । କେନ୍ଦ୍ର ସରକାରଙ୍କ ଠାରୁ ଦ୍ୱିତୀୟ କିସ୍ତିରେ ୩ଗୋଟି ସହର ଯଥା: ପୁରୀ, ନୀଳଗିରି ଓ ଆଠମଲ୍ଲିକ ସହର ପାଇଁ ୩୮.୦୦ ଲକ୍ଷ ଟଙ୍କା ଅନୁଦାନ ଆସିଅଛି ।

❑❑❑

# ରାଜ୍ୟରେ ଗଣଶିକ୍ଷାର ବିକାଶ

ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ରାଜ୍ୟରେ ପ୍ରାଥମିକ ଶିକ୍ଷା, ମାଧ୍ୟମିକ ଶିକ୍ଷା ଓ ଗଣଶିକ୍ଷା ସମେତ ସମଗ୍ର ବିଦ୍ୟାଳୟ ଶିକ୍ଷାର ଯତ୍ନ ନେଉଛନ୍ତି । ରାଜ୍ୟରେ ପ୍ରାଥମିକ ବିଦ୍ୟାଳୟ ସଂଖ୍ୟା ୪୨,୧୦୪ । ବିଭିନ୍ନ ଶିକ୍ଷା ମଣ୍ଡଳରେ ହରିଜନ ଓ ଆଦିବାସୀ ବର୍ଗ ପାଇଁ ଉଦ୍ଦିଷ୍ଟ ଖାଲିଥିବା ଶିକ୍ଷକ ପଦବୀଗୁଡ଼ିକରେ ଅଣତାଲିମପ୍ରାପ୍ତ ମାଟ୍ରିକ ପାସ୍ ପ୍ରାର୍ଥୀମାନଙ୍କୁ ନିଯୁକ୍ତି ଦେବା ପାଇଁ ସରକାର ନିଷ୍ପତ୍ତି ନେଇଛନ୍ତି । କଳାପଟା ଯୋଜନାରେ ନିଯୁକ୍ତ ଶିକ୍ଷକମାନଙ୍କ ଚାକିରିର ସ୍ଥାୟିତ୍ୱ ପାଇଁ ମଧ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି । ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକମାନଙ୍କର ଚାକିରି ସୁବିଧା ଓ ପ୍ରଶାସନିକ ସୁପରିଚାଳନା ନିମନ୍ତେ କ୍ୟାଡର ନିୟମ ପ୍ରବର୍ତ୍ତନ କରାଯାଇଅଛି । ଉଚ୍ଚପ୍ରାଥମିକ ବିଦ୍ୟାଳୟମାନଙ୍କରେ ଶୌଚାଳୟ ବ୍ୟବସ୍ଥା ଓ ପାନୀୟ ଜଳଯୋଗାଣ ପାଇଁ ସରକାରଙ୍କର ଉଦ୍ୟମ ଅବ୍ୟାହତ ରହିଛି । ''ଦାରିଦ୍ର୍ୟ ତଥା ମେଧାବୃତ୍ତି'' ଯୋଜନା ଅନୁଯାୟୀ ଛାତ୍ରଛାତ୍ରୀମାନଙ୍କ ପାଇଁ ମାସିକ ବୃତ୍ତିର ବ୍ୟବସ୍ଥା କରାଯାଇଅଛି ।

ରାଜ୍ୟ ସରକାର ବର୍ତ୍ତମାନ ୮ଟି ଜିଲ୍ଲାରେ ଜିଲ୍ଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଇତି ମଧ୍ୟରେ ଆନ୍ତର୍ଜାତିକ ଉନ୍ନୟନ ଏଜେନ୍ସି ସହାୟତାରେ ଜିଲ୍ଲା ପ୍ରାଥମିକ ଶିକ୍ଷା ଯୋଜନାରେ ଆଉ ୧୪ଟି ଜିଲ୍ଲାକୁ ଅନ୍ତର୍ଭୁକ୍ତ କରିବା ପାଇଁ ବିଶ୍ୱବ୍ୟାଙ୍କ ସମ୍ମତି ପ୍ରଦାନ କରିଛନ୍ତି ।

ଏହି ବିଭାଗ ଦ୍ୱାରା ପରିଚାଳିତ ପାଠ୍ୟ ପୁସ୍ତକ ମୁଦ୍ରଣାଳୟ ପ୍ରାୟ ୧କୋଟି ୫୫ଲକ୍ଷ ପୁସ୍ତକ ଛପାଇ ଛାତ୍ରଛାତ୍ରୀମାନଙ୍କୁ ଯୋଗାଇ ଦେଇଛନ୍ତି । ଓଡ଼ିଆ ଜାତୀୟକରଣ ପାଠ୍ୟପୁସ୍ତକ ମଧ୍ୟ ଆନ୍ଧ୍ରପ୍ରଦେଶ ଓ ପଶ୍ଚିମବଙ୍ଗରେ ଥିବା ଓଡ଼ିଆ ବିଦ୍ୟାଳୟରେ ଅଧ୍ୟୟନରତ ଛାତ୍ରଛାତ୍ରୀମାନଙ୍କୁ ବିନାମୂଲ୍ୟରେ ଯୋଗାଇ ଦିଆଯାଇଅଛି ।

ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷା ପରିଚାଳନାରେ (Multiple Set) ପ୍ରଶ୍ନପତ୍ର ପ୍ରଚଳନ କରାଯିବା ସହିତ ପରୀକ୍ଷା ଖାତା ମୂଲ୍ୟାୟନ ନିମନ୍ତେ ରିସିଭିଂ ସେଣ୍ଟରର ବ୍ୟବସ୍ଥା କରାଯାଇଅଛି । ଚଳିତ ବର୍ଷ ସରକାର ୧୧ଟି ନୂତନ ଶିକ୍ଷା ଜିଲ୍ଲା ଓ ୭ଗୋଟି ଉପ ଶିକ୍ଷା ନିରୀକ୍ଷକ କାର୍ଯ୍ୟାଳୟ ସୃଷ୍ଟି କରିଛନ୍ତି । ରାଜ୍ୟରେ ଆଉ ଚାରିଗୋଟି ନୂତନ ଜିଲ୍ଲା ଶିକ୍ଷକ ଓ ପ୍ରଶିକ୍ଷଣ ପ୍ରତିଷ୍ଠାନ (D.I.E.T.) ଖୋଲିବାର ପ୍ରସ୍ତାବ ରହିଛି । ୨୦୦୦ ମସିହା ସୁଦ୍ଧା ''ସମସ୍ତଙ୍କ ପାଇଁ ଶିକ୍ଷା'' କାର୍ଯ୍ୟକ୍ରମର ଲକ୍ଷ୍ୟ ହାସଲ ନିମନ୍ତେ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ ମୁଖ୍ୟତଃ ୧୫-୩୫ ବର୍ଷର ନିରକ୍ଷରଙ୍କ ପାଇଁ ପ୍ରବର୍ତ୍ତନ କରାଯାଇଅଛି ।

# ଖାଉଟି କଲ୍ୟାଣ କାର୍ଯ୍ୟକ୍ରମ

ଖାଉଟିମାନଙ୍କ ସୁରକ୍ଷା ନିମିତ୍ତ ଭାରତ ସରକାରଙ୍କ ଦ୍ୱାରା ପ୍ରଣୀତ ଖାଉଟି ସୁରକ୍ଷା ଆଇନ ୧୯୮୬ କୁ କାର୍ଯ୍ୟକାରୀ କରିବା ଲକ୍ଷ୍ୟ ନେଇ ରାଜ୍ୟ ସରକାର ଖାଉଟି ସୁରକ୍ଷା ନିୟମାବଳୀ ୧୯୮୭ ପ୍ରଣୟନ କରିଛନ୍ତି ।

ଉକ୍ତଆଇନରେ ଖାଉଟିମାନଙ୍କ କଲ୍ୟାଣ ନିମନ୍ତେ ନିମ୍ନମତେ ଦୁଇଗୋଟି ବ୍ୟବସ୍ଥା ରହିଛି ।

(୧) ଖାଉଟିମାନଙ୍କୁ ସଚେତନ କରିବା

(୨) ସେମାନଙ୍କ ଅଭିଯୋଗର ବିଚାର ଓ ଉପଯୁକ୍ତ କ୍ଷେତ୍ରରେ ସେମାନଙ୍କୁ କ୍ଷତି ପୂରଣ ବା ଆଇନ ସମ୍ମତ ନ୍ୟାୟ ପ୍ରଦାନ କରିବା ।

ଏହି ଆଇନ ଖାଉଟିମାନଙ୍କୁ ଏକ ସ୍ୱତନ୍ତ୍ର ପରିଚୟ ଦେବା ଓ ସମାଜରେ ଶାନ୍ତି ପ୍ରତିଷ୍ଠା କରି ଶୋଷଣ ବିହୀନ ସମାଜ ଗଠନ ତଥା ସମାଜରେ ପ୍ରଗତି ଆଣିବା ପାଇଁ ଉଦ୍ଦିଷ୍ଟ ।

ରାଜ୍ୟ ସରକାର ଏହି ଆଇନ୍‌ର ବ୍ୟବସ୍ଥାକ୍ରମେ ଖାଉଟିଙ୍କୁ ନ୍ୟାୟ ଦେବା ନିମନ୍ତେ ପ୍ରତ୍ୟେକ ଜିଲ୍ଲା ସଦର ମହକୁମାମାନଙ୍କରେ ଏବଂ ଅତିରିକ୍ତ ରାଉରକେଲାଠାରେ ମୋଟ ୩୧ ଗୋଟି ଜିଲ୍ଲା ଖାଉଟି ମଞ୍ଚ ଏବଂ ରାଜ୍ୟସ୍ତରରେ କଟକଠାରେ ଏକ ଖାଉଟି ଆୟୋଗ ଗଠନ କରି କାର୍ଯ୍ୟକାରୀ କରାଉଛନ୍ତି ।

ଅଭିଯୋଗ ନିମନ୍ତେ ଖାଉଟିକୁ କୌଣସି କୋର୍ଟ ଫି ବା ଅନ୍ୟ କୌଣସି ଖର୍ଚ୍ଚ ଦେବାକୁ ପଡ଼େନାହିଁ ।

ଖାଉଟି ତାର ଆପତ୍ତି ଡାକ ଯୋଗେ ପଠାଇପାରୁଛନ୍ତି ।

ଆପତ୍ତିଗୁଡ଼ିକର ବିଚାର ୩ମାସ ମଧ୍ୟରେ ଏବଂ ବିଶେଷ ତଦନ୍ତ ଆବଶ୍ୟକ କରୁଥିବା କ୍ଷେତ୍ରରେ ୧୫୦ ଦିନ ମଧ୍ୟରେ ଫଇସଲା କରିବାର ବ୍ୟବସ୍ଥା ରହିଛି ।

ମାର୍ଚ୍ଚ ୧୯୯୮ ସୁଦ୍ଧା ଜିଲ୍ଲା ଫୋରମ ଓ ରାଜ୍ୟ ଆୟୋଗରେ ନିମ୍ନମତେ ମୋକଦ୍ଦମା/ ଅପିଲମାନ ଦାଖଲ ହୋଇ ଫଇସଲା କରାଯାଇଅଛି ।

| | | ଦାଏର ମୋକଦ୍ଦମା ସଂଖ୍ୟା | ଫଇସଲା ମୋକଦ୍ଦମା ସଂଖ୍ୟା |
|---|---|---|---|
| (କ) | ଜିଲ୍ଲା ଫୋରମ ୩୧ଗୋଟି ଫୋରମରେ | ୨୯,୪୮୩ | ୨୫୨୬୦ |
| | ରାଜ୍ୟ ଆୟୋଗ (ମୋକଦ୍ଦମା) | ୧୬୭୭ | ୧୩୧୭ |
| | (ଅପିଲ) | ୪୩୩୮ | ୧୮୩୪ |

# ରାଜ୍ୟରେ ଖଣିଜ ସମ୍ପଦର ସଦୁପଯୋଗ

ଓଡ଼ିଶା ପର୍ଯ୍ୟାପ୍ତ ଖଣିଜ ସମ୍ପଦରେ ପରିପୂର୍ଣ୍ଣ । ଉତ୍ପାନୀ ତଥା ଖଣିଜ ଭିତ୍ତିକ ଶିଳ୍ପ ପ୍ରତିଷ୍ଠା ଉଦ୍ଦେଶ୍ୟରେ ନୂତନ ଖଣିଜ ସମ୍ପଦର ସନ୍ଧାନ ନିମନ୍ତେ ରାଜ୍ୟ ସରକାର ଅତୀତରେ ବିଭିନ୍ନ ଅଞ୍ଚଳରେ ବ୍ୟାପକ ଖନନ ଓ ଅନୁସନ୍ଧାନ କାର୍ଯ୍ୟ କରିଆସୁଛନ୍ତି । ଆଗାମୀ ବର୍ଷ ମାନଙ୍କରେ ଏହି ପ୍ରଚେଷ୍ଟା ଅଧିକ ବଳିଷ୍ଠ ଭାବେ ଜାରି ରହିବ ।

ରାଜ୍ୟର ଉନ୍ନତ ଖଣିଜ ସମ୍ପଦର ଅନୁସନ୍ଧାନ ଓ ଉତ୍ତୋଳନ ସହଜସାଧ୍ୟ କରିବାକୁ ଓ ଏହାକୁ ଉତ୍ସାହିତ କରିବାକୁ ଘରୋଇ କ୍ଷେତ୍ରରେ ଖଣିଜ ଭିତ୍ତିକ ଶିଳ୍ପ ପ୍ରତିଷ୍ଠାକୁ ରାଜ୍ୟ ସରକାର ପୂର୍ଣ୍ଣ ସମର୍ଥନ ଦେଉଛନ୍ତି । ଏହା ରାଜ୍ୟ ମଧ୍ୟରେ ଅଧିକ ପୁଞ୍ଜି ବିନିଯୋଗ ଏବଂ ଲୋକମାନଙ୍କ ପାଇଁ ଲାଭଜନକ ନିଯୁକ୍ତି ସୁଯୋଗ ଉଦ୍ଭୂତ କରିବ । ଫଳସ୍ୱରୂପ ଇସ୍ପାତ, ଆଲୁମିନିୟମ ଓ ଖଣିଜ ପ୍ରକଳ୍ପ ସମେତ ଅନେକ ବୃହତ୍ ଶିଳ୍ପ ରାଜ୍ୟରେ ପ୍ରତିଷ୍ଠା ହେବାକୁ ଯାଉଛି । ଏହିସବୁ ପ୍ରକଳ୍ପ ପାଇଁ ନିଜସ୍ୱ ଖଣି (captive mine) ସଂଯୋଗ କରିବା ପାଇଁ ରାଜ୍ୟ ସରକାର ଉପଯୁକ୍ତ ନୀତି ନିର୍ଦ୍ଧାରଣ କରିଛନ୍ତି । ଏହି ସବୁ ପ୍ରକଳ୍ପକୁ ସାହାଯ୍ୟ କରିବା ଭଳି ଆବଶ୍ୟକ ଭିତ୍ତିଭୂମି ପ୍ରତିଷ୍ଠା ନିମନ୍ତେ ପଦକ୍ଷେପ ମଧ୍ୟ ନିଆଯାଉଛି ।

ରାଜ୍ୟରେ ଗଚ୍ଛିତ ଥିବା ବହୁ ମୂଲ୍ୟ ରତ୍ନ ପଥର, ସୁନା ଓ ହୀରାର ଅନୁସନ୍ଧାନ ଓ ଉତ୍ତୋଳନ ପାଇଁ ଘରୋଇ ଉଦ୍ୟୋଗର ଅଂଶ ଗ୍ରହଣକୁ ସହଜସାଧ୍ୟ ଓ ଉତ୍ସାହିତ କରିବାକୁ ରାଜ୍ୟ ସରକାର ନୂତନ ରତ୍ନପଥର ନୀତି ଘୋଷଣା କରିଛନ୍ତି ।

ପ୍ରତିବର୍ଷ ଖଣି ରାଜସ୍ୱର ପରିମାଣ ବୃଦ୍ଧି କରିବା ନିମନ୍ତେ ରାଜ୍ୟ ସରକାରଙ୍କ ଦ୍ୱାରା ଫଳପ୍ରଦ ପଦକ୍ଷେପ ନିଆଯାଉଛି । ୧୯୯୭-୯୮ ଆର୍ଥିକ ବର୍ଷରେ ଆଦାୟ ହୋଇଥିବା ଖଣି ରାଜସ୍ୱ ୩୧୭.୧୫ କୋଟି ଟଙ୍କା ଥିବାବେଳେ ୧୯୯୮-୯୯ ବର୍ଷ ପାଇଁ ଏହି ଲକ୍ଷ୍ୟ ୩୪୯.୦୫ କୋଟି ଟଙ୍କା ରଖାଯାଇଛି ।

# ଶକ୍ତି କ୍ଷେତ୍ରରେ ପ୍ରଗତି

ଶକ୍ତି କ୍ଷେତ୍ରରେ ଓଡ଼ିଶା ଏକ ସ୍ୱାବଲମ୍ବୀ ରାଜ୍ୟ । ରାଜ୍ୟର ଶକ୍ତି ଚାହିଦା ୧୪୦୦ ମେଗାୱାଟ ଥିବା ସ୍ଥଳେ ହାରାହାରି ୧୫୦୦ ମେଗାୱାଟ ବିଦ୍ୟୁତ୍ ଶକ୍ତି ଉତ୍ପାଦିତ ହେଉଅଛି । ରାଜ୍ୟର ଭବିଷ୍ୟତ ଶକ୍ତି ଚାହିଦା ମେଣ୍ଟାଇବା ପାଇଁ ତାପଜ ବିଦ୍ୟୁତ୍ କ୍ଷେତ୍ରରେ ୧୪୨୦ ମେଗାୱାଟ୍ ଓ ଜଳ ବିଦ୍ୟୁତ କ୍ଷେତ୍ରରେ ୬୦୦ ମେଗାୱାଟ୍ ଉତ୍ପାଦନ ବଢ଼ାଇବା ପାଇଁ ବ୍ୟବସ୍ଥା କରାଯାଉଛି । ଏହାଛଡ଼ା ଉପସ୍ଥିତ ବିଦ୍ୟୁତ କେନ୍ଦ୍ରଗୁଡ଼ିକର ସଂପ୍ରସାରଣ ଓ ସଂସ୍କାର କାର୍ଯ୍ୟ ମଧ୍ୟ ଚାଲୁରହିଛି ।

ଶକ୍ତି ସଂସ୍କାର କ୍ଷେତ୍ରରେ ଓଡ଼ିଶା ସମଗ୍ର ଦେଶରେ ଅଗ୍ରଣୀ । ରାଜ୍ୟରେ ଓଡ଼ିଶା ଶକ୍ତି ଉତ୍ପାଦନ ନିଗମ ଓ ଓଡ଼ିଶା ଜଳ ବିଦ୍ୟୁତ୍ ନିଗମ ପ୍ରତିଷ୍ଠା କରାଯାଇ ତାପଜ ଓ ଜଳ ବିଦ୍ୟୁତ୍ ଉତ୍ପାଦନ କାର୍ଯ୍ୟ ଚାଲୁ ରହିଛି । ଓଡ଼ିଶା ଗ୍ରୀଡ୍ ନିଗମ କେବଳ ଶକ୍ତି ପରିବହନ ଓ ବଣ୍ଟନ ଦାୟିତ୍ୱରେ ରହିଛି । ରାଜ୍ୟର ବିଦ୍ୟୁତ ଶୁଳ୍କ ନିର୍ଦ୍ଧାରଣ ତଥା ଲାଇସେନ୍ସ ପ୍ରଦାନ ନିମନ୍ତେ ଓଡ଼ିଶା ବିଦ୍ୟୁତ୍ ନିୟାମକ ଆୟୋଗ ନାମରେ ଏକ ସ୍ୱାଧୀନ ସଂସ୍ଥା ସୃଷ୍ଟି ହୋଇ ଗତ ୧.୮.୯୮ ତାରିଖଠାରୁ କାର୍ଯ୍ୟ କରିଆସୁଅଛି ।

ବିଦ୍ୟୁତ୍ ସରବରାହ ଓ ପରିବଣ୍ଟନ ବ୍ୟବସ୍ଥାକୁ ପୃଥକ୍ କରିବା ନିମନ୍ତେ ବିହିତ ପଦକ୍ଷେପ ନିଆଯାଉଅଛି । ଗତ ୨୬.୬.୯୮ ତାରିଖଠାରୁ ରାଜ୍ୟର ବିଦ୍ୟୁତ ପରିବଣ୍ଟନ କାର୍ଯ୍ୟ ପୁନର୍ଗଠନ ଲକ୍ଷ୍ୟରେ ସମଗ୍ର ବ୍ୟବସ୍ଥାକୁ ୪ଭାଗ କରାଯାଇ ୪ଗୋଟି ସହାୟକ କମ୍ପାନୀ ଉପରେ ଏହି ଦାୟିତ୍ୱ ନ୍ୟସ୍ତ କରାଯିବାକୁ ସ୍ଥିର କରାଯାଇଛି । ଏହି ସଂସ୍ଥା ମାନଙ୍କର ଶତକଡ଼ା ୫୧ ଭାଗ ଅଂଶଧନ ଏକ ମୁକ୍ତ, ମୁକ୍ତ ଓ ଜାଗତିକ ଟେଣ୍ଡର ବ୍ୟବସ୍ଥା ଦ୍ୱାରା ପ୍ରତ୍ୟାହୃତ ହେବ । ଘରୋଇ କମ୍ପାନୀମାନେ ଆସନ୍ତା ୧.୪.୯୯ ତାରିଖଠାରୁ କାର୍ଯ୍ୟ ଆରମ୍ଭ କରିବାର ଲକ୍ଷ୍ୟ ରହିଛି । ଓଡ଼ିଶା ଶକ୍ତି ଉତ୍ପାଦନ ନିଗମର ଶତକଡ଼ା ୪୯ ଅଂଶଧନ ଏକ ମୁକ୍ତ ଆନ୍ତଃରାଷ୍ଟ୍ରୀୟ ଟେଣ୍ଡର ମାଧ୍ୟମରେ କରାଯାଇ ରାଜ୍ୟକୁ ୬୦୩ କୋଟି ଟଙ୍କା ଲବ୍ଧ ହେବାକୁ ଯାଉଛି । ସମଗ୍ର ଦେଶରେ ଏହି ପୁଞ୍ଜି ପ୍ରତ୍ୟାହାର ବ୍ୟବସ୍ଥା ପ୍ରଥମ ଅଟେ ।

ଗ୍ରୀଡ୍ ନିଗମର ବିଦ୍ୟୁତ୍ ସରବରାହ ଓ ବଣ୍ଟନ ବ୍ୟବସ୍ଥା ନିମନ୍ତେ ବିଶ୍ୱବ୍ୟାଙ୍କ ଓ ଡି.ଏଫ୍.ଆଇ.ଡି. ସାହାଯ୍ୟ କରିବାକୁ ଆଗେଇ ଆସିଛନ୍ତି । ବିଶ୍ୱ ବ୍ୟାଙ୍କ ୪୨୦ ନିୟୁତ ଡଲାର ଓ ଡି.ଏଫ୍.ଆଇ.ଡି ୬୪.୫ ନିୟୁତ ପାଉଣ୍ଡ ମଞ୍ଜୁର କରିଛନ୍ତି ।

ନବମ ଯୋଜନା କାଳର ପରିସମାପ୍ତି ମଧ୍ୟରେ ରାଜ୍ୟର ସମସ୍ତ ଗ୍ରାମକୁ ବିଦ୍ୟୁତ୍‌କରଣ କରିବା ନିମନ୍ତେ ରାଜ୍ୟ ସରକାର ସଂକଳ୍ପବଦ୍ଧ । ୧୯୯୯-୨୦୦୦ ବର୍ଷରେ ପାରମ୍ପରିକ ଉତ୍ସ ମାଧ୍ୟମରେ ୨୦୦୦ ଗ୍ରାମକୁ ଓ ଅଣପାରମ୍ପରିକ ଉତ୍ସରୁ ୨୦୦୦ ଗ୍ରାମକୁ ବିଦ୍ୟୁତକରଣ କରାଯିବା ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଅଛି ।

❑❑❑

## ଶ୍ରମ ବିଭାଗର ସଫଳ କାର୍ଯ୍ୟକ୍ରମ

ରାଜ୍ୟରେ ୨.୧୫ ଲକ୍ଷ ଶିଶୁ ଶ୍ରମିକଙ୍କ ମଧ୍ୟରୁ ୧୯୯୮-୯୯ରେ କେନ୍ଦ୍ର ସରକାରଙ୍କ ମଞ୍ଜୁରୀପ୍ରାପ୍ତ ୧୬ଟି ଜାତୀୟ ଶିଶୁ ଶ୍ରମିକ ଯୋଜନାରେ ୪୨୮ଟି ସ୍ୱତନ୍ତ୍ର ଶିଶୁ ଶ୍ରମିକ ସ୍କୁଲ ଖୋଲାଯାଇ ୨୭,୨୬୪ ଜଣ ପିଲାଙ୍କର ନାମ ଲେଖାଯାଇଛି ।

ଶିଳ୍ପ ପରିଚାଳନା ତଥା ଶ୍ରମିକ କଲ୍ୟାଣ କ୍ଷେତ୍ରରେ ଶାନ୍ତି ଶୃଙ୍ଖଳା ରକ୍ଷା କରାଯାଇଛି । ଚଳିତବର୍ଷ ରାଉରକେଲାଠାରେ ୫୦ ଶଯ୍ୟା ବିଶିଷ୍ଟ ଏକ ଆଧୁନିକ ରାଜ୍ୟବୀମା ଯୋଜନା ହାସପାତାଳ ବହିଃ ବିଭାଗ ଖୋଲାଯାଇଛି ଏବଂ ୭୫.୫୫ ଲକ୍ଷ ଟଙ୍କା ଖର୍ଚ୍ଚରେ ଚୌଦ୍ୱାର ଠାରେ ଥିବା ୧୦୦ ଶଯ୍ୟା ବିଶିଷ୍ଟ ରାଜ୍ୟ ବୀମା ଯୋଜନା ହାସପାତାଳର ବିଭିନ୍ନ ବିଭାଗର ଉନ୍ନତି ପାଇଁ ପ୍ରାଥମିକ କାର୍ଯ୍ୟମାନ ସମ୍ପନ୍ନ ହୋଇଛି ।

# ଅର୍ଥନୀତି ଓ ପରିସଂଖ୍ୟାନ ନିର୍ଦ୍ଦେଶାଳୟର କାର୍ଯ୍ୟକ୍ରମ

## କୃଷି ପରିସଂଖ୍ୟାନ:

(କ) ୧୯୯୮-୯୯ କୃଷି ବର୍ଷ ପାଇଁ ଭୋଦେଇ ଧାନର କ୍ଷେତ୍ରଫଳ, ହାରାହାରି ଉତ୍ପାଦନ ଓ ମୋଟ ଉତ୍ପାଦନ ପୂର୍ବାଭାସ ଅଟକଳ ଚୂଡ଼ାନ୍ତ କରାଯାଇଛି ଓ ଶାରଦ ଧାନ ପାଇଁ ଅଟକଳ କାର୍ଯ୍ୟ ପ୍ରସ୍ତୁତି ଚାଲିଛି ।

(ଖ) ୧୯୯୮-୯୯ ବର୍ଷର ଭୋଦେଇ ଋତୁ ପାଇଁ ମିଳିଥିବା ପପତ୍ର—ଏ.ଏସ୍. ୨.୦ ଛୋଟ ଶସ୍ୟ ପରୀକ୍ଷା ୫୦ଟି ଏବଂ ଏ.ଏସ୍. ୨.୦ ଧାନ ଶସ୍ୟ ପରୀକ୍ଷା ୨୦୦ ଟିର ତନଖି କରାଯାଇ ନିର୍ଦ୍ଦେଶକ ଜାତୀୟ ନମୁନା ସଂସ୍ଥା, ଫରିଦାବାଦଙ୍କ ନିକଟକୁ ପ୍ରେରଣ କରାଯାଇଅଛି ।

(ଗ) ୧୯୯୭-୯୮ ବର୍ଷର ରବି ଋତୁ ପାଇଁ ସାରଣୀ କାର୍ଯ୍ୟ ଶେଷ ହୋଇଅଛି ।

(ଘ) କୃଷି ଶ୍ରମ ମଜୁରୀ ଓ କୃଷି ଉତ୍ପାଦନରେ ନିୟୋଜିତ କେତେକ ଦ୍ରବ୍ୟର ତଥ୍ୟ, ସମସ୍ତ ୮୯ ଟି କେନ୍ଦ୍ରର ମାସିକ ବିବରଣୀର ଏକତ୍ରିକୃତ ରିପୋର୍ଟ ଅକ୍ଟୋବର ମାସ ପାଇଁ ପ୍ରସ୍ତୁତ କରାଯାଇ ଭାରତ ସରକାରଙ୍କ ନିକଟକୁ ପଠାଯାଇଅଛି ।

## ରାଜ୍ୟ ଆୟ

ବିଦ୍ୟୁତ ଉଦ୍ୟୋଗ ଅଧୀନସ୍ଥ ଗ୍ୟାସ୍- ଉଦ୍ୟୋଗର ରାଜ୍ୟ ଘରୋଇ ଉତ୍ପାଦନ ୧୯୯୫-୯୬, ୧୯୯୬-୯୭ ଏବଂ ୧୯୯୭-୯୮ ବର୍ଷ ପାଇଁ ଯଥାକ୍ରମେ ସଂଶୋଧିତ, ଅସ୍ଥାୟୀ ଓ କ୍ଷିପ୍ର ଅଟକଳ କାର୍ଯ୍ୟ ସମାପ୍ତ ହୋଇଅଛି ।

## ମୂଲ୍ୟ

ମୂଲ୍ୟ ବିଭାଗରୁ ତ୍ରୈମାସିକ ମୂଲ୍ୟ ପତ୍ରିକା ୧୯୯୮ ସେପ୍ଟେମ୍ବର ଓ ଅକ୍ଟୋବର ମାସର ସାମାଜିକ ଏବଂ ଅର୍ଥନୈତିକ ତଥ୍ୟ ସମ୍ବଳିତ ମାସିକ ପତ୍ରିକାର ପ୍ରକାଶନ କରାଯାଇଅଛି ।

## ପୁଞ୍ଜି ଗଠନ

୧୯୯୭-୯୮ ବର୍ଷ ପାଇଁ ଉଭୟ ଚଳନ୍ତି ଓ ସ୍ଥିର ମୂଲ୍ୟରେ ନିର୍ମାଣ ବିଭାଗର କ୍ଷିପ୍ର ଅଟକଳ ପ୍ରସ୍ତୁତ ନିମିତ୍ତ ବିଭିନ୍ନ ସଂସ୍ଥାମାନଙ୍କରୁ ସଂଗୃହୀତ ତଥ୍ୟକୁ କାର୍ଯ୍ୟରେ ବିନିଯୋଗ କରାଯାଉଅଛି ।

## କମ୍ପ୍ୟୁଟର

(କ) ନିମ୍ନଲିଖିତ ତଥ୍ୟ ପ୍ରବେଶ କାର୍ଯ୍ୟ ଶେଷ କରାଗଲା

(୧) ଫର୍ମ-୫ (ବ୍ୟବହୃତ ଜମି)ର ଅବଶିଷ୍ଟ ୧୧ ଟି ଜିଲ୍ଲାର ।

(୨) ୧୯୯୮-୯୯ ମସିହାର ଫର୍ମ-୪ (କ୍ଷେତ୍ରଫଳ) ଭୋଦେଇ ଋତୁର ୭ଟି ଜିଲ୍ଲାର ।

(୩) ୧୯୯୭-୯୮ ମସିହାର ଫର୍ମ-୪ (ସହରାଞ୍ଚଳ କ୍ଷେତ୍ରଫଳ) ଭୋଦେଇ ଋତୁ ପାଇଁ ସମସ୍ତ ଜିଲ୍ଲା ଗୁଡ଼ିକର ।

(୪) ଜାତୀୟ ନମୁନା ସର୍ବେକ୍ଷଣ ୫୨ ତମ ଚକ୍ର ଅନୁସୂଚୀ-୧.୦ (ସହରାଞ୍ଚଳ) ର ଅନୁଗୁଳ ଓ ପୁରୀ ଜିଲ୍ଲାର ।

(ଖ) (୧) ୧୯୯୭-୯୮ ମସିହାର ଫର୍ମ ଏଫ୍-୩ (ଫଳ ଉତ୍ପାଦନ)ର ସମସ୍ତ ଜିଲ୍ଲାର ତଥ୍ୟ ତନଖି କାର୍ଯ୍ୟ ଶେଷ ହୋଇଅଛି ।

(୨) ଜାତୀୟ ନମୁନା ସର୍ବେକ୍ଷଣ ୪୯ତମ ଅନୁସୂଚୀ ୧.୨ର ପୁରୀ, ବାଲେଶ୍ୱର, ଗଞ୍ଜାମ ଓ କଟକ ଜିଲ୍ଲାର ତଥ୍ୟ ନିର୍ଦ୍ଧାରଣ କାର୍ଯ୍ୟ ପ୍ରଗତି ପଥରେ ।

(୩) ଜାତୀୟ ନମୁନା ସର୍ବେକ୍ଷଣ ୫୨ତମ ଚକ୍ର ଅନୁସୂଚୀ ୨୪.୦ର ତଥ୍ୟ ନିର୍ଦ୍ଧାରଣ କାର୍ଯ୍ୟର ସଂଗତି ବିକାଶ କାର୍ଯ୍ୟ ପ୍ରଗତି ପଥରେ ।

(୪) ୧୯୯୯ ମସିହାର ଡିଷ୍ଟ୍ରିକ୍ଟ ଆଟ୍ ଏ ଗ୍ଲାନ୍ସ ଡି.ଟି.ପି. ମାଧ୍ୟମରେ ପ୍ରସ୍ତୁତ କରାଯାଇଅଛି ।

## ଗୃହ ବ୍ୟବସ୍ଥାକରଣ

ରାଜ୍ୟର ୪ଟି କେନ୍ଦ୍ରର ମୂଲ୍ୟ ସମ୍ବନ୍ଧୀୟ ଗୃହ ନିର୍ମାଣ ସାମଗ୍ରୀ ଓ ଗୃହ ନିର୍ମାଣ ଶ୍ରମିକଙ୍କ ମଜୁରୀର ତଥ୍ୟ ସମ୍ବଳିତ ଓ ତ୍ରୟମାସିକ ବିବରଣୀ ଡିସେମ୍ବର-୮୭ ପର୍ଯ୍ୟନ୍ତ ଶେଷ ହୋଇଅଛି ।

## ସାର୍ବଜନୀନ ବିତ୍ତ

ଓଡ଼ିଶା ବଜେଟ ୧୯୯୭-୯୯ ଆର୍.ଇ. ବର୍ଷର ଅର୍ଥନୈତିକ ଓ କୃତ୍ୟ ସମ୍ବନ୍ଧୀୟ ସଙ୍କଳନ କାର୍ଯ୍ୟ ଚାଲୁ ରହିଛି ।

## ପ୍ରକାଶନ

ଡିଷ୍ଟ୍ରିକ୍ଟ ଷ୍ଟାଟିଷ୍ଟିକାଲ ହ୍ୟାଣ୍ଡ ବୁକ୍ ୧୯୯୭ର ୩୦ଟି ଜିଲ୍ଲା ପାଇଁ ୪ଟି ସାରଣୀ ପ୍ରସ୍ତୁତ କରାଯାଇଅଛି । ୩୦୨ ଖଣ୍ଡ ପରିସଂଖ୍ୟାନ ସମ୍ବନ୍ଧୀୟ ପୁସ୍ତକ ବିକ୍ରି କରାଯାଇ ୬୫୮୦ ଟଙ୍କା ସରକାରୀ କୋଷାଗାରରେ ପଇଠ କରାଯାଇଛି ।

## ଜାତୀୟ ନମୁନା ସର୍ଭେ

୪୫ତମ ପରିକ୍ରମା, ଅନୁସୂଚୀ ୨.୨ର ତଥ୍ୟକୁ ଭିତ୍ତିକରି ଅଣସଂଗଠନ ନିର୍ମାଣ ସଂସ୍ଥା ଅଣ ପ୍ରଦର୍ଶିକା ପ୍ରତିଷ୍ଠାନ ଓ ସ୍ୱକୀୟ ବ୍ୟବସାୟିକ ଉଦ୍ୟୋଗ ଉପରେ ଚିଠା ପ୍ରସ୍ତୁତ କାର୍ଯ୍ୟ ଚାଲୁ ରହିଛି ।

## କର୍ମଚାରୀ ଗଣନ

ଷଷ୍ଠ କର୍ମଚାରୀ ଗଣନା ଓ ତତ୍ ସମ୍ବନ୍ଧୀୟ ଆନୁଷଙ୍ଗିକ କାର୍ଯ୍ୟ ଚାଲୁ ରହିଛି ।

## ଅର୍ଥନୀତି ଗବେଷଣା

ଅର୍ଥନୀତି ସର୍ବେକ୍ଷଣ– ୧୯୯୮-୯୯ ରିପୋର୍ଟର ୧୪ଟି ଅଧ୍ୟାୟର ଚିଠା ପ୍ରସ୍ତୁତ କରାଯାଇଛି ଓ ଅବଶିଷ୍ଟ ଅଧ୍ୟାୟଗୁଡ଼ିକର ଲେଖା କାର୍ଯ୍ୟ ଚାଲୁ ରହିଛି ।

## ଆର୍ଥିକ ସର୍ବେକ୍ଷଣ

ସମୟ ବିନିଯୋଗ ସର୍ବେକ୍ଷଣର କ୍ଷେତ୍ର ସର୍ବେକ୍ଷଣ କାର୍ଯ୍ୟ ଶେଷ ହୋଇଛି ।

## ଗ୍ରାମ୍ୟ ସୂଚୀପତ୍ର

୪ର୍ଥ ପର୍ଯ୍ୟାୟ ଗ୍ରାମ୍ୟସୂଚୀ କ୍ଷେତ୍ର ସର୍ବେକ୍ଷଣ କାର୍ଯ୍ୟ ରାଜ୍ୟର ୧୧୧ ଗୋଟି ଗ୍ରାମ ପଞ୍ଚାୟତରେ ଥିବା ୧୩୨୭ ଟି ଗ୍ରାମରେ ସମ୍ପୂର୍ଣ୍ଣ କରାଯାଇଛି ।

## ବାର୍ଷିକ ଶିଳ୍ପ ସର୍ବେକ୍ଷଣ

ବାର୍ଷିକ ଶିଳ୍ପ ସର୍ବେକ୍ଷଣ ୧୯୯୭-୯୮ ବର୍ଷ ନିମନ୍ତେ ଚୟନ ହୋଇଥିବା ଶିଳ୍ପାନୁଷ୍ଠାନଗୁଡ଼ିକର ସର୍ବେକ୍ଷଣ କାର୍ଯ୍ୟ ଆରମ୍ଭ କରାଯାଇଛି ।

## ଅର୍ଥନୀତି ଗଣନା

୪ର୍ଥ ଅର୍ଥନୀତିକ ଗଣନାରେ ପୂରଣ ହୋଇଥିବା ଅନୁସୂଚୀ-ଗୁଡ଼ିକର ତନଖି କାର୍ଯ୍ୟ ଚାଲୁ ରହିଛି ।

❑❑❑

# ଆୟୁର୍ବେଦିକ ଓ ହୋମିଓପ୍ୟାଥି ଚିକିତ୍ସାର ପ୍ରସାର

ଆମ ରାଜ୍ୟରେ ବର୍ତ୍ତମାନ ସୁଦ୍ଧା ୫୧୯ଟି ଆୟୁର୍ବେଦିକ, ୪୬୦ଟି ହୋମିଓପ୍ୟାଥିକ୍ ଓ ୯ଟି ୟୁନାନି ଚିକିତ୍ସାଳୟ କାର୍ଯ୍ୟ କରୁଅଛି । ସେଗୁଡ଼ିକ ମଧ୍ୟରୁ ଆଦିବାସୀମାନଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବା ନିମନ୍ତେ, ରାଜ୍ୟର ଆଦିବାସୀ ଉପଯୋଜନା ଅଞ୍ଚଳରେ ୧୭୬ଟି ଆୟୁର୍ବେଦିକ ୧୪୬ଟି ହୋମିଓପ୍ୟାଥିକ୍ ଓ ଗୋଟିଏ ୟୁନାନି ସ୍ୱାସ୍ଥ୍ୟ କେନ୍ଦ୍ର କାର୍ଯ୍ୟ କରୁଅଛି । ରାଜ୍ୟ ସରକାର ୧୯୯୧-୯୨ ମସିହାରୁ ମୟୂରଭଞ୍ଜ ଜିଲ୍ଲାର ଶୀର୍ଷାଠାରେ ଏକ ଚେରମୂଳି ଔଷଧୀୟ ଉଦ୍ୟାନ ପ୍ରତିଷ୍ଠା କରିଛନ୍ତି ।

୧୯୯୭-୯୮ ମସିହାରେ ରାଜ୍ୟରେ ୧୮ଟି ନୂତନ ଆୟୁର୍ବେଦିକ ଏବଂ ୧୮ଟି ନୂତନ ହୋମିଓପ୍ୟାଥିକ ସ୍ୱାସ୍ଥ୍ୟକେନ୍ଦ୍ର ଖୋଲାଯିବା ପାଇଁ ପ୍ରସ୍ତାବ ରହିଥିଲେ ମଧ୍ୟ ଆର୍ଥିକ କଟକଣା ହେତୁ ଏହା ସମ୍ଭବ ହୋଇପାରିନଥିଲା । ୧୯୯୮-୯୯ ଆର୍ଥିକ ବର୍ଷର ବଜେଟ୍‌ରେ ଏହି ପ୍ରସ୍ତାବ ଅନ୍ତର୍ଭୁକ୍ତ କରାଯାଇଛି । ପ୍ରସ୍ତାବିତ ଆୟୁର୍ବେଦିକ ଓ ହୋମିଓପ୍ୟାଥିକ୍ ସ୍ୱାସ୍ଥ୍ୟ କେନ୍ଦ୍ରମାନଙ୍କ ମଧ୍ୟରୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ପ୍ରତ୍ୟେକ ୫ଟି ଲେଖାଏଁ ସ୍ୱାସ୍ଥ୍ୟକେନ୍ଦ୍ର ଖୋଲାଯିବାର ଲକ୍ଷ୍ୟ ରଖାଯାଇଛି । ନବମ ପଞ୍ଚବାର୍ଷିକ ଯୋଜନା କାଳରେ ରାଜ୍ୟରେ ୧,୦୦୦ ନୂତନ ଆୟୁର୍ବେଦିକ ଓ ୧,୦୦୦ ହୋମିଓପ୍ୟାଥିକ ଚିକିତ୍ସାଳୟ ଖୋଲାଯିବା ପାଇଁ ସରକାରଙ୍କ ନିକଟରେ ପ୍ରସ୍ତାବ ଉପସ୍ଥାପିତ କରାଯାଇଛି ।

ଏହି ପ୍ରସ୍ତାବରେ ପ୍ରତ୍ୟେକରୁ ଚାରିଶହଟି ଲେଖାଏଁ ଆୟୁର୍ବେଦିକ ଓ ହୋମିଓପ୍ୟାଥିକ୍ ଚିକିତ୍ସାଳୟ ଆଦିବାସୀ ଉପଯୋଜନା ଅଞ୍ଚଳରେ ଖୋଲାଯିବାର ଲକ୍ଷ୍ୟ ରହିଛି ।

ପାରମ୍ପରିକ ଚିକିତ୍ସା ଏବଂ ଚେରମୂଳି ଉପରେ ଆଧାରିତ ଚିକିତ୍ସା ସମ୍ବନ୍ଧୀୟ ଔଷଧୀୟ ବୃକ୍ଷ ଉପରେ ପ୍ରଶିକ୍ଷଣ ଲାଗି ଏକ ଔଷଧୀୟ ବୃକ୍ଷରୋପଣ ଯୋଜନା ସରକାରଙ୍କର ଅନୁମୋଦନ ପାଇଁ ୧୯୯୫ ମସିହାରେ ପ୍ରସ୍ତାବ ଉପସ୍ଥାପନ କରାଯାଇଥିଲା । ୧୯୯୫-୯୬ ଆର୍ଥିକ ବର୍ଷରେ ଏହି ଯୋଜନା ପାଇଁ ତିନିଲକ୍ଷ ଟଙ୍କା ବ୍ୟୟ ବରାଦ କରାଯାଇଥିଲା ।

# ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗର ସାଫଲ୍ୟ

## ସାଧାରଣ ଅଭିଯୋଗ ଫଏସଲା:

(୧) ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗରେ ୧୩,୯୧୫ ଟି ସାଧାରଣ ଅଭିଯୋଗ ପତ୍ର ପ୍ରାପ୍ତ ହୋଇଅଛି ଏବଂ ସେଗୁଡ଼ିକୁ ସଂପୃକ୍ତ ଅଧିକାରୀଙ୍କ ନିକଟକୁ ଯଥାବିଧି କାର୍ଯ୍ୟାନୁଷ୍ଠାନ ପାଇଁ ପଠାଇ ଦିଆଯାଇଅଛି ।

(୨) ପ୍ରଧାନମନ୍ତ୍ରୀଙ୍କ ଦୁର୍ନୀତିନିବାରଣ ପ୍ରକୋଷ୍ଠରୁ ଏହି ବିଭାଗର ୪୮ ଟି ଏ ସଂକ୍ରାନ୍ତୀୟ ମାମଲା ହସ୍ତଗତ ହୋଇଅଛି ଏବଂ ସେଗୁଡ଼ିକୁ ବିହିତ କାର୍ଯ୍ୟାନୁଷ୍ଠାନ ପାଇଁ ସଂପୃକ୍ତ ଅଧିକାରୀଙ୍କ ନିକଟକୁ ପଠାଇ ଦିଆଯାଇଅଛି ।

(୩) ଏହି ସମୟ ମଧ୍ୟରେ ଜିଲ୍ଲାପାଳମାନଙ୍କ ଅଭିଯୋଗ ପ୍ରକୋଷ୍ଠରେ ୭୪,୭୯୦ ସଂଖ୍ୟକ ସାଧାରଣ ଅଭିଯୋଗପତ୍ର ହସ୍ତଗତ ହୋଇଅଛି ଏବଂ ସେଥି ମଧ୍ୟରୁ ୬୪,୨୫୫ ସଂଖ୍ୟକ ଅଭିଯୋଗପତ୍ର ଫଏସଲା କରାଯାଇଅଛି । ଏହା ବ୍ୟତୀତ ୧୯୯୭-୯୮ ଆର୍ଥିକ ବର୍ଷରେ ବିଭିନ୍ନ ସରକାରୀ ବିଭାଗରେ ୬,୧୧୩ ଟି ସାଧାରଣ ଅଭିଯୋଗ ପତ୍ର ମଧ୍ୟରୁ ୩,୩୪୨ଟି ଫଏସଲା କରାଯାଇଅଛି ।

(୪) ଜୁଲାଇ ୧୯୯୮ରୁ ଜିଲ୍ଲାପାଳମାନଙ୍କ ଦ୍ୱାରା ସେମାନଙ୍କ ଜିଲ୍ଲାର ବିଭିନ୍ନ ସ୍ଥାନରେ ନୂତନ କରି ଜନ ସମ୍ପର୍କ ଶିବିରର ଆୟୋଜନ କରାଯାଇଅଛି । ଏହା ଫଳରେ ଲୋକମାନେ ନିଜର ଦ୍ୱାର ଦେଶରେ ସରକାରୀ ସେବା ପାଇବା ପାଇଁ ସମର୍ଥ ହୋଇଛନ୍ତି । ବର୍ତ୍ତମାନ ସୁଦ୍ଧା ୩୨ ଟି ଜନ ସମ୍ପର୍କ ଶିବିର ଅନୁଷ୍ଠିତ ହୋଇଅଛି ଏବଂ ୧୫,୮୭୪ ଜଣ ବ୍ୟକ୍ତି ଏହି ଯୋଜନା ମାଧ୍ୟମରେ ଉପକୃତ ହୋଇସାରିଲେଣି ।

## ପୁରାତନ ପେନ୍‌ସନ୍ ମାମଲାର ଫଏସଲା

(୧) ୩,୩୯୮ ଟି ପେନ୍‌ସନ ଓ ଗ୍ରାଚୁଇଟି ନପାଇବା ସମ୍ବନ୍ଧରେ ଦରଖାସ୍ତ ଏହି ବିଭାଗରେ ମିଳିଥିଲା ଏବଂ ତନ୍ମଧ୍ୟରୁ ୧,୯୫୮ଟି ମାମଲା ପତ୍ରାଳାପ ମାଧ୍ୟମରେ ଫଏସଲା କରାଯାଇପାରିଛି ।

(୩) ୩୩ଟି ପେନ୍‌ସନ ଅଦାଲତ ଜିଲ୍ଲା ସଦର ମହକୁମା ଓ ରାଜ୍ୟ ସଦର ମହକୁମାରେ କରାଯାଇ ୪,୭୩୯ଟି ପେନ୍‌ସନ୍ ମାମଲା ବିଚାରକୁ ନେଇ ତନ୍ମଧ୍ୟରୁ ୩.୪୧୧ଟି ଫଏସଲା ହୋଇପାରିଅଛି ।

(୪) ଏହି ସମୟ ମଧ୍ୟରେ ୫୨,୩୦୮ ଜଣ ଅବସରପ୍ରାପ୍ତ କର୍ମଚାରୀ ପେନ୍‌ସନ୍ ପାଇବା ପାଇଁ ଆବେଦନ କରିଥିଲେ ଏବଂ ସେମାନଙ୍କ ମଧ୍ୟରୁ ୫୧,୯୦୦ ଜଣ ପେନ୍‌ସନ୍ ପାଇସାରିଲେଣି ।

## ଲୋକପାଳ ଓ ଲୋକାୟୁକ୍ତ ଆଇନ ପ୍ରଣୟନ

ଓଡ଼ିଶା ଲୋକପାଳ ଓ ଲୋକାୟୁକ୍ତ ଆଇନ ୧୯୯୫ ମସିହା ଅଗଷ୍ଟ ମାସଠାରୁ କାର୍ଯ୍ୟକାରୀ କରାଯାଇଅଛି । ଅବସରପ୍ରାପ୍ତ ବିଚାରପତି ଶ୍ରୀଯୁକ୍ତ କୃଷ୍ଣ ପ୍ରସାଦ ମହାପାତ୍ର ତା ୧୬.୨.୯୭ରିଖଠାରୁ ଓଡ଼ିଶାର ଲୋକପାଳ ଭାବେ ଶପଥ ଗ୍ରହଣ କରିଅଛନ୍ତି । ଏହି ସମୟ ମଧ୍ୟରେ ଲୋକପାଳ ୩୫ଟି କେସ୍ ବିଚାରପାଇଁ ହାତକୁ ନେଇଛନ୍ତି ।

❑❑❑

# ଗ୍ରାମ୍ୟ ପରିମଳ

● ଶ୍ରୀ ନିରଞ୍ଜନ ସେଠୀ

ଗ୍ରାମାଞ୍ଚଳର ପରିମଳ ବ୍ୟବସ୍ଥା ସାଂପ୍ରତିକ ପରିସ୍ଥିତିରେ ଦିନକୁ ଦିନ ଅପରିହାର୍ଯ୍ୟ ହୋଇପଡୁଛି । ଦ୍ରୁତ ଜନସଂଖ୍ୟା ବୃଦ୍ଧି ଓ ପରିବେଶ ଦୂଷିତ ବିଭିନ୍ନ ଉପାୟରେ ସୁସ୍ଥ ସମାଜ ଗଠନରେ ଅନ୍ତରାୟ ସୃଷ୍ଟି କରୁଛି । ଏଣେତେଣେ ଅଳିଆ ଆବର୍ଜନା ଫିଙ୍ଗିବା ଏବଂ ଏଠି ସେଠି ମଳତ୍ୟାଗ କରି ଗ୍ରାମାଞ୍ଚଳରେ ଲୋକମାନେ ଯେ କେବଳ ପରିବେଶ ଦୂଷିତ କରୁନାହାନ୍ତି, ପରନ୍ତୁ ବିଭିନ୍ନ ମରଣାତ୍ମକ କାରଣ ଡିଆଉଛନ୍ତି । ତେଣୁ ଗ୍ରାମାଞ୍ଚଳରେ ପରିମଳ ବ୍ୟବସ୍ଥା ପ୍ରତି ଯତ୍ନବାନ ହେବା ସର୍ବାଦୌ ବିଧେୟ ।

ଗ୍ରାମାଞ୍ଚଳରେ ଗୋଟିଏ ପୋଖରୀରେ ଗାଧୋଇବା, ବାସନମାଜିବା, ଦାନ୍ତଘଷିବା, ଗାଈ ଗୋରୁ ଧୋଇବା, ମଳତ୍ୟାଗ କରି ଛୁଆ ହେବା ଇତ୍ୟାଦି କାର୍ଯ୍ୟ କରି ପୁଣି ସେହି ପାଣିକି ଜଳ ରୂପେ ବ୍ୟବହାର କରିବାର ଦୃଷ୍ଟାନ୍ତ ରହିଛି । ଏହାଦ୍ୱାରା ମହାମାରୀ ଭଳି ରୋଗ ବ୍ୟାପୁଥିବା ସମସ୍ତଙ୍କୁ ଜଣା । ଖତ, ଗୋବର ଇତ୍ୟାଦି ଆବର୍ଜନା ଏଣେତେଣେ ପକାଇ ପରିବେଶ ଦୂଷିତ କରିବା ସଙ୍ଗେ ସଙ୍ଗେ ରୋଗବାହକ ମଶା, ମାଛିମାନଙ୍କର ବଂଶବୃଦ୍ଧି କରିବାରେ ସହାୟକ ହୁଅନ୍ତି । ସଚ୍ଚେତନତାର ଅଭାବ ଯେ ଏହାର ମୂଳ କାରଣ, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ବିଂଶ ଶତାବ୍ଦୀର ଶେଷଭାଗରେ ମଣିଷ ସାମାନ୍ୟତମ ଚେତନାକୁ ଯଦି ଜାଗ୍ରତ ନକରନ୍ତି, ତା' ହେଲେ ସାମାଜିକ ପରିବେଶ ଅନ୍ଧକାରାଚ୍ଛନ୍ନ ହୋଇ ରହିଥିବ । ପରିବେଶ ପ୍ରଦୂଷଣ ନରୋକିଲେ ଭବିଷ୍ୟତରେ ଏହାର କୁପରିଣାମ ସମାଜରେ ବିଶେଷ ପରିଲକ୍ଷିତ ହେବ ହିଁ ହେବ ।

ସରକାରୀ କଳ ଏହି ଦିଗରେ ଯଥାସାଧ୍ୟ ଉଦ୍ୟମ ଜାରି ରଖିଛି । ଗ୍ରାମ୍ୟ ଉନ୍ନୟନ ବିଭାଗରେ ପରିମଳ କାର୍ଯ୍ୟକ୍ରମ ତାହାର ଦୃଷ୍ଟାନ୍ତ । ଏହି କାର୍ଯ୍ୟକ୍ରମଗୁଡ଼ିକ ନିଶ୍ଚିତ ସଫଳତା ହାସଲ କରିବ, ଯଦି ଜନସାଧାରଣଙ୍କ ସହଯୋଗ ସାଙ୍ଗକୁ ଯୋଜନାଗୁଡ଼ିକ ଦକ୍ଷତାର ସହ ପରିଚାଳନା କରାଯାଏ । ମାତ୍ର ସମୟେ ସମୟେ ଦେଖାଯାଏ ଯେ ସଚ୍ଚେତନତା ଅଭାବରୁ ଅନେକ ସରକାରୀ ଯୋଜନା ଫଳପ୍ରସୂ ହେବା କଷ୍ଟକର ହୋଇପଡ଼ିଛି । ଉଦାହରଣ ସ୍ୱରୂପ, ପରିମଳ କାର୍ଯ୍ୟକ୍ରମରେ ଗ୍ରାମ୍ୟ ଉନ୍ନୟନ ବିଭାଗ ଗ୍ରାମାଞ୍ଚଳରେ ରିହାତି ସୂତ୍ରରେ ପାଇଖାନାମାନ ଯୋଗାଇ ଦେଲେ ମଧ୍ୟ ଲୋକମାନେ ତାହାର ବ୍ୟବହାର ନଜାଣି କିମ୍ବା ବ୍ୟବହାର କରିବାର ଅଭ୍ୟାସ ନଥିବାରୁ ପୁନଃ କେନାଲବନ୍ଧ, ପୋଖରୀ ହୁଡ଼ା, ଘାସପଡ଼ିଆ, ଏପରିକି ଚଳପ୍ରଚଳ କରୁଥିବା ଜାଗାମାନଙ୍କରେ ମଳତ୍ୟାଗ କରି ବାରମ୍ବାର ପରିବେଶ ଦୂଷିତ କରୁଛନ୍ତି । ଏପରି ଘଟିବାର କାରଣ ସଚ୍ଚେତନତାର ଅଭାବ, ଏହା ନିଃସନ୍ଦେହ ।

ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ ଗ୍ରାମ୍ୟ ପରିମଳ କାର୍ଯ୍ୟକ୍ରମ ମାଧ୍ୟମରେ ୧୯୯୧-୯୨ ଠାରୁ ୧୯୯୭-୯୮ ବର୍ଷ ଶେଷ ସୁଦ୍ଧା ୫୦,୫୨୭ ଟି ଘରୋଇ ପାଇଖାନା, ୫୫୪ ଟି ଆନୁଷ୍ଠାନିକ ପାଇଖାନା, ୨୪୫ ଟି ମହିଳା ଶୌଚାଳୟ, ୩୮ ଟି ସୁଲଭ ଶୌଚାଳୟ ଏବଂ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ବାଳିକାମାନଙ୍କ ପାଇଁ ୧୬୬ଟି ଶୌଚାଳୟ ରାଜ୍ୟର ଗ୍ରାମାଞ୍ଚଳରେ ନିର୍ମାଣ କରାଯାଇଛି ।

୧୯୯୬-୯୭ ବର୍ଷ ପର୍ଯ୍ୟନ୍ତ ପରିମଳ କାର୍ଯ୍ୟକ୍ରମ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ନିର୍ମାଣ କରାଯାଉଥିଲା । ସରକାରଙ୍କ ନିଷ୍ପତ୍ତିକ୍ରମେ ଉକ୍ତ କାର୍ଯ୍ୟକ୍ରମ ୯୭-୯୮ର ଶେଷାର୍ଦ୍ଧରୁ ଜିଲ୍ଲା ପରିଷଦମାନଙ୍କ ମାଧ୍ୟମରେ କରାଯାଉଅଛି ଏବଂ ଏ ବାବଦରେ ୩୫୬.୬୨ ଲକ୍ଷ ଟଙ୍କାର ଅନୁଦାନ ସେମାନଙ୍କଠାରେ ଫେବୃୟାରୀ ୧୯୯୮ ରେ ନ୍ୟସ୍ତ କରାଯାଇଛି । ଏହି ଆର୍ଥିକ ବର୍ଷରେ ଗ୍ରାମାଞ୍ଚଳର ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକମାନଙ୍କ ପାଇଁ କେବଳ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଦ୍ୱାରା ୯,୪୨୧ ଟି ଘରୋଇ ପାଇଖାନା ଏବଂ ମହିଳାମାନଙ୍କ ପାଇଁ ୩୧ ଟି ଆନୁଷ୍ଠାନିକ ଶୌଚାଳୟ ସ୍ଥାପନ କରାଯାଇଛି ।

୧୯୯୮-୯୯ ଆର୍ଥିକ ବର୍ଷରେ ରାଜ୍ୟ ଯୋଜନା ବାବଦରେ ୨.୦୦ କୋଟି ଟଙ୍କା ଓ କେନ୍ଦ୍ର ସରକାରଙ୍କ ଅନୁଦାନରୁ ୨.୦୦ କୋଟି ଟଙ୍କା ବିନିଯୋଗ କରାଯାଇ ଗ୍ରାମାଞ୍ଚଳରେ ପ୍ରାୟ ୮୨,୦୦୦ ଟି ଘରୋଇ ପାଇଖାନା, ୨୪୦ ଟି ମହିଳା ଶୌଚାଳୟ ଏବଂ ନିଷ୍କାସନ ନାଳ ନିର୍ମାଣ କରାଯିବାର ଲକ୍ଷ୍ୟ ରଖାଯାଇଛି । ସୂଚନାଯୋଗ୍ୟ ଯେ ଅତୀତରେ ଗ୍ରାମାଞ୍ଚଳରେ ପ୍ରତ୍ୟେକ ଘରୋଇ ପାଇଖାନା ନିର୍ମାଣ ନିମିତ୍ତ ପାଇଖାନା ଗୃହକୁ ମିଶାଇ ପ୍ରାୟ ୧,୦୦୦ ଟଙ୍କାଠାରୁ ଆରମ୍ଭ କରି ୨,୪୦୦ ଟଙ୍କା ଲେଖାଏଁ ଖର୍ଚ୍ଚରେ ବିଭିନ୍ନ କିସମର ଶୌଚାଳୟ ସ୍ଥାପନ କରାଯାଉଥିଲା । ଏଥିପାଇଁ ଏହି ମୂଲ୍ୟର ଶତକଡ଼ା ୮୦ ଭାଗ ପ୍ରତ୍ୟେକ ଘରୋଇ ପାଇଖାନା ନିମିତ୍ତ ସରକାରୀ ସାହାଯ୍ୟ ଯୋଗାଇ ଦିଆଯାଉଥିଲା । କିନ୍ତୁ ୧୯୯୮-୯୯ ଆର୍ଥିକ ବର୍ଷରୁ ଘରୋଇ ପାଇଖାନା ସଂଖ୍ୟା ବୃଦ୍ଧି ଏବଂ ପ୍ରକୃତ ଗରିବ ଲୋକମାନଙ୍କ ହିତସାଧନ ଉଦ୍ଦେଶ୍ୟରେ କେବଳ ଏକ ଗର୍ତ୍ତ ବିଶିଷ୍ଟ ସ୍ୱଳ୍ପ ଖର୍ଚ୍ଚରେ ପାଇଖାନା ନିର୍ମାଣ ନିମିତ୍ତ ନିଷ୍ପତ୍ତି ନିଆଯାଇଛି । ପ୍ରତ୍ୟେକର ଖର୍ଚ୍ଚ ୫୫୦.୦୦ ଟଙ୍କା ଧାର୍ଯ୍ୟ କରାଯାଇଛି ଏବଂ ଏଥିପାଇଁ ପ୍ରତ୍ୟେକ ପିଛା ୩୦୦.୦୦ ଟଙ୍କା ସରକାରୀ ସାହାଯ୍ୟ ଦିଆଯିବା ପାଇଁ ନିଷ୍ପତ୍ତି ହୋଇଛି ।

ଏତଦ୍ ବ୍ୟତୀତ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ତରଫରୁ ଉଚ୍ଚପ୍ରାଥମିକ ବିଦ୍ୟାଳୟମାନଙ୍କରେ ବାଳିକାମାନଙ୍କ ଉଦ୍ଦେଶ୍ୟରେ

ଶୌଚାଳୟ ନିର୍ମାଣ କରିବା ପାଇଁ ଦଶମ ଅର୍ଥ କମିଶନ୍ ଅନୁଦାନ ତରଫରୁ ୧୯୯୮-୯୯ ଆର୍ଥିକ ବର୍ଷରେ ୨୫୨.୨୫ ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି । ପ୍ରତ୍ୟେକ ଶୌଚାଳୟ ପାଇଁ ୧୦,୦୦୦ ଟଙ୍କା ଧାର୍ଯ୍ୟ କରାଯାଇଥିବାରୁ ଏହି ଟଙ୍କାରେ ୨,୫୨୨ ଟି ଶୌଚାଳୟ ସୁଲଭ ଇଣ୍ଟରନ୍ୟାସନାଲ ମାଧ୍ୟମରେ ନିର୍ମାଣ କରିବା ପାଇଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି ।

ଏହିସବୁ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ଗ୍ରାମାଞ୍ଚଳରେ ଅଧିକରୁ ଅଧିକ ଜନ ସଚେତନତା ଶିବିରମାନ ଅନୁଷ୍ଠିତ କରି ଲୋକମାନଙ୍କୁ ଏସବୁ ବିଷୟରେ ବାରମ୍ବାର ଶିକ୍ଷା ଦିଆଗଲେ, ଏହାର ସୁଫଳ ନିଶ୍ଚୟ ମିଳିବ । ଏଥିପାଇଁ ଯେ ସରକାର ସବୁକିଛି କରିବେ, ଏପରି ଭାବିବା ଆଦୌ ସମୀଚୀନ ନୁହେଁ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଜନ ସଚେତନତା ସୃଷ୍ଟିରେ ଅଗ୍ରଣୀ ଭୂମିକା ଗ୍ରହଣ କରିବା ଉଚିତ । ସରକାରୀ କଳର ସହଯୋଗରେ ସ୍ୱେଚ୍ଛାସେବୀ ଅନୁଷ୍ଠାନ ବା ସ୍ୱେଚ୍ଛାସେବୀମାନେ ଏପରି କଲେ, ସମାଜର ଅଶେଷ ଉପକାର ସାଧିତ ହୋଇପାରିବ ଓ ସରକାରୀ ଯୋଜନାଗୁଡ଼ିକର ସଫଳ ରୂପାୟନ ସମ୍ଭବ ହୋଇପାରିବ ।

*ସୂଚନା ଅଧିକାରୀ*
*ସୂଚନା ଓ ଲୋକସମ୍ପର୍କ ବିଭାଗ, ଭୁବନେଶ୍ୱର*

□□□

# ହସ୍ତତନ୍ତ ବିଭାଗର ଅଗ୍ରଗତି

ବୁଣିବା ଓଡ଼ିଶାର ଏକ ମୌଳିକ ପ୍ରଥା । ରଙ୍ଗ ଏବଂ ବାନ୍ଧ ଯୋଗୁଁ ଓଡ଼ିଶା ପ୍ରସିଦ୍ଧ । ଓଡ଼ିଶାରେ ଆପାତତଃ ୯୦୨୬୨ ଗୋଟି ତନ୍ତରେ ୩୮୭୮୦୯ ଜଣ ବୁଣାକାର ବୁଣିବା କାର୍ଯ୍ୟରେ ନିୟୋଜିତ ଅଛନ୍ତି । ୧୯୯୫-୯୬ରୁ ୧୯୯୮-୯୯ ନଭେମ୍ବର ମାସ ଶେଷ ସୁଦ୍ଧା ବୁଣାକାର ସମବାୟ ସମିତି ୮୪୧ ରୁ ୮୬୫ କୁ ବୃଦ୍ଧି ପାଇଛି । ରାଜ୍ୟରେ ହସ୍ତତନ୍ତର ବିକାଶ ନିମନ୍ତେ ତନ୍ତ ଆଧୁନିକୀକରଣ, ବସ୍ତ୍ର ଉତ୍ପାଦନ ବୃଦ୍ଧି, ତନ୍ତଶାଳା ଆଧୁନିକୀକରଣ, ନୂତନ ପ୍ରଣାଳୀରେ ବସ୍ତ୍ର ଉତ୍ପାଦନ ଏବଂ ବୁଣାକାରମାନଙ୍କୁ ତାଲିମ ଇତ୍ୟାଦି ପାଇଁ ସ୍ୱତନ୍ତ୍ର ଯୋଜନାମାନ କାର୍ଯ୍ୟକାରୀ କରାଯାଉଛି ।

ହସ୍ତତନ୍ତ ଦ୍ୱାରା ୧୯୯୫-୯୬, ୧୯୯୬-୯୭, ୧୯୯୭-୯୮ ଏବଂ ୧୯୯୮-୯୯ ନଭେମ୍ବର ମାସ ଶେଷ ସୁଦ୍ଧା ଯଥାକ୍ରମେ ୮୪୦୪.୨୨, ୧୦୦୩୦.୩୪, ୯୮୩୪.୦୫ ଏବଂ ୪୫୭୭.୧୦ ଲକ୍ଷ ଟଙ୍କାର ସାମଗ୍ରୀ ଉତ୍ପାଦନ ହେବା ସ୍ଥଳେ ଯଥାକ୍ରମେ ୮୩୧୨.୫୦, ୯୭୭୦.୯୭, ୯୪୧୮.୭୮ ଓ ୪୩୬୦.୧୧ ଲକ୍ଷ ଟଙ୍କାର ସାମଗ୍ରୀ ବିକ୍ରୟ କରାଯାଇଛି । ବୈଷୟିକ ଉନ୍ନତିକଳ୍ପେ ଉକ୍ତ ବିଭାଗ ବିଭିନ୍ନ ପ୍ରକଳ୍ପ କାର୍ଯ୍ୟକାରୀ କରିଅଛି ।

ବୁଣାକାରମାନଙ୍କୁ ୨୯୪୬ କର୍ମଶାଳା, ୬୧୬ ତନ୍ତ, ୨୩୩୯ ଆନୁଷଙ୍ଗିକ ଉପକରଣ ଯୋଗେଇ ଦେବା ସହ ୪୨୧ କର୍ମଶାଳାକୁ ବିଦ୍ୟୁତକରଣ କରାଯାଇଛି । ୨୫ହଜାର ବୁଣାକାରଙ୍କୁ ଜୀବନ ବୀମା ଏବଂ ୨୫ ହଜାର ବୁଣାକାରଙ୍କୁ ସଞ୍ଚୟ କୋଷର ଅନ୍ତର୍ଭୁକ୍ତ କରାଯାଇଛି ।

ଟସର ଚାଷ ଦ୍ୱାରା ଯଥାକ୍ରମେ ୧୯୯୫-୯୬, ୧୯୯୬-୯୭, ୧୯୯୭-୯୮ ଓ ୧୯୯୮-୯୯ ନଭେମ୍ବର ଶେଷ ସୁଦ୍ଧା ୨୦୪୦୦, ୩୪୫୪୬, ୩୮୦୦ ଓ ୧୩୩୩୪ ଖାନ ରେଶମ କୋଷା ଉତ୍ପାଦନ ହୋଇଛି ଯାହାର ମୂଲ୍ୟ ଯଥାକ୍ରମେ ୨୦୪.୦୦, ୩୪୫.୪୬, ୩୮୦.୦୦ ଓ ୧୩୩.୩୪ ଲକ୍ଷ ଟଙ୍କା । ସେହିପରି ତୁତଚାଷ ଦ୍ୱାରା ଯଥାକ୍ରମେ ୧୯୯୫-୯୬, ୧୯୯୬-୯୭, ୧୯୯୭-୯୮ ଓ ୧୯୯୮-୯୯ ନଭେମ୍ବର ମାସ ଶେଷ ସୁଦ୍ଧା ୫୫୯୯୫, ୬୯୩୩୯, ୫୬୦୦୦ ଓ ୨୮୧୭୦ କିଲୋଗ୍ରାମ ତୁତ ଯଥାକ୍ରମେ ୩୨.୯୮,୩୬..୭୫,୩୯.୨୦ଓ୨୮.୧୭ ଲକ୍ଷ ଟଙ୍କା ମୂଲ୍ୟର ଉତ୍ପାଦନ ହୋଇଛି ।

# ଓଡ଼ିଶାରେ ପଞ୍ଚାୟତିରାଜର ଉତ୍ପତ୍ତି

● ଶ୍ରୀ ସଚ୍ଚିଦାନନ୍ଦ ପ୍ରଧାନ

ଉପକ୍ରମ :- ଭାରତ ଏକ ଗ୍ରାମ ବହୁଳ ଦେଶ । ଶତକଡ଼ା ୭୦ ଭାଗ ଲୋକ ଗ୍ରାମାଞ୍ଚଳରେ ବସବାସ କରନ୍ତି । ଗ୍ରାମାଞ୍ଚଳର ବିଭିନ୍ନ ସମସ୍ୟାର ସମାଧାନ ପାଇଁ ଗାନ୍ଧିଜୀ ଗ୍ରାମ ପଞ୍ଚାୟତର ମୂଳଦୂଆ ସ୍ଥାପନ କରିଥିଲେ । ପଞ୍ଚାୟତ ହେଉଛି ଭାରତବର୍ଷର ସରକାର ଗଠନ ପ୍ରଣାଳୀର ଏକ ନିମ୍ନସ୍ତରର ଏକକ ଯାହା ମାଧ୍ୟମରେ ଲୋକମାନେ ସ୍ୱତଃପ୍ରବୃତ୍ତ ଅଂଶ ଗ୍ରହଣ କରି ବିଭିନ୍ନ ବିଭାଗରେ ଯଥା- ଶିକ୍ଷା, ସ୍ୱାସ୍ଥ୍ୟ, ସମବାୟ ଓ କୃଷି ବିଭାଗରେ ଉନ୍ନତି ଆଣିବା ସଙ୍ଗେ ସଙ୍ଗେ କ୍ଷମତାର ମଧ୍ୟ ବିକେନ୍ଦ୍ରୀକରଣ (ଅର୍ଥଗତ କ୍ଷମତା, ରାଜନୈତିକ କ୍ଷମତା ଓ ପ୍ରଶାସନିକ କ୍ଷମତା) ସମ୍ଭବ ହୋଇ ପାରୁଛି ।

## ଉତ୍ପତ୍ତି - ସ୍ୱାଧୀନତା ପୂର୍ବରୁ

୧. ବିଭିନ୍ନ ପୁରାଣରେ ପଞ୍ଚାୟତ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଯଥା - ଋକ୍‌ବେଦରେ ପଞ୍ଚାୟତ ହେଉଛି ପ୍ରଶାସନର ପ୍ରାଥମିକ ଏକକ । ସେ ସମୟରେ ଏହି ବ୍ୟବସ୍ଥାକୁ ବୈଦିକ ଗ୍ରାମ ବୋଲି କୁହା ଯାଉଥିଲା । ଏହାର ମୁଖ୍ୟଙ୍କୁ ଗ୍ରାମୀଣ କୁହାଯାଉଥିଲା । ରାଜାଙ୍କ ଅଭିଷେକ କାର୍ଯ୍ୟରେ ସେ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲେ । ସଭାସମିତି ରେ ଗ୍ରାମର ସମସ୍ୟା ବିଷୟରେ ଆଲୋଚନା କରାଯାଉଥିଲା । ଋକ୍‌ବେଦରେ ଏହି ପ୍ରଥାକୁ ଗ୍ରାମକ୍ଷେତ୍ରରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥା କୁହାଯାଉଥିଲା ।

୨. ବାୟୁ ପୁରାଣ :- ଏହି ପୁରାଣରେ ସାମାଜିକ ପ୍ରଥା, ରାଜନୈତିକ ସ୍ଥିତି, ଭୌଗୋଳିକ ସ୍ଥିତି, ସଂପ୍ରଦାୟ, ଜାତି, ଉପଜାତି ଭିତ୍ତିରେ ନେଇ ଜନପଦ ପଞ୍ଚାୟତ ଗଠନ କରାଯାଉଥିଲା ।

୩. ରାମାୟଣ ଓ ମହାଭାରତ :- ଏଥିରେ ଗ୍ରାମ ବିଧାନ ସଭାର ପ୍ରଚଳନ କରାଯାଇଥିଲା । ଗ୍ରାମ ଓ ପଡ଼ାର ମୁଖ୍ୟଙ୍କୁ ନେଇ ଏହା ଗଠିତ ହୋଇଥିଲା । ସେ ଅଞ୍ଚଳର ରାଜସ୍ୱ ଆଦାୟ ଓ ଗ୍ରାମର ଆବଶ୍ୟକୀୟ କାଗଜପତ୍ର ରଖୁଥିଲେ । ତତ୍‌ସଙ୍ଗେ ସଙ୍ଗେ ଗ୍ରାମରେ ଉପୁଜୁଥିବା କଳହର ଆଶୁ ସମାଧାନ ଓ ଅସାମାଜିକ କାର୍ଯ୍ୟର ନିରାକରଣ କରୁଥିଲେ । ଏହାକୁ ସୁପରିଚାଳନା କରିବା ପାଇଁ ମୁଖିଆମାନଙ୍କର ଏକ ପରିଷଦ ଗଠନ କରାଯାଉଥିଲା । ମହାଭାରତରେ ବର୍ଣ୍ଣିତ ଅଛି ଯେ ଗୋପ ନାମକ ଏକ ସର୍ବୋଚ୍ଚ ପଞ୍ଚାୟତ ଅଧିକାରୀ ରହୁଥିଲା । ତାଙ୍କ ଅଧୀନରେ ୫ରୁ ୨୫ଟି ପର୍ଯ୍ୟନ୍ତ ଗ୍ରାମ ପରିଚାଳିତ ହେଉଥିଲା ।

୪. ବୌଦ୍ଧଧର୍ମର ଜାତକ ଗଳ୍ପ :- ଏଥିରେ ଲିଖିତ ଅଛି ଯେ ଉଲ୍ଲିଖିତ ଘଟଣାବଳୀର ସର୍ବୋଚ୍ଚ ଅଧିକାରୀ ହେଉଛନ୍ତି ଗ୍ରାମର ମୁଖିଆ । ଗ୍ରାମର ରାସ୍ତା ନିର୍ମାଣ ଓ ମରାମତି, ଜଳଭଣ୍ଡାର, ପୋଖରୀ ଖନନ ଇତ୍ୟାଦି କାର୍ଯ୍ୟ କରୁଥିଲେ ।

୫. କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର :- ଏଥିରେ ଗ୍ରାମର ଗଠନ ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା । ମୁଖିଆ ଗ୍ରାମର ଆକାର, ଦୁଇଟି ଗ୍ରାମ ମଧ୍ୟରେ ଦୂରତ୍ୱ, ପଞ୍ଚାୟତ ଗଠନରେ ଗ୍ରାମର ସଂଖ୍ୟା ନିର୍ଦ୍ଧାରଣ କରୁଥିଲେ । ଦୁଇ ସ୍ତରୀୟ ପଞ୍ଚାୟତରାଜ ବ୍ୟବସ୍ଥାର ସୂତ୍ରପାତ କରିଥିଲେ । (କ) ଗ୍ରାମସ୍ତରୀୟ ପଞ୍ଚାୟତ ଯାହାର ମୁଖ୍ୟଙ୍କୁ ଗୋପ କୁହାଯାଉଥିଲା । (ଖ) ଜିଲ୍ଲାସ୍ତରୀୟ ପଞ୍ଚାୟତ ଯାହାର ମୁଖ୍ୟଙ୍କୁ ରାଜୁକା କୁହାଯାଉଥିଲା । ଗ୍ରାମରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ଆରକ୍ଷୀ ବାହିନୀର ପ୍ରଚଳନ କରାଯାଉଥିଲା ।

୬. ମନୁ ସଂହିତା - ଏଥିରେ ଗ୍ରାମପଞ୍ଚାୟତ ସଂଗଠନ ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

୭. ମୋଗଲ ସାମ୍ରାଜ୍ୟ - ଏ ସମୟରେ ପୂର୍ବଭଳି ପଞ୍ଚାୟତର ପ୍ରାଧାନ୍ୟ ସ୍ଥିତି ବିସ୍ତାର ଲାଭ କରି ପାରିଲା ନାହିଁ । ଏହା କ୍ରମେ ଲୋପ ପାଇବାକୁ ବସିଲା ।

୮. ବ୍ରିଟିଶ ଶାସନ - ପଞ୍ଚାୟତରାଜ ଏ ସମୟରେ ଅବହେଳିତ ହେଲା । ପଞ୍ଚାୟତରାଜର ଗୁରୁତ୍ୱ ଲୋପ ପାଇଗଲା । ପଞ୍ଚାୟତ ମୁଖ୍ୟ କର୍ମଚାରୀମାନଙ୍କଠାରୁ କ୍ଷମତା କାଢ଼ି ନିଆଗଲା । ପ୍ରତ୍ୟକ୍ଷ ଭାବରେ ବ୍ରିଟିଶ କର୍ମଚାରୀମାନେ ଲୋକମାନଙ୍କ ଠାରୁ କର ଆଦାୟ କଲେ । ବ୍ରିଟିଶ ସାମ୍ରାଜ୍ୟର ଶେଷ ଭାଗରେ ପଞ୍ଚାୟତରାଜର ପୁନରୁଦ୍ଧାର ପାଇଁ ପଦକ୍ଷେପ ନିଆଗଲା । ୧୮୭୦ ମସିହାରେ ଲର୍ଡ଼ ମେଓଙ୍କ ଅମଳରେ ପ୍ରଦେଶର ବିକେନ୍ଦ୍ରୀକରଣ, ବିଭାଗୀକରଣ, ଅର୍ଥର ବିକେନ୍ଦ୍ରୀକରଣ କରାଗଲା ।୧୮୮୨ ମସିହାରେ ଲର୍ଡ଼ ରିପନ୍ ସ୍ୱାୟତ୍ତଶାସନ ବ୍ୟବସ୍ଥାରେ ଅନେକ ପରିବର୍ତ୍ତନ ଆଣିଥିବାରୁ ତାଙ୍କୁ ସ୍ୱାୟତ୍ତଶାସନ ବ୍ୟବସ୍ଥାର ଜନକ ବୋଲି କୁହାଯାଏ । ୧୯୦୮ ମସିହାରେ ବିକେନ୍ଦ୍ରୀକରଣ କମିଶନ ଗଠନ କରାଯାଇଥିଲା । ଏଥିରେ ଗ୍ରାମ ପଞ୍ଚାୟତର କ୍ଷମତାକୁ ବଢ଼ାଇ ଦିଆଯାଇଥିଲା । ଗ୍ରାମପଞ୍ଚାୟତ ଗୁଡ଼ିକ ଗ୍ରାମ ବିଦ୍ୟାଳୟ ଗଠନ ଓ ପରିଚାଳନା, ଗ୍ରାମରେ ଜାଳେଣୀ, ଗୋଖାଦ୍ୟର ପରିଚାଳନା, ଫୌଜଦାରୀ ଓ ଦେୱାନୀ ମାମଲାର ସମାଧାନ ଦାୟିତ୍ୱ ତୁଲାଉ ଥିଲେ । ୧୯୦୯ ମସିହାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ପଞ୍ଚାୟତରାଜର ପୁନରାବୃତ୍ତି ଉପରେ ଆଲୋଚନା କରାଯାଇଥିଲା । ସାମ୍ବିଧାନିକ ସଂଶୋଧନ ପାଇଁ ଗଠନ କରାଯାଇଥିବା ମୋତିଲାଲ ନେହେରୁ କମିଟି ପଞ୍ଚାୟତ ଗଠନ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଗ୍ରାମ

ସଭାରୁ ଲୋକସଭା ପର୍ଯ୍ୟନ୍ତ ଗଣତନ୍ତ୍ରର ସୁସମ୍ପର୍କ ରହୁ ବୋଲି ଜୟ ପ୍ରକାଶ ନାରାୟଣ ଗୁରୁତ୍ୱ ଦେଇଥିଲେ । ସମ୍ବିଧାନର ଜନକ ଭୀମରାଓ ଆମ୍ବେଦକର ସମ୍ବିଧାନ ଲେଖିବା ସମୟରେ ପଞ୍ଚାୟତରାଜ ଅନୁଷ୍ଠାନ ସ୍ଥାପନ ପାଇଁ ମତ ପ୍ରଦାନ କରିଥିଲେ ।

## ସ୍ୱାଧୀନତା ପ୍ରାପ୍ତି ପରେ

ସମ୍ବିଧାନ ଓ ପଞ୍ଚାୟତରାଜ - ସମ୍ବିଧାନର ଚତୁର୍ଥ ରାଷ୍ଟ୍ରୀୟ ନିର୍ଦ୍ଦେଶ ମୂଳକ ନୀତିରେ ଗାନ୍ଧିଜୀଙ୍କ ସ୍ୱପ୍ନ ବାସ୍ତବରେ ପରିଣତ ହୋଇ ପାରିଥିଲା । ସମ୍ବିଧାନ୪୦ ଧାରାରେ ପଞ୍ଚାୟତରାଜ ଗଠନ ସାମ୍ବିଧାନିକ ଆଇନ ହୋଇ ରହିଲା ।

## ଭାରତର ପଞ୍ଚବାର୍ଷିକ ଯୋଜନା

ପଞ୍ଚାୟତରାଜକୁ ସୁଦୃଢ଼ କରିବା ପାଇଁ ପଞ୍ଚବାର୍ଷିକ ଯୋଜନା (ତା ୨.୧୦.୧୯୫୨) ରେ ସମ୍ପ୍ରଦାୟ ଉନ୍ନୟନ ଯୋଜନା ଓ ସମ୍ପ୍ରଦାୟ ଉନ୍ନୟନ ଆନ୍ଦୋଳନ କାର୍ଯ୍ୟକାରୀ କରାଯାଇଥିଲା । ତା ୧୯.୬.୧୯୫୪ ମସିହାରେ ଉଚ୍ଚ କ୍ଷମତା ସମ୍ପନ୍ନ କମିଟି ଗଠନ କରାଗଲା । ଯାହାର ମୁଖ୍ୟ ଆଭିମୁଖ୍ୟ ଥିଲା ପଞ୍ଚାୟତରାଜରେ ସଂଶୋଧନ ଆଣିବା । ଏହି କମିଟି ନିମ୍ନଲିଖିତ କାର୍ଯ୍ୟତାଲିକା ସୁପାରିଶ କଲେ ।

(୧) ଆଞ୍ଚଳିକ ଜନସାଧାରଣଙ୍କୁ ସମସ୍ତ ପ୍ରକାର ସୁଯୋଗ ଦିଆଯିବ ।

(୨) ଗ୍ରାମ ଉନ୍ନୟନ କାର୍ଯ୍ୟରେ ଲୋକମାନଙ୍କୁ ଉତ୍ସାହିତ କରାଯିବ ।

(୩) ବୈଜ୍ଞାନିକ ପଦ୍ଧତିରେ କର୍ମଯୋଗାଣ ପନ୍ଥା ଅବଲମ୍ବନ କରାଯିବ । ଯଥା - ଉନ୍ନତ ବିହନ, ମତ୍ସ୍ୟଚାଷ, ପଶୁ ପାଳନ ଇତ୍ୟାଦି) ।

## ବଲବନ୍ତ ମେହେଟ୍ଟା କମିଟି (୧୯୫୬-୫୭)

ଉକ୍ତ କମିଟିର କାର୍ଯ୍ୟପନ୍ଥା ଗୁଡ଼ିକ ହେଲା - (କ) ତ୍ରିସ୍ତରୀୟ ପଞ୍ଚାୟତ ବ୍ୟବସ୍ଥା (ଖ) ହରିଜନ ଆଦିବାସୀ ମହିଳାଙ୍କର ସ୍ଥାନ ସଂରକ୍ଷଣ (ଗ) ପଞ୍ଚାୟତ ସମିତିର କାର୍ଯ୍ୟକାଳ ୫ ବର୍ଷ (ଘ) ଜିଲ୍ଲା ବୋର୍ଡ଼ ଗଠନ (ଙ) ପଛୁଆ ବର୍ଗଙ୍କର ସାମାଜିକ ଉନ୍ନତି ।

## ଅଶୋକ ମେହେଟ୍ଟା କମିଟି (୧୯୭୭-୭୮)

ଉକ୍ତ କମିଟିର କାର୍ଯ୍ୟପନ୍ଥାଗୁଡ଼ିକ ହେଲା -

(କ) ଦ୍ୱି-ସ୍ତରୀୟ ପଞ୍ଚାୟତ । ଗ୍ରାମସ୍ତରୀୟ (ମଣ୍ଡଳ ପଞ୍ଚାୟତ) ଓ ଜିଲ୍ଲା ସ୍ତରୀୟ (ଜିଲ୍ଲା ପରିଷଦ)

(ଖ) ଗ୍ରାମ ସଭାର ପ୍ରାଧାନ୍ୟ । (ଗ) ପଞ୍ଚାୟତର କାର୍ଯ୍ୟକାଳ ୪ ବର୍ଷ । (ଘ) ଗ୍ରାମ କମିଟି ଗଠନ (ଙ) ନ୍ୟାୟ ପଞ୍ଚାୟତ (ଚ) ପଞ୍ଚାୟତରାଜ ବ୍ୟବସ୍ଥା ପାଇଁ ଯୋଜନା କମିଶନ (ଛ) ସ୍ଥାନ ସଂରକ୍ଷଣ ।

## ଜି.ଭି.କେ.ରାଓ କମିଟି (୧୯୮୫)

(କ) ପଞ୍ଚାୟତର କାର୍ଯ୍ୟକାଳ ୫ ବର୍ଷ

(ଖ) ପଞ୍ଚାୟତର ସମସ୍ତ ସଦସ୍ୟ ପ୍ରତ୍ୟକ୍ଷଭାବେ ନିର୍ବାଚିତ ହେବେ ।

(ଗ) ଗ୍ରାମ ସଭା ଓ ମଣ୍ଡଳ ପଞ୍ଚାୟତ ଗଠନ ।

## ଏଲ୍.ଏମ୍. ସିଂଘଭି କମିଟି (୧୯୮୬)

ଉକ୍ତ କମିଟିର ସୁପାରିଶଗୁଡ଼ିକ ହେଲା :-

(୧) ତ୍ରିସ୍ତରୀୟ ପଞ୍ଚାୟତ (୨) ସମନ୍ୱୟ ପଞ୍ଚାୟତ ଗଠନ (୩) ନ୍ୟାୟ ପଞ୍ଚାୟତ (୪) ପଞ୍ଚାୟତରାଜକୁ ସାମ୍ବିଧାନିକ ସୁରକ୍ଷା (୫) ଗ୍ରାମ ସ୍ୱରାଜ୍ୟ (୬) ରାଜନୈତିକ ଦଳର ପଞ୍ଚାୟତରେ ଅନ୍ତର୍ଭୁକ୍ତ ।

## ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବିଂଶ ସୂତ୍ରୀ କାର୍ଯ୍ୟକ୍ରମ

ଗ୍ରାମ ପଞ୍ଚାୟତ ଗଠନ ଓ ଜନସାଧାରଣମାନଙ୍କୁ ଶାସନରେ କ୍ଷମତା ପ୍ରଦାନ ବିଂଶସୂତ୍ରୀ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା ।

## ରାଜୀବଗାନ୍ଧୀ ଓ ପଞ୍ଚାୟତରାଜ (୧୯୮୯)

ଏହି ସମୟରେ ସମ୍ବିଧାନର ୬୪ତମ ସଂଶୋଧନ ବିଲ୍ ଆଗତ କରାଗଲା କିନ୍ତୁ ଏହି ବିଲ୍ ରାଜ୍ୟସଭାରେ ନାକଚ ହୋଇଗଲା । ବିଲ୍‌ର ମୁଖ୍ୟ ଲକ୍ଷଣଗୁଡ଼ିକ ହେଲା -(୧) ସମ୍ବିଧାନରେ ନୂତନ ଧାରା (୨୪୩ର ସ୍ଥାନ) ନବମ ଭାଗ ସଂଯୋଗ । (୨) ବାଧ୍ୟତାମୂଳକ ତ୍ରିସ୍ତରୀୟ ବ୍ୟବସ୍ଥା (୩) ପଞ୍ଚାୟତର ମୁଖ୍ୟ ସଦସ୍ୟମାନେ ପ୍ରତ୍ୟକ୍ଷଭାବେ ନିର୍ବାଚିତ ହେବେ (୪) ସଦସ୍ୟମାନଙ୍କର ଭୋଟ ଦେବାର ଅଧିକାର (୫) ସ୍ଥାନ ସଂରକ୍ଷଣ (ମହିଳା, ହରିଜନ, ଆଦିବାସୀ) (୬) କାର୍ଯ୍ୟକାଳ ୨ ବର୍ଷ (୭) ପଞ୍ଚାୟତ ପରିଚାଳନା ପାଇଁ ରାଜ୍ୟ ରାଜକୋଷରୁ ଆର୍ଥିକ ସାହାଯ୍ୟ ପ୍ରଦାନ ।

## ଓଡ଼ିଶାରେ ପଞ୍ଚାୟତରାଜର ଉତ୍ପତ୍ତି

ଓଡ଼ିଶାରେ ପଞ୍ଚାୟତରାଜ ବହୁ ପୁରାକାଳରୁ ପ୍ରଚଳିତ ଥିଲା । କନିଷ୍କଙ୍କ ରାଜତ୍ୱ ସମୟରୁ ପଞ୍ଚାୟତ ନିୟମାବଳୀ ପଥରରେ ଖୋଦିତ କରାଯାଇ ଛକ ସ୍ଥାନମାନଙ୍କରେ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ରଖାଯାଇଥିଲା । କଳିଙ୍ଗ ରାଜତ୍ୱ ସମୟରେ (ଅଶୋକ) ଜନସାଧାରଣଙ୍କ ସୁବିଧା ପାଇଁ ରାସ୍ତାକଡ଼ରେ ବୃକ୍ଷରୋପଣ, କୂପ ଖନନ, ପାନ୍ଥଶାଳା ନିର୍ମାଣ କରାଯାଉଥିଲା ।

ଓଡ଼ିଶା, ଆନ୍ଧ୍ରପ୍ରଦେଶ ଓ ରାଜସ୍ଥାନ ଭଳି ୧୯୫୯ ମସିହାରେ ଓଡ଼ିଶା ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ଅଧି ବିଧାନସଭାରେ ଆଗତ କରାଯାଇଥିଲା । ଏହା ତା ୧୫.୨.୧୯୬୦

ମସିହାରେ ରାଜ୍ୟପାଳଙ୍କ ସ୍ୱୀକୃତି ପାଇଲା । ତା ୨୬.୧.୧୯୬୧ ମସିହାରେ ରାଜ୍ୟ ସ୍ତରରେ କାର୍ଯ୍ୟକାରୀ କରାଗଲା । ପଞ୍ଚାୟତରାଜକୁ ସୁଦୃଢ଼ କରିବା ପାଇଁ ପୂର୍ବ ଆକ୍ଟକୁ ୧୯୬୨, ୧୯୬୫ ଓ ୧୯୬୮ ମସିହାରେ ସଂଶୋଧନ କରାଗଲା । ଏହାର ମୁଖ୍ୟ ଲକ୍ଷଣ ହେଲା ସରପଞ୍ଚ ପରୋକ୍ଷ ଭାବରେ ନିର୍ବାଚିତ ନହୋଇ ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ହେବେ । ଜିଲ୍ଲା ପରିଷଦ ବଦଳରେ ଜିଲ୍ଲା ଉପଦେଷ୍ଟା ପରିଷଦ ଗଠନ କରାଗଲା । ଦ୍ୱିସ୍ତରୀୟ ପଞ୍ଚାୟତ ବ୍ୟବସ୍ଥା ପ୍ରଚଳନ ହେଲା ।

ଜିଲ୍ଲା ଉପଦେଷ୍ଟା ପରିଷଦର କାର୍ଯ୍ୟ - ଉନ୍ନତିମୂଳକ କାର୍ଯ୍ୟରେ ସରକାରଙ୍କୁ ଉପଦେଶ ପ୍ରଦାନ । କାର୍ଯ୍ୟ ସୁପରିଚାଳନା କମିଟି ଗଠନ । ଉକ୍ତ କାର୍ଯ୍ୟ ନିମ୍ନଲିଖିତ ବ୍ୟକ୍ତିମାନଙ୍କ ଦ୍ୱାରା ସଂପାଦିତ ହେଉଥିଲା । ଜିଲ୍ଲାପାଳ, ବିଧାୟକ, ଲୋକସଭା ସଦସ୍ୟ, ପଞ୍ଚାୟତ ସମିତିର ଅଧ୍ୟକ୍ଷ, ପୌରପାଳିକାର ଅଧ୍ୟକ୍ଷ, କେନ୍ଦ୍ର ସମବାୟ ବ୍ୟାଙ୍କର ସଭାପତି, ଭୂ-ବନ୍ଧକ ବ୍ୟାଙ୍କର ସଭାପତି ଓ ସରକାରୀ କର୍ମଚାରୀ । ଜିଲ୍ଲାପାଳଙ୍କ ସଭାପତିତ୍ୱରେ ବର୍ଷକୁ ତିନିଥର ସଭା ଅନୁଷ୍ଠିତ ହେଉଥିଲା ।

ପଞ୍ଚାୟତ ସମିତି :- ନିମ୍ନଲିଖିତ ବ୍ୟକ୍ତି ବିଶେଷଙ୍କୁ ନେଇ ଉକ୍ତ କମିଟି ଗଠନ କରାଗଲା । ମଣ୍ଡଳ ଉନ୍ନୟନ ଅଧିକାରୀ, ବିଭିନ୍ନ ବିଭାଗୀୟ କର୍ମକର୍ତ୍ତା (ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ପଶୁପାଳନ) ସରପଞ୍ଚ, ପୌରପାଳିକା ଅଧ୍ୟକ୍ଷ, ବିଜ୍ଞାପିତ ଅଞ୍ଚଳ ପରିଷଦର ଅଧ୍ୟକ୍ଷ, ମଣ୍ଡଳ ଉନ୍ନୟନ ଅଧିକାରୀ ମୁଖ୍ୟ କାର୍ଯ୍ୟକାରୀ ରହିବେ । ସମିତି ଅଧ୍ୟକ୍ଷ ସଭାପତିତ୍ୱ କରିବେ । ସମିତିରେ ଜଣେ ଉପ-ଅଧ୍ୟକ୍ଷ ରହିବେ । ଯୋଜନା ପ୍ରସ୍ତୁତ କରିବା ଓ ତଦାରଖ କରିବା ଏହାର ମୁଖ୍ୟ କାର୍ଯ୍ୟ ।

ଗ୍ରାମ ପଞ୍ଚାୟତ - ଓଡ଼ିଶା ପଞ୍ଚାୟତ ଆକ୍ଟ ୧୯୬୫ ମସିହାରେ କାର୍ଯ୍ୟକାରୀ ହେଲା । ସେହି ବର୍ଷ ଆଧୁନିକୀକରଣ କରାଯାଇ କାର୍ଯ୍ୟକାଳ ୩ ବର୍ଷ ଧାର୍ଯ୍ୟ କରାଗଲା । ସଦସ୍ୟ ସଂଖ୍ୟା ୧୧ ପରିବର୍ତ୍ତେ ୨୫ କୁ ସ୍ଥିର କରାଗଲା । ସରପଞ୍ଚ, ନ୍ୟାୟବ ସରପଞ୍ଚ ଓ ୱାର୍ଡମେମ୍ବରଙ୍କୁ ନେଇ ଏହା ଗଠନ କରାଗଲା । ପ୍ରତି ୱାର୍ଡରୁ ଜଣେ ଲେଖାଏଁ ପଞ୍ଚ ନିର୍ବାଚନ କରାଗଲା । ପଞ୍ଚଙ୍କର କାର୍ଯ୍ୟକାଳ ୩ ବର୍ଷ । ଗ୍ରାମ ପଞ୍ଚାୟତର ଜଣେ ମୁଖ୍ୟ ସଦସ୍ୟ ରୂପେ ପଞ୍ଚଙ୍କୁ ଗ୍ରହଣ କରାଗଲା । ସରପଞ୍ଚ ବୈଠକରେ ସଭାପତିତ୍ୱ କଲେ । ସରପଞ୍ଚଙ୍କ ନିଷ୍ପତ୍ତି କ୍ରମେ ପଞ୍ଚାୟତର ବିଭିନ୍ନ କାର୍ଯ୍ୟ ନିର୍ଦ୍ଧାରଣ କରାଗଲା ।

(୧) ଇଚ୍ଛାଧୀନ କାର୍ଯ୍ୟ :- ରାସ୍ତା ନିର୍ମାଣ, ମରାମତି, ସଫେଇ ଓ ଆଲୋକ ଯୋଗାଣ କରିବା ପରିବର୍ତ୍ତେ କୃଷି, ସମବାୟ ସଂସ୍ଥା, କୃଷି ଉତ୍ପାଦନ ଦ୍ରବ୍ୟ ବିକ୍ରୀ ପାଇଁ ହାଟ, ଗୋପାଳନ, ବୃକ୍ଷରୋପଣ, ଗ୍ରାମରେ ଗ୍ରନ୍ଥାଗାର ସ୍ଥାପନ ।

(୨) ବାଧ୍ୟତାମୂଳକ କାର୍ଯ୍ୟ - ଜନ୍ମ-ମୃତ୍ୟୁ ପଞ୍ଜିକରଣ, ପ୍ରାଥମିକ ଶିକ୍ଷାର ପ୍ରସାର, ଗ୍ରାମରକ୍ଷୀ ମୁତୟନ, କୂଅ, ପୋଖରୀ ଖନନ ଓ ମରାମତି, ରାସ୍ତା ନିର୍ମାଣ, ମରାମତି, ବିଜୁଳି ଆଲୋକ ଯୋଗାଣ ।

ଅଦାଲତ ପଞ୍ଚାୟତ - ନାଏବ ସରପଞ୍ଚ ଏହାର ମୁଖ୍ୟ ଅଟନ୍ତି । ଗ୍ରାମର କଳହ ସମାଧାନ କରି ନ୍ୟାୟ ପ୍ରଦାନ କରୁଥିଲେ ।

## ୭୩ତମ ସମ୍ବିଧାନ ସଂଶୋଧନ ପରିପ୍ରେକ୍ଷୀରେ ଓଡ଼ିଶାରେ ପଞ୍ଚାୟତରାଜର ସ୍ଥିତି ଓ ପ୍ରଗତି

ସେପ୍ଟେମ୍ବର ୧୯୯୧ ମସିହାରେ ୭୩ତମ ସମ୍ବିଧାନ ସଂଶୋଧନ ବିଲ୍ ଆଗତ ହେଲା । ୧୯୯୨ ମସିହାରେ ଏହା କାର୍ଯ୍ୟକାରୀ ହେଲା । ଏହି ପରିପ୍ରେକ୍ଷୀରେ ଓଡ଼ିଶାରେ ପଞ୍ଚାୟତରାଜ ପ୍ରଗତି ପଥରେ ଅଗ୍ରସର ହେଲା । ଏହାର ମୁଖ୍ୟ ଉଦ୍ଦେଶ୍ୟଗୁଡ଼ିକ ହେଲା -

(୧) ତ୍ରିସ୍ତରୀୟ ପଞ୍ଚାୟତରାଜ

(୨) କାର୍ଯ୍ୟକାଳ ୫ ବର୍ଷ

(୩) ରାଜ୍ୟ ନିର୍ବାଚନ ଆୟୋଗ ଗଠନ

(୪) ରାଜ୍ୟ ଅର୍ଥ ଆୟୋଗ ଗଠନ

(୫) ନିରପେକ୍ଷ ନିର୍ବାଚନ

(୬) ସ୍ଥାନ ସଂରକ୍ଷଣ (ହରିଜନ, ଆଦିବାସୀ, ମହିଳା)

(୭) ଏକାଦଶ ଅନୁଚ୍ଛେଦ ଓ ନବମ ବିଭାଗ ସମ୍ବିଧାନରେ ସଂଯୋଗ କରାଗଲା ।

ଉପରୋକ୍ତ ଲକ୍ଷଣଗୁଡ଼ିକ ଓଡ଼ିଶାରେ କାର୍ଯ୍ୟକାରୀ ହେଉଛି ।

ନିମ୍ନଲିଖିତ କାରଣଗୁଡ଼ିକ ଯୋଗୁଁ ଓଡ଼ିଶାରେ ପଞ୍ଚାୟତରାଜର ସଫଳତାରେ ବାଧା ସୃଷ୍ଟି ହେଉଛି ।

(୧) ନାଗରିକମାନେ ନିରକ୍ଷର ।

(୨) ପାରିବାରିକ ଆଭିଜାତ୍ୟ, ଜାତି ଓ ବ୍ୟକ୍ତିଗତ ସମ୍ପର୍କକୁ ନେଇ ଭୋଟ ଗ୍ରହଣ ଚାଲିଛି ।

(୩) ଗଣତନ୍ତ୍ର ପ୍ରତି ସଚେତନଶୀଳ ନୁହନ୍ତି ।

(୪) ରାଜନୈତିକ ଦଳମାନେ ଗ୍ରାମର ଶାନ୍ତିଶୃଙ୍ଖଳାକୁ ନଷ୍ଟ କରି ଗ୍ରାମଗୁଡ଼ିକୁ ନିଜର ରଣକ୍ଷେତ୍ରରେ ପରିଣତ କରୁଛନ୍ତି ।

(୫) ପଞ୍ଚାୟତ କର୍ମଚାରୀମାନେ ଅନଭିଜ୍ଞ ଓ ଅଣତାଲିମପ୍ରାପ୍ତ ।

(୬) ପ୍ରତ୍ୟେକ କ୍ଷେତ୍ରରେ ସରକାରୀ କଳର ହସ୍ତକ୍ଷେପ ।

ନିମ୍ନଲିଖିତ ପଦକ୍ଷେପ ଗ୍ରହଣ କରାଗଲେ, ୭୩ତମ ସମ୍ବିଧାନ ସଂଶୋଧନ ଆଇନ ସଫଳ ହୋଇ ପାରିବ ।

(୧) ଶିକ୍ଷାର ପ୍ରସାର

(୨) ତାଲିମ କେନ୍ଦ୍ର ସ୍ଥାପନ ଓ ତାଲିମ ଦେବାର ବ୍ୟବସ୍ଥା

(୩) ପଞ୍ଚାୟତକୁ ସକ୍ରିୟ ରାଜନୀତିରୁ ଦୂରେଇ ରଖିବା

(୪) ଅର୍ଥ ଯୋଗାଣ ବ୍ୟବସ୍ଥା

ରିସର୍ଚ୍ଚ ସ୍କୋଲାର୍
ମାର୍ଫତ - ଦୁର୍ଯ୍ୟୋଧନ ପ୍ରଧାନ,
ଗ୍ରା - ମାଧପୁର, ପୋଷ୍ଟ-ଶାଳଗାଁ
ଜିଲ୍ଲା - କଟକ

# ବିଧି ବିଭାଗର କାର୍ଯ୍ୟାବଳୀ

## ନ୍ୟାୟ ପ୍ରଶାସନ

ଜନସାଧାରଣଙ୍କୁ ସହଜ ଓ ସୁବିଧାରେ ନ୍ୟାୟ ପ୍ରଦାନ ତଥା ନ୍ୟାୟ ପ୍ରଶାସନ ବ୍ୟବସ୍ଥାକୁ ଅଧିକ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ସରକାର ଚଳିତ ଆର୍ଥିକ ବର୍ଷ ମଧ୍ୟରେ କୁଜଙ୍ଗଠାରେ ଗୋଟିଏ ମୁନସିଫ୍ କୋର୍ଟ ପ୍ରତିଷ୍ଠା କରିଅଛନ୍ତି । ଏହା ବ୍ୟତୀତ ପିପିଲିଠାରେ ମଧ୍ୟ ଗୋଟିଏ ମୁନ୍‌ସିଫ୍ କୋର୍ଟ ପ୍ରତିଷ୍ଠା ନିମନ୍ତେ ବିହିତ ପଦକ୍ଷେପ ଗ୍ରହଣ କରାଯାଉଛି । ଏତଦ୍‌ଭିନ୍ନ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ରାଜ୍ୟର ମାଲକାନଗିରି, ରଞ୍ଜନଗର, ସୋନପୁର, ବାରିପଦା ଏବଂ ଝାରସୁଗୁଡ଼ାଠାରେ ଗୋଟିଏ ଲେଖାଏଁ ଅତିରିକ୍ତ ଜିଲ୍ଲା ଜଜ୍ କୋର୍ଟ ପ୍ରତିଷ୍ଠା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଅଛି ।

କେନ୍ଦ୍ରୀୟ ଯୋଜନା ଅନୁଯାୟୀ କେବଳ ସି.ବି.ଆଇ. କେଶ୍‌ଗୁଡ଼ିକୁ ଗୋଟିଏ ସ୍ୱତନ୍ତ୍ର କୋର୍ଟରେ ବିଚାର କରାଯିବା ନିଷ୍ପତ୍ତି ଅନୁସାରେ ଭୁବନେଶ୍ୱରଠାରେ ଉକ୍ତ କୋର୍ଟ ଗୃହ ନିର୍ମାଣ ନିମନ୍ତେ ଚଳିତ ବର୍ଷରେ ୨୦.୧୪ ଲକ୍ଷ ଟଙ୍କା ବରାଦ କରାଯାଉଅଛି ଏବଂ ଏଥିନିମନ୍ତେ ପୁନଶ୍ଚ ରାଜ୍ୟ ଯୋଜନା ଓ କେନ୍ଦ୍ରୀୟ ଯୋଜନାରୁ ଯଥାକ୍ରମେ ୫୩ ଲକ୍ଷ ଏବଂ ୧୦ଲକ୍ଷ ଟଙ୍କା ବରାଦ କରାଯିବାର ପଦକ୍ଷେପ ଗ୍ରହଣ କରାଯାଉଅଛି ।

ରାଜ୍ୟ ଲୋକସେବା ଆୟୋଗଙ୍କ ଦ୍ୱାରା ସମର୍ଥିତ ୨୦ ଜଣ ପ୍ରାର୍ଥୀଙ୍କୁ ନ୍ୟାୟିକ ସେବାରେ ମୁତୟନ କରାଯିବା ନିମନ୍ତେ ଆବଶ୍ୟକୀୟ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଅଛି ।

## ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରଶାସନ

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା ତା ୨୬.୬.୯୮ ଏବଂ ବାହୁଡ଼ା ଯାତ୍ରା ତା ୪.୭.୯୮ରେ ଶାନ୍ତି ଶୃଙ୍ଖଳା ମଧ୍ୟରେ ଅନୁଷ୍ଠିତ ହୋଇଯାଇଅଛି । ଶ୍ରୀ ଜୀଉଙ୍କର ଦର୍ଶନ ନିମନ୍ତେ ସମସ୍ତ ଆୟୋଜନ ସହ ନିରାପତ୍ତା, ସ୍ୱାସ୍ଥ୍ୟ, ଜଳଯୋଗାଣ, ଆଲୋକ ବ୍ୟବସ୍ଥା ଇତ୍ୟାଦି କ୍ଷେତ୍ରରେ ବିଭିନ୍ନ ସତର୍କମୂଳକ ପଦକ୍ଷେପମାନ ଗ୍ରହଣ କରାଯାଇଥିଲା, ଯାହା ଫଳରେ ଲକ୍ଷ ଲକ୍ଷ ଯାତ୍ରୀ ନିରାପଦରେ ରଥଯାତ୍ରା ଉପଭୋଗ କରିବାରେ ସମର୍ଥ ହୋଇଥିଲେ ।

ଚଳିତ ଆର୍ଥିକ ବର୍ଷ ପାଇଁ ମନ୍ଦିର ପ୍ରଶାସନ ନିମନ୍ତେ ଏବଂ ମହାପ୍ରଭୁଙ୍କର ବିଭିନ୍ନ ପର୍ବପର୍ବାଣୀ ପାଳନ ନିମନ୍ତେ ଶ୍ରୀ ମନ୍ଦିର ପ୍ରଶାସନକୁ ଯଥାକ୍ରମେ ୧(ଏକ) କୋଟି ଟଙ୍କା ଏବଂ ୧୫ଲକ୍ଷ ଟଙ୍କା, ଏହାଛଡ଼ା ୩ଲକ୍ଷ ଟଙ୍କା ସୁଧମୁକ୍ତ ଋଣ ମଞ୍ଜୁର କରାଯାଇଛି । ଏହାବ୍ୟତୀତ ଶ୍ରୀ ମନ୍ଦିର ପ୍ରଶାସନକୁ ୪ କୋଟି ଟଙ୍କାର ଏକ ସ୍ୱତନ୍ତ୍ର ଅନୁଦାନ ଚଳିତ ଆର୍ଥିକ ବର୍ଷରେ ମଞ୍ଜୁର କରାଯାଇଅଛି । ଉକ୍ତ ଟଙ୍କାକୁ ଜାତୀୟକରଣ ବ୍ୟାଙ୍କମାନଙ୍କରେ ସ୍ଥାୟୀ ଜମା ରୂପେ ରଖାଯାଇ ତହିଁରୁ ଉପଲବ୍ଧ ସୁଧରାଶିକୁ ଶ୍ରୀ ଜୀଉଙ୍କର ଦୈନନ୍ଦିନ ନୀତି ଏବଂ ପର୍ବପର୍ବାଣୀ ନିମନ୍ତେ ଖର୍ଚ୍ଚ କରିବାକୁ ସ୍ଥିରୀକୃତ ହୋଇଅଛି । ଏହା ବ୍ୟତୀତ ଶ୍ରୀ ମନ୍ଦିରର ଆଲୋକ ବ୍ୟବସ୍ଥା ନିମନ୍ତେ ବିଜୁଳି ଖର୍ଚ୍ଚ ବାବଦକୁ ଚଳିତ ଆର୍ଥିକ ବର୍ଷରେ ୭ଲକ୍ଷ ଟଙ୍କା ପ୍ରଦାନ କରାଯାଇଅଛି ।

## ହିନ୍ଦୁ ଦେବୋତ୍ତର ଏବଂ ୱାକଫ୍

୧୯୯୮-୯୯ ଆର୍ଥିକ ବର୍ଷରେ ବିଭିନ୍ନ ହିନ୍ଦୁ ଧର୍ମାନୁଷ୍ଠାନଗୁଡ଼ିକୁ ସବ୍‌ସିଡି ଦେବା ନିମନ୍ତେ ବଜେଟ୍‌ରେ ମୋଟ ୪୮ ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଅଛି । ଉପରୋକ୍ତ ଧନରାଶିକୁ ସବ୍‌ସିଡି ପାଇବା ପାଇଁ ଯୋଗ୍ୟ ତଥା ଦୁଃସ୍ଥ ଅନୁଷ୍ଠାନଗୁଡ଼ିକୁ ସେମାନଙ୍କର ମନ୍ଦିର ମରାମତି, ସେବାପୂଜା, ଦୈନିକ ନୀତି ଏବଂ ବିଭିନ୍ନ ପର୍ବପର୍ବାଣୀ ପାଳନ ବାବଦରେ ହେଉଥିବା ବ୍ୟୟ ଭରଣା କରିବା ସକାଶେ ମଞ୍ଜୁର କରାଯାଇଅଛି ।

ଚଳିତ ଆର୍ଥିକ ବର୍ଷରେ ରାଜ୍ୟ ସରକାର ନୂତନ ୱାକଫ୍ ଆଇନ ୧୯୯୫ ଅଧୀନରେ ରାଜ୍ୟରେ ନୂତନ ୱାକଫ୍ ବୋର୍ଡ଼ ଗଠନ କରିଛନ୍ତି ।

## ଆଇନ ସହାୟତା

୧୯୯୮-୯୯ ଆର୍ଥିକ ବର୍ଷ ମଧ୍ୟରେ ଆଇନ ସହାୟତା ପାଇବା ନିମନ୍ତେ ମୋଟ ୪୭୪ ଗୋଟି ଦରଖାସ୍ତ ମିଳିଥିଲା । ଚଳିତ ବର୍ଷ ମିଳିଥିବା ଦରଖାସ୍ତ ଏବଂ ପୂର୍ବବର୍ଷରୁ ବିଚାରାଧୀନ ଥିବା ଦରଖାସ୍ତଗୁଡ଼ିକ ମଧ୍ୟରୁ ମୋଟ ୬୩୨ ଗୋଟି ଦରଖାସ୍ତ ବିଚାର ପାଇଁ ଗୃହୀତ ହୋଇଥିଲା । ତନ୍ମଧ୍ୟରୁ ଅନୁସୂଚିତ ଜାତି, ଅନୁସୂଚିତ ଜନଜାତି, ମହିଳା, ଶିଶୁ ଏବଂ ଅନ୍ୟାନ୍ୟ ଦୁର୍ବଳ ଶ୍ରେଣୀର ଲୋକଙ୍କର ଦରଖାସ୍ତ ସଂଖ୍ୟା ଯଥାକ୍ରମେ ୧୨୫,୧୧୪,୯୨, ୨ ଏବଂ ୨୯୯ ଥିଲା । ଆଇନ ସହାୟତା ପ୍ରଦାନ ସକାଶେ ବିଭିନ୍ନ ଅଦାଲତରେ ମୋକଦ୍ଦମା ଚଳାଇବା ପାଇଁ ଓକିଲ ଫିସ୍ ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ବାବଦରେ ମୋଟ ଟ.୨,୪୬,୧୧୬.୦୦ ଟଙ୍କା ବ୍ୟୟ କରାଯାଇଅଛି ।

ଆଲୋଚ୍ୟ ବର୍ଷ ମଧ୍ୟରେ ବୋର୍ଡ଼ ତଥା ରାଜ୍ୟର ବିଭିନ୍ନ ଜିଲ୍ଲା, ସବଡିଭିଜନ ଓ ତହସିଲ ସ୍ତରରେ ଥିବା ଆଇନ ସହାୟତା ଏବଂ

ପରାମର୍ଶଦାତା କମିଟିଗୁଡ଼ିକ ଦ୍ୱାରା ମୋଟ ୨୬୧ ଗୋଟି ଲୋକ ଅଦାଲତ ଅନୁଷ୍ଠିତ ହୋଇଅଛି । ଉକ୍ତ ଲୋକ ଅଦାଲତଗୁଡ଼ିକରେ ସର୍ବମୋଟ ୧,୯୪,୪୧୪ ଗୋଟି ମାମଲାର ଫଇସଲା ହୋଇପାରିଛି । ସେଥିରୁ ୨୬୨୯ଟି ଦେବାନୀ ମକଦ୍ଦମା, ୬୪,୨୬୧ଟି ଫୌଜଦାରୀ ମୋକଦ୍ଦମା, ୧,୨୫,୫୮୪ଟି ରାଜସ୍ୱ ମୋକଦ୍ଦମା, ୧୩୨ଟି ଭୂ-ଅର୍ଜନ ମୋକଦ୍ଦମା, ୫୨ଟି ଶ୍ରମ ଆଇନ ସମ୍ପର୍କିତ ମୋକଦ୍ଦମା, ୪୬ଟି ବୈବାହିକ ବିବାଦ ସମ୍ବନ୍ଧୀୟ ମୋକଦ୍ଦମା ଏବଂ ୧୬୯୯ଟି ମୋଟରଯାନ ଦୁର୍ଘଟଣା ସମ୍ବନ୍ଧୀୟ ମୋକଦ୍ଦମା ଅନ୍ତର୍ଭୁକ୍ତ ଅଟେ । ଫୌଜଦାରୀ ମୋକଦ୍ଦମା ସମ୍ପର୍କିତ ଜୋରିମାନା ଏବଂ ରାଜସ୍ୱ ବାବଦରେ, ମୋଟ ଟ୬୩,୭୫,୨୨୮/- ଆଦାୟ କରାଯାଇଥିଲା । ଚଳିତ ବର୍ଷରେ ସର୍ବମୋଟ ୧୬୯୯ ଗୋଟି ମଟରଯାନ ଦୁର୍ଘଟଣା କ୍ଷତିପୂରଣ ମାମଲାକୁ ଆପୋଷ ମିଳାମିଶା ଭିତ୍ତିରେ ଫଇସଲା କରାଯାଇ ମୃତ ବ୍ୟକ୍ତିମାନଙ୍କର ପରିବାରବର୍ଗ ତଥା ଆଘାତପ୍ରାପ୍ତ ବ୍ୟକ୍ତିମାନଙ୍କୁ କ୍ଷତିପୂରଣ ବାବଦରେ ମୋଟ ଟ.୧୬,୪୪,୧୫,୯୮୮/- ପ୍ରଦାନ କରାଯାଇଅଛି । ଚଳିତ ଆର୍ଥିକ ବର୍ଷ ମଧ୍ୟରେ ୭୬ଗୋଟି ବିଧି ସାକ୍ଷରତା ଶିବିର ଏବଂ ବିଧି ସଚେତନତା ଶିବିର ଅନୁଷ୍ଠିତ ହୋଇଥିଲା । ଏହାବ୍ୟତୀତ ଉଚ୍ଚନ୍ୟାୟାଳୟଙ୍କ ବିଧିକ୍ ସେବା କମିଟି ମାଧ୍ୟମରେ ଅନୁଷ୍ଠିତ ଲୋକ ଅଦାଲତ ଦ୍ୱାରା ୮୪ ଗୋଟି ହାଇକୋର୍ଟ କେସର ଫଇସଲା କରାଯାଇଥିଲା । ତନ୍ମଧ୍ୟରୁ ୬ଗୋଟି ମିସ୍ ଅପିଲ କେସ୍ ଏବଂ ୩ଗୋଟି ଏ.ଏଚ୍.ଓ କେସ୍ ଅନ୍ତର୍ଭୁକ୍ତ । ଉକ୍ତ ମାମଲାଗୁଡ଼ିକ ଫଇସଲା ସମୟରେ କ୍ଷତିପୂରଣ ବାବଦକୁ ଟ.୪୬,୬୩, ୭୭୫/- ପ୍ରଦାନ କରାଯାଇଥିଲା ।

## ଅନୁବାଦ ସଂସ୍ଥା

୧୯୯୮-୯୯ ଆର୍ଥିକ ବର୍ଷରେ ୧୦ଗୋଟି କେନ୍ଦ୍ରୀୟ ଅଧିନିୟମକୁ ଓଡ଼ିଆରେ ଅନୁବାଦ କରାଯାଇ ତହିଁ ମଧ୍ୟରୁ ୮ଗୋଟି ଅଧିନିୟମ ଓଡ଼ିଶା ସରକାରୀ ଭାଷା (କମିଟି)ଅନୁମୋଦନ କ୍ରମେ ଚୂଡ଼ାନ୍ତ ଅନୁମୋଦନ ସକାଶେ କେନ୍ଦ୍ର ସରକାରଙ୍କ ନିକଟକୁ ପଠାଯାଇଛି । ଏହାଛଡ଼ା ୨୩ଗୋଟି ଅନୁମୋଦିତ କେନ୍ଦ୍ରୀୟ ଅଧିନିୟମର ନିର୍ଭୁଲ ନକଲ ପ୍ରସ୍ତୁତ କରାଯାଇ ତାହା ଭାରତର ରାଷ୍ଟ୍ରପତିଙ୍କର ଅନୁମୋଦନ ସକାଶେ ପଠାଯାଇଅଛି ।

ବିଧାନ ସଭାର ସଦସ୍ୟମାନଙ୍କ ସହାୟକ ହେବା ପାଇଁ ବିଧାନ ସଭାରେ ଆଗତ ୧୦ଗୋଟି ବିଧେୟକର ଓଡ଼ିଆ ଅନୁବାଦ କରାଯାଇ ଯୋଗାଇ ଦିଆଯାଇଛି ଏବଂ ବିଭିନ୍ନ ବିଭାଗର ଚାହିଦା ଅନୁଯାୟୀ ଅଧିସୂଚନା, ସ୍ମାରକୀ ଆଦିର ଓଡ଼ିଆ ଅନୁବାଦ ମଧ୍ୟ ଯୋଗାଇ ଦିଆଯାଇଛି । ଏହା ସହିତ ସ୍ୱରାଷ୍ଟ୍ର (ନିର୍ବାଚନ) ବିଭାଗଙ୍କ ଚାହିଦା ମୁତାବକ ନିର୍ବାଚନ ସମ୍ପର୍କିତ ପରିପତ୍ର, ଫାରମ ଅନୁଦେଶାବଳୀ ଇତ୍ୟାଦିର ଓଡ଼ିଆ ଭାଷାନ୍ତର ଅଗ୍ରାଧିକାର ଭିତ୍ତିରେ ଯଥା ସମୟରେ ଯୋଗାଇ ଦିଆଯାଇଅଛି ।

□□□

# ଗ୍ରାମାଞ୍ଚଳ ନିଯୁକ୍ତି ଯୋଜନାରେ ଦାରିଦ୍ର୍ୟ ନିରାକରଣ କାର୍ଯ୍ୟକ୍ରମର ରୂପରେଖ

ସରକାରଙ୍କ ଦ୍ୱାରା ପ୍ରଣୀତ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାର ରୂପରେଖ ତଥା କାର୍ଯ୍ୟଧାରା ସମ୍ପର୍କରେ ଜନସାଧାରଣଙ୍କୁ ଅବଗତ କରାଇବା ସହ ସ୍ୱଚ୍ଛ ପ୍ରଶାସନ ଦେବା ନିମନ୍ତେ ରାଜ୍ୟ ସରକାର ନୀତିଗତଭାବେ ନିଷ୍ପତ୍ତି ନେଇଛନ୍ତି ।

ପଞ୍ଚାୟତ ଦ୍ୱାରା କାର୍ଯ୍ୟକାରୀ କରାଯାଉଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ଆବଶ୍ୟକୀୟ ସୂଚନାଗୁଡ଼ିକୁ ପଞ୍ଚାୟତ କାର୍ଯ୍ୟାଳୟ ସାମନାରେ ସ୍ପଷ୍ଟ ଭାବରେ ପ୍ରଦର୍ଶନ କରାଯିବ ଏବଂ କୌଣସି ବ୍ୟକ୍ତି ପଞ୍ଚାୟତରେ କାର୍ଯ୍ୟକାରୀ କରାଯାଉଥିବା କାର୍ଯ୍ୟକ୍ରମର ଆବଶ୍ୟକୀୟ ତଥ୍ୟ ଜାଣିବାକୁ ଚାହିଁଲେ, ସେମାନେ ନିର୍ଦ୍ଧିଷ୍ଟ ଅର୍ଥ ପଇଠ କରି ପଞ୍ଚାୟତ କାର୍ଯ୍ୟାଳୟରୁ ଭାଉଚର ଓ ତଥ୍ୟ ସମ୍ବନ୍ଧୀୟ କାଗଜପତ୍ରର କପି ପାଇପାରିବେ ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ପ୍ରକାଶ ।

କୌଣସି କାର୍ଯ୍ୟର 'ୱାର୍କ ଅର୍ଡ଼ର' ଦିଆଯିବାର ଦିନକ ମଧ୍ୟରେ ଏକ ସ୍ଥାୟୀ ସାଇନ୍ ବୋର୍ଡ଼ରେ ଓଡ଼ିଆ ଭାଷାରେ ଉକ୍ତ କାର୍ଯ୍ୟ ସମ୍ପର୍କିତ ବିବରଣୀ, କେଉଁ ବର୍ଷ ଓ କେଉଁ ପ୍ରକଳ୍ପ ଅନ୍ତର୍ଗତ କାର୍ଯ୍ୟ, କେତେଟଙ୍କା ଖର୍ଚ୍ଚରେ କାର୍ଯ୍ୟକାରୀ କରାଯିବ ଏବଂ କେଉଁ ସଂସ୍ଥା ଏହି କାର୍ଯ୍ୟ କରିବେ, ତାହା ବିଧିବଦ୍ଧଭାବେ ଲେଖି କାର୍ଯ୍ୟାଳୟରେ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ପ୍ରଦର୍ଶନ କରାଯିବ ।

ଯଦି କୌଣସି ବ୍ୟକ୍ତି କୌଣସି ପଞ୍ଚାୟତ/ବ୍ଲକ ବା ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା କୌଣସି ପ୍ରକଳ୍ପ ସମ୍ପର୍କରେ ତଥ୍ୟ/ ସୂଚନା ଚାହିଁବେ, ତେବେ ସମ୍ପୃକ୍ତ ବ୍ୟକ୍ତିଙ୍କୁ ସେ ଚାହୁଁଥିବା ସମସ୍ତ ତଥ୍ୟ/ ସୂଚନା ଯୋଗାଇ ଦିଆଯିବ ।

ଗ୍ରାମପଞ୍ଚାୟତରେ କାର୍ଯ୍ୟକାରୀ ହେଉଥିବା ଜବାହର ରୋଜଗାର ଯୋଜନା ସମେତ ଅନ୍ୟ ସମସ୍ତ ଦାରିଦ୍ର୍ୟ ଦୂରୀକରଣ ଯୋଜନାର ନିର୍ଦ୍ଦିଷ୍ଟ ବର୍ଷ ପାଇଁ ବାର୍ଷିକ 'ଆକ୍ସନ୍ ପ୍ଲାନ୍'ର ନକଲ ମଧ୍ୟ କାର୍ଯ୍ୟାଳୟରେ ପ୍ରଦର୍ଶିତ ହେବ ।

ଗ୍ରାମରେ ମଜୁରୀ ଭିତ୍ତିକ ନିଯୁକ୍ତି ଯୋଜନା ମାଧ୍ୟମରେ ଗତ ୩ବର୍ଷ ଭିତରେ କାର୍ଯ୍ୟକାରୀ ହୋଇଥିବା କାର୍ଯ୍ୟକ୍ରମ ସମ୍ପର୍କିତ ସମସ୍ତ ବିବରଣୀ ଉଲ୍ଲେଖ କରି ଗ୍ରାମର ଏକ ସର୍ବସାଧାରଣ ଗୃହରେ ପ୍ରଦର୍ଶନ କରାଯିବ । ଗ୍ରାମସଭା ଦ୍ୱାରା ବିଭିନ୍ନ ଯୋଜନାର ହିତାଧିକାରୀଙ୍କୁ ବଛାଯିବା ସଙ୍ଗେ ସଙ୍ଗେ ଗ୍ରାମସଭାର ଖୋଲା ବୈଠକରେ ଜବାହର ରୋଜଗାର ଯୋଜନା ଗ୍ରାମ୍ୟ କମିଟି ଗଠନ କରାଯିବ ଏବଂ ସବିଶେଷ ତଥ୍ୟ ବିସ୍ତୃତଭାବେ ଆଲୋଚନା କରାଯିବ ।

# ଓଡ଼ିଶାର ଆଦିବାସୀ ଜନସଂଖ୍ୟା

● ଶ୍ରୀ ଶରତ ଚନ୍ଦ୍ର ମହାନ୍ତି

ଭାରତବର୍ଷର ଆଦିବାସୀ ମାନଚିତ୍ରରେ ଓଡ଼ିଶା ପ୍ରଦେଶ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଏଠାରେ ବସବାସ କରୁଥିବା ଆଦିବାସୀ ଗୋଷ୍ଠୀମାନଙ୍କର ବିପୁଳ ଜନସଂଖ୍ୟା ଏହାର ଏକ କାରଣ । ୧୯୯୧ ଜନଗଣନା ଅନୁଯାୟୀ ମୋଟ ୭୦,୩୨,୨୧୪ ସଂଖ୍ୟକ ଅନୁସୂଚିତ ଆଦିବାସୀ ବା ଜନଜାତି (Scheduled Tribe) ଲୋକ ଓଡ଼ିଶା ରାଜ୍ୟରେ ବାସକରନ୍ତି, ଯେଉଁମାନେକି ସମଗ୍ର ଭାରତବର୍ଷର ଆଦିବାସୀ ଜନସଂଖ୍ୟାର ପ୍ରାୟ ୧୦ ଶତାଂଶ ଓ ସମଗ୍ର ରାଜ୍ୟର ଜନସଂଖ୍ୟାର ୨୨.୨୧ ଶତାଂଶ । ଏଣୁ ମୋଟାମୋଟି କୁହାଯାଇ ପାରିବ ଯେ ରାଜ୍ୟର ପ୍ରତି ପାଞ୍ଚଜଣ ବ୍ୟକ୍ତିଙ୍କ ମଧ୍ୟରେ ଜଣେ ଅନୁସୂଚିତ ଜନଜାତି ଗୋଷ୍ଠୀର ବ୍ୟକ୍ତି ଅଛନ୍ତି । ପୁନଶ୍ଚ ରାଜ୍ୟର ମୋଟ ଅନୁସୂଚିତ ଆଦିବାସୀ ଜନସଂଖ୍ୟା ଓ ରାଜ୍ୟର ମୋଟ ଜନସଂଖ୍ୟାରେ ଅନୁସୂଚିତ ଆଦିବାସୀଙ୍କ ଜନସଂଖ୍ୟାର ଅନୁପାତକୁ ଦେଖିଲେ ଭାରତର ରାଜ୍ୟମାନଙ୍କ ମଧ୍ୟରେ ମଧ୍ୟପ୍ରଦେଶ ପ୍ରଥମ ସ୍ଥାନ ଅଧିକାର କରୁଥିବା ବେଳେ ଓଡ଼ିଶା ଯଥାକ୍ରମେ ତୃତୀୟ ଓ ଦ୍ୱିତୀୟ ସ୍ଥାନ ଅଧିକାର କରିଛି ।

ଭାରତର ଇତିହାସ ଅଧ୍ୟୟନ କଲେ ଜଣାଯାଏ ଯେ, ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ ଏହି ଜନଜାତିମାନେ ଭାରତର ବିଭିନ୍ନ ଅଞ୍ଚଳରେ ବସବାସ କରୁଥିଲେ । ଆର୍ଯ୍ୟମାନେ ସେମାନଙ୍କଠାରୁ ଅପେକ୍ଷାକୃତ ଉନ୍ନତ ଓ ଶକ୍ତିଶାଳୀ ଥିବାରୁ ଆର୍ଯ୍ୟମାନଙ୍କଠାରୁ ପରାସ୍ତ ହୋଇ ସେମାନେ ବଣ ଜଙ୍ଗଲ ଘେରା ପାର୍ବତ୍ୟାଞ୍ଚଳକୁ ଚାଲିଯାଇ ଏକାନ୍ତରେ ଜୀବନ ଯାପନ କରିଥିଲେ । ଏହା ଫଳରେ ମୁଖ୍ୟ ଭାରତୀୟ ସଂସ୍କୃତିରୁ ସେମାନେ ବିଚ୍ଛିନ୍ନ ହୋଇଯାଇ, ସ୍ୱକୀୟ ପ୍ରାକୃତିକ ପରିବେଶ ମଧ୍ୟରେ ନିଜ ନିଜର ସ୍ୱତନ୍ତ୍ର ସଂସ୍କୃତିର ବିକାଶ କରିଥିଲେ । ପରାଧୀନ ଭାରତରେ ଇଂରେଜ ଶାସକମାନେ ଆଦିବାସୀମାନଙ୍କୁ ଏକ ଭେଦଭାବପୂର୍ଣ୍ଣ ନୀତି ଅବଲମ୍ବନ କରି ଜାତୀୟ ସ୍ରୋତ ଓ ସଂସ୍କୃତିରୁ ବିଚ୍ଛିନ୍ନ କରିଦେଇ ସେମାନଙ୍କୁ ବଣଜଙ୍ଗଲରେ ଏକୁଟିଆ ରହିବାକୁ ଛାଡ଼ି ଦେଇଥିଲେ । କାଳକାଳ ଧରି, ବିଶେଷତଃ ଇଂରେଜ ଶାସନ କାଳରେ ଅବହେଳା, ଶୋଷଣ ଓ ଲାଞ୍ଛନାର ଶିକାର ହୋଇ ସେମାନେ ଏକ ଦୁର୍ବଳ ଶ୍ରେଣୀ ତଥା ପଛୁଆ ବର୍ଗରେ ପରିଣତ ହେଲେ ।

ଦେଶ ସ୍ୱାଧୀନ ହେଲାପରେ ସେମାନଙ୍କ ସର୍ବାଙ୍ଗୀନ ଉନ୍ନତି କରି ତାଙ୍କୁ ଜାତୀୟ ସ୍ରୋତରେ ସାମିଲ କରିବା ପାଇଁ କେତେକ ସାଂବିଧାନିକ, ଆଇନଗତ ଓ ଯୋଜନାଗତ ବ୍ୟବସ୍ଥା କରାଯାଇଛି । ଭାରତୀୟ ସଂବିଧାନର ୩୪୨ ଧାରା ଅନୁଯାୟୀ ଜନଜାତି ଗୋଷ୍ଠୀମାନଙ୍କୁ ଅନୁସୂଚିତ ଜନଜାତି (Scheduled Tribe) ରୂପେ ସାଂବିଧାନିକ ମାନ୍ୟତା ଦିଆଯାଇ ସେମାନଙ୍କୁ କେତେକ ବିଶେଷ ସୁବିଧା ସୁଯୋଗ ପାଇବାକୁ ହକଦାର କରାଯାଇଛି । ଏହି ଧାରା ଅନୁଯାୟୀ ଓଡ଼ିଶା ସମେତ ବିଭିନ୍ନ ରାଜ୍ୟରେ ଅନେକ ଆଦିବାସୀ ଗୋଷ୍ଠୀଙ୍କୁ ଚିହ୍ନଟ କରାଯାଇ ସେମାନଙ୍କର ତାଲିକାମାନ ପ୍ରସ୍ତୁତ କରାଯାଇଛି । ଓଡ଼ିଶାରେ ଥିବା ୬୨ ଟି ଆଦିବାସୀ ଗୋଷ୍ଠୀକୁ ଅନୁସୂଚିତ ଆଦିବାସୀ/ଜନଜାତି ତାଲିକା ଅନ୍ତର୍ଭୁକ୍ତ କରାଯାଇଛି । ତାହାର ଏକ ତାଲିକା ନିମ୍ନରେ ଦିଆଗଲା । ଏହି ତାଲିକାରେ ପ୍ରତ୍ୟେକ ଅନୁସୂଚିତ ଜନଜାତିଙ୍କର ୧୯୮୧ ମସିହା ଜନଗଣନା ଅନୁଯାୟୀ ଜନସଂଖ୍ୟା ଓ ସେମାନେ ମୁଖ୍ୟତଃ କେଉଁ କେଉଁ ଜିଲ୍ଲାରେ ବହୁଳ ସଂଖ୍ୟାରେ ବାସ କରନ୍ତି, ତାହା ଦିଆଯାଇଛି ।

| କ୍ର:ନ | ଅନୁସୂଚିତ ଜନଜାତିଙ୍କ ନାମ | ୧୯୮୧ ଜନଗଣନାରେ ମୋଟ ଜନସଂଖ୍ୟା | କେଉଁ ଜିଲ୍ଲାରେ ଅଧିକ ସଂଖ୍ୟାରେ ବାସକରନ୍ତି |
|---|---|---|---|
| ୧ | ୨ | ୩ | ୪ |
| ୧. | ବଗତା | ୨,୬୧୬ | କଟକ, ବାଲେଶ୍ୱର |
| ୨. | ବଇଗା | ୧୮୮ | କଳାହାଣ୍ଡି |
| ୩. | ବନ୍‌ଜାରା | ୧୦,୯୨୫ | କୋରାପୁଟ, ମୟୂରଭଞ୍ଜ |
| ୪. | ବାଥୁଡ଼ି | ୧,୪୭,୯୭୦ | ମୟୂରଭଞ୍ଜ, କେନ୍ଦୁଝର |
| ୫. | ଭୋତଡ଼ା | ୨,୪୭,୭୦୯ | କୋରାପୁଟ, କଳାହାଣ୍ଡି |
| ୬. | ଭୂୟାଁ | ୨,୦୭,୭୯୩ | ସୁନ୍ଦରଗଡ଼, କେନ୍ଦୁଝର |

| | | | |
|---|---|---|---|
| ୭. | ଭୂମିଆ | ୭୪,୨୨୧ | କୋରାପୁଟ,ସୁନ୍ଦରଗଡ଼ |
| ୮. | ଭୂମିଜ | ୧,୫୭,୬୧୩ | ମୟୂରଭଞ୍ଜ,ବାଲେଶ୍ୱର |
| ୯. | ଭୂଞ୍ଜିଆ | ୯,୦୭୭ | କଳାହାଣ୍ଡି, କୋରାପୁଟ |
| ୧୦. | ବିଞ୍ଝାଲ | ୯୮,୬୩୧ | ସମ୍ବଲପୁର, ବଲାଙ୍ଗୀର |
| ୧୧. | ବିଞ୍ଝିଆ | ୮,୦୪୧ | ସୁନ୍ଦରଗଡ଼, ସମ୍ବଲପୁର |
| ୧୨. | ବିରହୋର | ୧୪୨ | ସୁନ୍ଦରଗଡ଼ |
| ୧୩. | ବଣ୍ଡା ପରଜା | ୫,୮୯୫ | କୋରାପୁଟ |
| ୧୪. | ଚେଞ୍ଚୁ | ୩୯ | କଳାହାଣ୍ଡି, ସୁନ୍ଦରଗଡ଼ |
| ୧୫. | ଡାଲ୍ | ୧୮,୧୬୩ | ବଲାଙ୍ଗୀର, କଳାହାଣ୍ଡି |
| ୧୬. | ଦେଶୁଆ ଭୂମିଜ | ୧,୧୮୩ | ପୁରୀ, ମୟୂରଭଞ୍ଜ |
| ୧୭. | ଧାରୁଆ | ୮,୬୧୧ | କୋରାପୁଟ, ମୟୂରଭଞ୍ଜ |
| ୧୮. | ଡିଡାୟୀ | ୧,୯୭୮ | କୋରାପୁଟ |
| ୧୯. | ଗଦବା | ୫୬,୯୧୩ | କୋରାପୁଟ |
| ୨୦. | ଗଣ୍ଡିଆ | ୨,୨୬୩ | କୋରାପୁଟ, ଢେଙ୍କାନାଳ |
| ୨୧. | ଘରା | ୬୧୮ | କଳାହାଣ୍ଡି, ସମ୍ବଲପୁର |
| ୨୨. | ଗଣ୍ଡ | ୬,୦୨,୭୪୯ | କଳାହାଣ୍ଡି, ସମ୍ବଲପୁର |
| ୨୩. | ହୋ | ୪୪,୯୪୬ | ମୟୂରଭଞ୍ଜ, କେନ୍ଦୁଝର |
| ୨୪. | ହଲବା | ୮,୮୮୩ | କୋରାପୁଟ, ଗଞ୍ଜାମ |
| ୨୫. | ଜଟାପୁ | ୧୮,୪୫୭ | କୋରାପୁଟ, ଗଞ୍ଜାମ |
| ୨୬. | ଜୁଆଙ୍ଗ | ୩୦,୮୭୬ | କେନ୍ଦୁଝର, ଢେଙ୍କାନାଳ |
| ୨୭. | କନ୍ଧ ଗଉଡ଼ | ୧୫,୧୮୯ | ଫୁଲବାଣୀ, ପୁରୀ |
| ୨୮. | କୱାର | ୮,୫୪୯ | ସୁନ୍ଦରଗଡ଼, ସମ୍ବଲପୁର |
| ୨୯. | ଖଡ଼ିଆ | ୧,୪୪,୧୭୮ | ସୁନ୍ଦରଗଡ଼, ସମ୍ବଲପୁର, ମୟୂରଭଞ୍ଜ |
| ୩୦. | ଖରୱାର | ୧,୪୩୪ | କେନ୍ଦୁଝର, ମୟୂରଭଞ୍ଜ |
| ୩୧. | କନ୍ଧ | ୯,୮୯,୩୪୨ | କୋରାପୁଟ, ଫୁଲବାଣୀ |
| ୩୨. | କିଶାନ | ୨,୨୭,୯୯୨ | ସମ୍ବଲପୁର, ସୁନ୍ଦରଗଡ଼ |
| ୩୩. | କୋଲ୍ | ୪,୨୩୫ | କେନ୍ଦୁଝର, ଫୁଲବାଣୀ |
| ୩୪. | କୋଲଲୋହରା | ୭,୫୬୨ | ସୁନ୍ଦରଗଡ଼ |
| ୩୫. | କୋଲ୍ହ | ୩,୨୬,୫୨୩ | ମୟୂରଭଞ୍ଜ, କେନ୍ଦୁଝର |
| ୩୬. | କୋଲି, ମଲ୍ହାର | ୪,୭୧୧ | ଢେଙ୍କାନାଳ, ଗଞ୍ଜାମ |
| ୩୭. | କୋଣ୍ଡାଦୋରା | ୧୭,୪୪୨ | କୋରାପୁଟ, ଗଞ୍ଜାମ |
| ୩୮. | କୋରା | ୫,୮୨୩ | ଢେଙ୍କାନାଳ, କେନ୍ଦୁଝର |
| ୩୯. | କୋରୁଆ | ୯୮୬ | ସମ୍ବଲପୁର, କୋରାପୁଟ |
| ୪୦. | କୋଟିଆ | ୧୯,୧୩୬ | କୋରାପୁଟ, ଫୁଲବାଣୀ |
| ୪୧. | କୋୟା | ୮୭,୨୬୦ | କୋରାପୁଟ |
| ୪୨. | କୁଲିସ୍ | ୧,୪୯୮ | ସମ୍ବଲପୁର, ବଲାଙ୍ଗୀର |
| ୪୩. | ଲୋଧା | ୫,୧୦୦ | ମୟୂରଭଞ୍ଜ |
| ୪୪. | ମାଡିଆ | ୧,୦୬୬ | କୋରାପୁଟ, ଢେଙ୍କାନାଳ |

| | | | |
|---|---|---|---|
| ୪୫. | ମାହାଲୀ | ୧୧,୭୬୭ | ମୟୂରଭଞ୍ଜ, ସୁନ୍ଦରଗଡ଼ |
| ୪୬. | ମାଙ୍କିଡ଼ି | ୨୦୫ | କଳାହାଣ୍ଡି, ସୁନ୍ଦରଗଡ଼ |
| ୪୭. | ମାଙ୍କିରଡିଆ | ୧,୦୦୫ | ମୟୂରଭଞ୍ଜ, ସମ୍ବଲପୁର |
| ୪୮. | ମାଟିଆ | ୧୨,୧୨୩ | ଢେଙ୍କାନାଳ, କୋରାପୁଟ |
| ୪୯. | ମିର୍ଦ୍ଧା | ୨୮,୧୭୭ | ସମ୍ବଲପୁର, ବଲାଙ୍ଗୀର |
| ୫୦. | ମୁଣ୍ଡା, ମୁଣ୍ଡାଲୋହରା, ମୁଣ୍ଡାମାହାଲି | ୩,୩୮,୯୩୫ | ସୁନ୍ଦରଗଡ଼, ସମ୍ବଲପୁର |
| ୫୧. | ମୁଣ୍ଡାରୀ | ୨୪,୬୬୭ | ସୁନ୍ଦରଗଡ଼, ମୟୂରଭଞ୍ଜ |
| ୫୨. | ଅମାନତ୍ୟ | ୧୯,୪୬୫ | କୋରାପୁଟ, ଗଞ୍ଜାମ |
| ୫୩. | ଓରାଓଁ | ୨,୧୫,୩୩୭ | ସୁନ୍ଦରଗଡ଼, ସମ୍ବଲପୁର |
| ୫୪. | ପାରେଙ୍ଗା | ୯,୬୨୨ | କୋରାପୁଟ |
| ୫୫. | ପରଜା | ୨,୬୭,୧୮୪ | କୋରାପୁଟ |
| ୫୬. | ପେଣ୍ଟିଆ | ୭,୯୦୮ | କଳାହାଣ୍ଡି, ସମ୍ବଲପୁର |
| ୫୭. | ରାଜୁଆର | ୨,୩୧୩ | ମୟୂରଭଞ୍ଜ, କେନ୍ଦୁଝର |
| ୫୮. | ସାନ୍ତାଳ | ୫,୩୦,୭୭୬ | ମୟୂରଭଞ୍ଜ, ବାଲେଶ୍ୱର |
| ୫୯. | ସଉରା, ଶବର, ସଅର | ୩,୭୦,୦୬୦ | ଗଞ୍ଜାମ, ସମ୍ବଲପୁର, କୋରାପୁଟ |
| ୬୦. | ଲୋଧା, ଶବର | ୩,୨୯,୨୦୯ | ମୟୂରଭଞ୍ଜ |
| ୬୧. | ସାଉଣ୍ଟି | ୬୭,୮୯୨ | କେନ୍ଦୁଝର, ମୟୂରଭଞ୍ଜ |
| ୬୨. | ଥାରୁଆ | ୧,୦୩୪ | ମୟୂରଭଞ୍ଜ, ବାଲେଶ୍ୱର |

* ଜିଲ୍ଲାଗୁଡ଼ିକ ପୁରାତନ ଅବିଭକ୍ତ ଜିଲ୍ଲା

ଉପରୋକ୍ତ ଜନସଂଖ୍ୟା ତଥ୍ୟରୁ ଜଣାଯାଏ ଯେ ଏହି ରାଜ୍ୟରେ ଏକପକ୍ଷରେ ମାତ୍ର ୩୯ଟି ଲୋକଥିବା କ୍ଷୁଦ୍ରତମ ଚେଞ୍ଚୁ ଜନଜାତି ରହିଥିବା ବେଳେ ଅନ୍ୟପକ୍ଷରେ ସର୍ବ ବୃହତ କନ୍ଧ ଜନଜାତି ରହିଛନ୍ତି, ଯାହାର ଜନସଂଖ୍ୟା ପ୍ରାୟ ୧୦ଲକ୍ଷ ପାଖାପାଖି (୯,୮୯,୩୪୨) । ଜନସଂଖ୍ୟା ତାରତମ୍ୟ କ୍ରମରେ ଓଡ଼ିଶାର ୬୨ଟି ଅନୁସୂଚିତ ଜନଜାତିଙ୍କୁ ତିନିଗୋଟି ମୁଖ୍ୟ ଶ୍ରେଣୀରେ ବିଭକ୍ତ କରାଯାଇପାରେ– ଯଥା,କ୍ଷୁଦ୍ର, ମଧ୍ୟମ ଓ ବୃହତ । ପ୍ରଥମ ଅର୍ଥାତ କ୍ଷୁଦ୍ର ଶ୍ରେଣୀରେ ୫ ହଜାରରୁ କମ ଜନସଂଖ୍ୟା ଥିବା ୧୮ ଗୋଟି ଅନୁସୂଚିତ ଆଦିବାସୀ ଗୋଷ୍ଠୀ ରହିଛନ୍ତି ଯଥା, ଚେଞ୍ଚୁ, ବିରହୋର୍, ବଣ୍ଡା, ମାଙ୍କିରଡିଆ, ଗଣ୍ଡିଆ, ଥାରୁଆ, କୋରୁଆ, ମାଙ୍କିଡ଼ି, ମାଟିଆ, ଦେଶୁଆ ଭୂମିଜ, ଘରା, ଖରୱାର, କୁଲିସ, ରାଜୁଆର, କୋଲି- ମଲ୍ହାର, କୋଲ୍, ତିଡାୟୀ ଓ ବଗତା ।

ଦ୍ୱିତୀୟ ଶ୍ରେଣୀରେ ୫ ହଜାରରୁ ଉର୍ଦ୍ଧ୍ୱ ଓ ୧ ଲକ୍ଷରୁ କମ୍ ଜନସଂଖ୍ୟା ଥିବା ୨୯ଟି ଅନୁସୂଚିତ ଜନଜାତି ଗୋଷ୍ଠୀ ରହିଛନ୍ତି । ସେମାନେ ହେଲେ– ବନଜାରା, ଭୂମିଆ, ଭୁଞ୍ଜିଆ, ବିଞ୍ଝାଲ, ବିଞ୍ଝିଆ, ବଣ୍ଡା, ଡାଲ, ଧାରୁଆ, ଗଦବା, ହୋ, ହଲବା, ଜଟାପୁ, ଜୁଆଙ୍ଗ, କନ୍ଧଗଉଡ଼, କୱାର, କୋଲ୍‌ଲୋହର, କୋଣ୍ଡାଡୋରା, କୋରା, କୋଟିଆ, କୋୟା, ଲୋଧା, ମାହାଲି, ମାଟିଆ, ମିର୍ଦ୍ଧା, ମୁଣ୍ଡାରୀ, ଅମାନତ୍ୟ, ପାରେଙ୍ଗା, ପେଣ୍ଟିଆ ଏବଂ ସାଉଣ୍ଟି । ଜନସଂଖ୍ୟା ଦୃଷ୍ଟିରୁ ଏମାନେ ମଧ୍ୟମ ଶ୍ରେଣୀର ।

ତୃତୀୟ ଶ୍ରେଣୀରେ ବାକି ୧୫ଟି ଅନୁସୂଚିତ ଆଦିବାସୀ ଗୋଷ୍ଠୀଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି, ଯାହାଙ୍କର ବ୍ୟକ୍ତିଗତ ଜନସଂଖ୍ୟା ୧ଲକ୍ଷରୁ ଉର୍ଦ୍ଧ୍ୱ ଏବଂ ଏମାନଙ୍କୁ ବୃହତ ଗୋଷ୍ଠୀ ବୋଲି କୁହାଯିବ । ଏମାନେ ହେଲେ ବାଥୁଡ଼ି, ଭୋତଡ଼ା, ଭୂୟାଁ, ଭୂମିଜ, ଗଣ୍ଡ, ଖଡ଼ିଆ, କନ୍ଧ, କିଶାନ, କୋହ୍ଲ, ମୁଣ୍ଡା, ଓରାମ, ପରଜା, ସାନ୍ତାଳ, ସଉରା ଏବଂ ଶବର ।

ଏହି ୬୨ଟି ଅନୁସୂଚିତ ଜନଜାତିଙ୍କ ବ୍ୟତୀତ ଅନେକ ଅଣସୂଚିତ (Denotified) ଜନଜାତି ଗୋଷ୍ଠୀ ଏହି ରାଜ୍ୟରେ ଅଛନ୍ତି । ଏମାନଙ୍କୁ ତପସିଲଭୁକ୍ତ କରାଯାଇ ନାହିଁ ।

*ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଗବେଷଣା ଓ ତାଲିମ ପ୍ରତିଷ୍ଠାନ,*
*ସି.ଆର୍.ପି. ଛକ, ଭୁବନେଶ୍ୱର*

□□□

# ସୂଚନା, ମାଧ୍ୟମ ଓ ମାଛ

● ଶ୍ରୀ ରାହାସ ରାୟ

କହି ବୋଲି ପାରିଲା ଯିଏ

ପୁଇଁ ଚିଙ୍ଗୁଡ଼ି ବିକିଲା ସିଏ— ପ୍ରବାଦଟି ଆଜିର ନୁହେଁ, କେଉଁ ଗାଁର କେଉଁ ଯୁଗର । କିନ୍ତୁ ପ୍ରବାଦଟିକୁ ଅନୁଧାନ କଲେ ସୂଚନା ଅଥବା ପରିପ୍ରଚାରର ଏହା ଏକ ମର୍ମବାଣୀ । ଗାଁ ଗଣ୍ଡାରେ ମିଳୁଥିବା ଛୋଟ ଚିଙ୍ଗୁଡ଼ିକୁ କିଏ କିଣିବ ଯଦି ବନେଇ ଚୁନେଇ ଦିପଦ ଭଲ କରି କୁହାଯାଏ । ଏହି କଥା ବଳରେ ପୁଇଁ ଚିଙ୍ଗୁଡ଼ି ଅନାୟାସେ ବିକ୍ରି ହୋଇଯାଏ । ତେବେ ସୂଚନାର ମୂଳ ସାମଗ୍ରୀ ହେଲା ବାର୍ତ୍ତା, ଇଂରାଜୀରେ ଯାହାକୁ (Message) କୁହାଯାଏ ।

ଏଇ ସୂଚନା ଦେବା ମଣିଷ ସଭ୍ୟତାର ସଂସ୍ପର୍ଶରେ ଆସିବା ଦିନରୁ ଚାଲିଆସିଛି । ସେତେବେଳେ ଅବଶ୍ୟ ସୂଚନା ସଂଗ୍ରହ ଓ ସୂଚନା ଦେବା ମାର୍ଗ ଅଲଗା ଥିଲା । ସୂଚନାର ଏକ ଧର୍ମ ହେଲା— ସଚେତନତା । ସଚେତନତା ମଣିଷକୁ ଜାଗ୍ରତ କରେ । ମାର୍ଗ ଦର୍ଶନର ସୁଯୋଗ ଦିଏ । ଭଲ ମନ୍ଦ ବିଚାର କରିବାର ଶକ୍ତି ଦିଏ । ମଣିଷ ମସ୍ତକରେ ଥିବା ବୁଦ୍ଧି ବୃତ୍ତିର ବିକାଶ ଘଟାଏ ।

ପ୍ରଥମେ ଠାର, ତାପରେ ଗାର । ଠାର ଓ ଗାର ଦ୍ୱାରା ସେତେବେଳର ମଣିଷ ଆଦିମ ହେଲେ ମଧ୍ୟ ସୂଚନା ଦେବାକୁ ଶିଖିଥିଲା । ମୁଖରେ ଭାଷା ନଥିବା ଅବସ୍ଥାରେ ହାତ ଠାରୁ ହିଁ ବେଶ୍ କାମ ଦେଉଥିଲା । ଏଇ ଦେଖୁନ, ହାତଠାରେ କିମିତି ସମ୍ବାଦ ପଢ଼ା ଚାଲିଛି । ପଥର ଦେହରେ ଗାର କାଟି ଛବି ଆଙ୍କି ମଣିଷ ଆସ୍ତେ ଆସ୍ତେ ମନୋଭାବ ବ୍ୟକ୍ତ କରିବାକୁ ଜାଣିଥିଲା । ପଥର ଦେହରେ ଯାହା ଲେଖିଲା ସିଏ ଆସ୍ତେ ଆସ୍ତେ ସୂଚନାତ୍ମକ ଭାବେ କାମ କଲା । ପଥର ଦେହରେ ଛବି ବା ଲିପି ପାଇଁ ସେତେବେଳେ ମଣିଷକୁ କେତେ ପରିଶ୍ରମ କରିବାକୁ ପଡ଼ିଥିବ ଭାବିଲ ଦେଖି ? ପଥର ଥିଲା ହାତ ହତିଆର । ପଥର ଢେଲା ମାରି ପଶୁ ଶିକାର କରୁଥିଲା । ପୁଣି ପଥର ଦେହରେ ଛବି ଆଙ୍କି ବା ଲିପି ଲେଖି ତା ମନର କଥା କହି ଆସୁଥିଲା । ଗୋଟିଏ ମଣିଷ ବହୁ ମଣିଷଙ୍କୁ ବାର୍ତ୍ତା ଦେଇ ଜାଣିଥିଲା ।

ସଭ୍ୟତା ଆଗେଇ ଚାଲିଲା । ନାନା କଥା ମଣିଷ ଆବିଷ୍କାର କଲା । ଭଲମନ୍ଦ ବିଚାର କଲା । ତା ବିଷୟରେ ନାନା ତଥ୍ୟ ସଂଗ୍ରହ କଲା । ସେଇ ତଥ୍ୟକୁ ପୁଣି ଭିନ୍ନ ଭିନ୍ନ ମାଧ୍ୟମରେ ସମାଜରେ ବାଣ୍ଟିଦେଲା । ନିଜେ ଓସ୍ତାଦ ବା ଗୁରୁ ହେଲେ ତ ବିଦ୍ୟା ବା ଜ୍ଞାନ କେବଳ ନିଜ ପାଖରେ ସୀମିତ ରହିଯିବ, ତେଣୁ ସେ ଅନ୍ୟମାନଙ୍କୁ ଶିଖେଇ ଚାଲିଲା । ଗୋଷ୍ଠୀ ଗଢ଼ିଲା । ସେମାନେ ବି ଇମିତିକା ଜ୍ଞାନ ଲୋକଙ୍କୁ ବାଣ୍ଟି ଚାଲିଲେ । ପୁରୁଷକୁ ପୁରୁଷ, ପିଢ଼ିକୁ ପିଢ଼ି ଗଢ଼ିଆସି ଅପି ସାରା ସମାଜ, ସାରା ଦେଶରେ ବ୍ୟାପିଗଲା । ସେଦିନର କଷ୍ଟସାଧ୍ୟ ବିଦ୍ୟା କ୍ରମଶଃ ସମସ୍ତଙ୍କ ଜାଣିବା ପାଇଁ ସୂଚନାରେ ପରିଣତ ହେଲା । ଯୁଗ ଅନୁଯାୟୀ ଭିନ୍ନ ଭିନ୍ନ ମାଧ୍ୟମକୁ ଆଶ୍ରା କରି ସୂଚନା ଆସି ପହଞ୍ଚିଛି ଆଧୁନିକ ମାଧ୍ୟମମାନଙ୍କରେ । ଏଇ ସୂଚନା ଦୂରକୁ ନିକଟ କରିଛି । ପରକୁ ଆପଣାର କରିଛି । ସାରା ପୃଥିବୀକୁ ଆଣି ମଣିଷ ପାଖରେ ଥୋଇ ଦେଉଛି । କେଉଁଠିକି ନ ଯାଇ ଘରେ ବସି ମଣିଷ ସବୁ ଜାଣୁଛି, ଆଗର ମଣିଷ ଭଳି ସିମିତି କିଛି କଷ୍ଟ ନ କରି । ଏଇ ଶୁଣାଶୁଣି, ଦେଖାଚାହାଁ, ପଢ଼ାପଢ଼ି ଭିତରେ ମଣିଷର ଜ୍ଞାନ ଗରିମାର ବିକାଶ ଘଟିଛି । ଦିନକୁ ଦିନ ନୂଆ ନୂଆ ସୂଚନା ମଣିଷ ମନକୁ କାବୁ କରିଦେଲାଣି । କିଛି କଥା ଶୁଣି, କିଛି କଥା ଜାଣି ତାକୁ କାମରେ ଲଗେଇବା ବେଳ ଆସିଛି । ତେଣୁ ସୂଚନା ମାଧ୍ୟମ ହିଁ ଏକ ବଳିଷ୍ଠ ମାଧ୍ୟମ ।

ଆମ ଗାଁ ଗହଳିରେ ଗୋଟିଏ ପ୍ରବାଦ ଅଛି - ଦେଖା ଶିଖା ଓଡ଼ିଶା । ପ୍ରଥମେ ଦେଖିବେ । ତା'ପରେ ଶିଖିବେ । ତାପରେ ଯାଇ କିଛି କରିବେ । ତେବେ ଏଇଠି ସୂଚନା (Information) ଏବଂ ଦେଖେଇ ଶିଖେଇବା (demonstration)ର କଥା ଉଠେ । ଆଗରୁ ଯେଉଁ କଥା କହିଲି, ତା ପାଖରେ ଥିବା ଗୁଜ ପୁଇଁ ଚିଙ୍ଗୁଡ଼ି ବିଷୟରେ ନାନା କଥା କହି ସେ ଗରାଖ ମନକୁ ଭଜେଇ ଦେଲା । ତାପରେ ହାତରେ ଚିଙ୍ଗୁଡ଼ି ଧରି ତାକୁ ବାରମ୍ବାର ଦେଖେଇଲା । ଆଇଁଷିଆ ଗରାଖ ଭାବିଲା-ଏତେ ପଇସାତ ପାଖରେ ନାହିଁ । ବଡ଼ ଜାତିଆ ମାଛ- ରୋହୀ, ଭାକୁଡ଼, ମିରିକାଳୀ ତ କିଣି ହେବନି । ଅଢ଼େଇଶ/ତିନିଶ ପୁଇଁ ଚିଙ୍ଗୁଡ଼ି ନେଇ ଗଲେ ସାମାନ୍ୟ କିଛି ପରିବା ପକେଇ ଭାଇତାଟାଏ କରି ହବତ ? ଭାତଗଣ୍ଡା କୌଣସି ମତେ ଉଠିଯିବ ? ଚିଙ୍ଗୁଡ଼ି ବାଲାର ଏଇ ପ୍ରବର୍ତ୍ତନା (motivation) ଗରାଖ ମନକୁ ଭଜେଇ ଦେବା ଫଳରେ ଅସଲ ଲକ୍ଷ୍ୟ ସାଧିତ ହେଲା ।

ସବୁ କଥା ସେଇଆ । ସିଏ ମାଛ କଥା ହଉ ବା ଗଛ କଥା ହଉ । କଥା ଅନୁସାରେ, ବାର୍ତ୍ତା ଅନୁସାରେ କାମ ହେଲା, ହେଲା କି, ନାହିଁ, ସତର୍କ ଦୃଷ୍ଟିରେ ଦେଖିବାର କଥା । ଆଗେ ମାଛ କଥା କହିଲେ ଲୋକେ ମିଛ ବୋଲି ଭାବୁଥିଲେ । କଥା କ'ଣକି, 'ମ' ଆକାର 'ମା' ପୁଣି 'ଛ' । ତେଣୁ ମାଛ । 'ମ' ଇକାର 'ମି' ପୁଣି 'ଛ' । ତେବେ ମାଛ ହୋଇଗଲା ମିଛ । ଗାଲୁଆଙ୍କ ବାରବାଟୀ ଚାଷ ଭଳି ଲୋକେ ମାଛ କଥା ଶୁଣିବାକୁ ଆସୁ ନଥିଲେ ବା ଆଡ଼େଇ ଦେଉଥିଲେ । ପୁରାଣ କହୁଛି ପରା ପ୍ରଭୁଙ୍କର ଆଦ୍ୟ ଅବତାର-ମତ୍ସ୍ୟ । ତେଣୁ ମାଛ ସବୁଠି ଆଗରେ । ବାହାଘର ବେଳେ ଦହିମାଛ ପରା ଅନୁକୂଳ । ମାଛ ନ ହେଲେ ବର ବାହା ହବାକୁ ଯିବ କିମିତି । ଭୋଷଣୀ ପଡ଼ିଆରେ କନିଆ ଗାଁବାଲାଏ ଅଟକେଇ ଦେବେ । ମାଛ ଆଗ ।

ସେତେବେଳେ ମାଛଚାଷ ବିଷୟରେ ଯେତେ ସୂଚନା ଦେଲେ ବା କହିଲେ ଲୋକେ ବୁଝୁ ନଥିଲେ । ଯେତେବେଳେ ଗାଁ ଗଣ୍ଡାରେ ମାଛ ଚାଷ କରି ଲୋକଙ୍କୁ ଏହିଁ ଛୋଟ ମାଛ ବଡ଼େଇ କୁଢ଼େଇ ଦେଖାଇ ଦିଆଗଲା, ସେତେବେଳେ ଲୋକେ ମାଛ ଆଡ଼କୁ ଅନେଇଲେ । ପୋଖରୀରେ ଚାଷ ଦେଖିଲେ । ମାନିଲେ ମାଛ ମିଛ ନୁହେଁ । ମାଛ, ମାଛ । ମାଛ ସତ । ଏଇଠି ସୂଚନା ଓ କ୍ଷେତ୍ର ପ୍ରଦର୍ଶନ ଉଭୟ କାମ ଦେଖେଇଲା । ମଣିଷ ସୂଚନା ଦିଆଯାଉଥିବା ଜ୍ଞାନ କୌଶଳକୁ ଗ୍ରହଣ କଲେ ଅର୍ଥ, ସୂଚନା ସେଠି ପ୍ରକୃତ କାର୍ଯ୍ୟ କଲା । ଏଥିପାଇଁ କ୍ରମାଗତ ଉଦ୍ୟମ ଓ ଦକ୍ଷ କର୍ମୀଙ୍କର ଆବଶ୍ୟକତାକୁ ଏଡ଼ାଇ ଦିଆଯାଇ ନପାରେ ।

ଓଡ଼ିଶାରେ ମତ୍ସ୍ୟ ବିଭାଗ ଆଗରୁ ସ୍ୱତନ୍ତ୍ର ବିଭାଗ ନଥିଲା । ରାଜ୍ୟ କୃଷି ନିର୍ଦ୍ଦେଶାଳୟର ଏକ ସେକ୍ସନ ଭାବେ କାର୍ଯ୍ୟ କରୁଥିଲା । ଡକ୍ଟର ଗଜେନ୍ଦ୍ରନାଥ ମିତ୍ରଙ୍କ ଭଳି ଜଣେ ଦକ୍ଷ ମତ୍ସ୍ୟ ବିଜ୍ଞାନୀଙ୍କ ନେତୃତ୍ୱରେ ୧୯୫୫ ମସିହାରେ ମତ୍ସ୍ୟ ବିଭାଗ ଏକ ସ୍ୱତନ୍ତ୍ର ନିର୍ଦ୍ଦେଶାଳୟର ମାନ୍ୟତା ଲାଭ କଲା ଏବଂ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡିକାଲ ହସ୍‌ପିଟାଲକୁ ଲାଗିଥିବା ନିଜ କ୍ୟାମ୍ପସ୍‌ରେ କାର୍ଯ୍ୟ ଆରମ୍ଭ କଲା । ଡକ୍ଟର ମିତ୍ରଙ୍କ ସୁଦକ୍ଷ ପରିଚାଳନା ବିଭାଗଟିକୁ ଇମିତି ରୂପ ଦେଲା ଯେ, ଗାଁ ଗଣ୍ଡାର ମଣାଣି, ଅନାବାଦି, ପତିତ ଜମି ଆଉ ଅକାମୀ ରହିଲାନି । ଚାଲିଲା ପୋଖରୀ ପରେ ପୋଖରୀ ଖୋଳା । ଲୋକଙ୍କ ବାଡ଼ି ବଗିଚା ମଧ ମାଛ ପୋଖରୀ ରୂପ ନେଲା । ସେତେବେଳେ ମତ୍ସ୍ୟ ବିଭାଗରେ କାମ କରୁଥିବା କର୍ମଚାରୀମାନେ ସିମିତିକା ଆନୁଷ୍ଠାନିକ ତାଲିମ କେହି ପାଇ ନଥିଲେ । ଡକ୍ଟର ମିତ୍ରଙ୍କ ନିର୍ଦ୍ଦେଶନାରେ ସେମାନେ ତାଲିମ ପାଇ ଆପେ ଆପେ କୁଶଳୀ ହୋଇ ଠିଆ ହୋଇଗଲେ । ମାଛ ଚାଷର ଜ୍ଞାନ କୌଶଳ (Technology) ଶିଖିଲେ । କାମ ଚାଲିଲା । ସାରା ରାଜ୍ୟରେ ମାଛଚାଷ ଆନ୍ଦୋଳନ ଚାଲିଲା । ଲୋକେ ମାଛଚାଷ କରିବାକୁ ଆଗେଇ ଆସିଲେ । ମାଛଚାଷ ପାଇଁ ନଦୀ ଜାଆଁଳ ମତ୍ସ୍ୟ ବିଭାଗ ଚାଷୀଙ୍କୁ ଯୋଗାଇ ଚାଲିଲା । ଅବଶ୍ୟ ସେ ଜାଆଁଳ ସେତେ ନିରୁତା ନଥିଲା । ତଥାପି ବଡ଼ ମାଛ– ରୋହୀ, ଭାକୁର, ମିରିକାଳୀ ହାର ଅଧିକ ଥିଲା ।

ମତ୍ସ୍ୟ ବିଭାଗ ସୃଷ୍ଟିର କିଛି ବର୍ଷ ପରେ ରାଜ୍ୟ ମତ୍ସ୍ୟ ନିର୍ଦ୍ଦେଶକ ଡଃ ମିତ୍ର ଓ ଭାରତ ସରକାରଙ୍କ କେନ୍ଦ୍ରୀୟ ମତ୍ସ୍ୟଚାଷ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ଡକ୍ଟର ଆଲିକୁନୀଙ୍କ ନେତୃତ୍ୱରେ ଅନୁଗୁଳ ମାଛ ଫାର୍ମରେ ପ୍ରଥମେ ପ୍ରଭାବିତ ମାଛ ଜାଆଁଳ ପ୍ରଜନନ କାର୍ଯ୍ୟକ୍ରମ (Induced breeding) ହାତକୁ ନିଆଗଲା ବେଳେ କେହି କେବେ କଳ୍ପନା କରିନଥିଲା, ଇଂଜେକ୍ସନ ଦ୍ୱାରା ପୋଖତ ମାଈମାଛ ପେଟରୁ ଜାଡ଼ିଆ ଜାଆଁଳ ଉତ୍ପାଦନ କରାଯାଇପାରିବ । ପରୀକ୍ଷା ସତ ହେଲା । କୃତ୍ରିମ ପ୍ରଜନନ ସେଇ ଦିନଠୁଁ ଆଜି ଯାଏ ଚାଲି ଆସିଛି । ଜାଡ଼ିଆ ମାଛର ଜାଆଁଳ ମାଛଚାଷୀମାନଙ୍କୁ ଯୋଗାଇ ଦେବାରେ କୌଣସି ହେଳା ନାହିଁ ।

ମତ୍ସ୍ୟ ବିଭାଗର କୁଶଳୀ କର୍ମଚାରୀମାନେ ତ କଲେ ହଜନି, ତେବେ ସାଧାରଣ ମାଛଚାଷୀମାନଙ୍କୁ ଏଇ ଜ୍ଞାନ କୌଶଳ ଶିଖେଇବା ଦରକାର । ତେଣୁ ଆଗ୍ରହୀ ଚାଷୀମାନଙ୍କ ପୋଖରୀରେ ଏହି କାର୍ଯ୍ୟକ୍ରମ ଚାଲିଛି । ଏଥିପାଇଁ ଆଗରୁ ମାଈ ମାଛମାନଙ୍କୁ ଭଲ ଖାଦ୍ୟ ଯୋଗାଇ ପୋଖତ ଅବସ୍ଥାକୁ ଆଣିବା କଥା । ଚାଷୀମାନେ ଏ ପୋଖତ ମାଛମାନଙ୍କୁ ଚିହ୍ନି ସାରିଲେଣି । କାର୍ଯ୍ୟକ୍ରମରେ କୌଣସି ଅସୁବିଧା ଉପୁଜିନି ।

୧୯୯୫ ମସିହାରୁ ସ୍ୱତନ୍ତ୍ର ମତ୍ସ୍ୟ ନିର୍ଦ୍ଦେଶାଳୟ ସୃଷ୍ଟି ହେଲା ଠାରୁ ମତ୍ସ୍ୟ ସୂଚନା ସେବା ଯେ ଚାଲି ନଥିଲା, ସେକଥା ନୁହେଁ । ମତ୍ସ୍ୟ ସୂଚନା ସକ୍ରିୟ କାର୍ଯ୍ୟ କରିନଥିଲେ ବ୍ୟାପକ ମତ୍ସ୍ୟଚାଷ ଆନ୍ଦୋଳନ ରାଜ୍ୟ ସାରା କିମିତି ହୋଇ ପାରିଥାନ୍ତା ?

ଏଇ ସୂଚନା ସେବା ପାଇଁ ଆନୁଷ୍ଠାନିକ ଭାବେ ମତ୍ସ୍ୟ ସୂଚନା ସେବା କାର୍ଯ୍ୟ କରି ଚାଲୁଥିଲା । ଡଃ ମିତ୍ରଙ୍କ ଦୃଢ଼ ପ୍ରଶାସନ ଫଳରେ କ୍ଷେତ୍ର ପ୍ରଦର୍ଶନ ବ୍ୟାପକ ଆକାର ଧାରଣ କରିଥିଲା । ନୂଆ ନୂଆ ମାଛ ଫାର୍ମ ପ୍ରତିଷ୍ଠା କରାଯାଉଥିଲା । ଆଗ୍ରହୀ ମାଛଚାଷୀମାନଙ୍କୁ ସବୁପ୍ରକାର ପ୍ରୋତ୍ସାହନ ଦିଆଯାଉଥିଲା । ରାଜ୍ୟ ବାହାରେ ମହାନଗରମାନଙ୍କରେ ବିଭିନ୍ନ ପ୍ରଦର୍ଶନୀରେ ମତ୍ସ୍ୟ ବିଭାଗ ସକ୍ରିୟ ଅଂଶ ଗ୍ରହଣ କରିଆସିଛି ଏବଂ ସୁନାମ ବି ମିଳିଛି ।

ସୂଚନା, ଜ୍ଞାନ କୌଶଳ ତଥା ପରିପ୍ରଚାର ସଂପର୍କରେ ଆଉ ଗୋଟିଏ କଥାର ସଂକ୍ଷେପ ଅବତାରଣା ଏଠି କରୁଛି । କାରଣ ଏ ଦିଗରେ ଆଗ୍ରହୀ ଉପଭୋକ୍ତାମାନଙ୍କୁ ଯଥା ସମୟରେ ସାହାଯ୍ୟ, ସହଯୋଗ, ପ୍ରୋତ୍ସାହନ ମତ୍ସ୍ୟ ବିଭାଗ ଦେଇ ଆସିଛି । ମଧୁର ଜଳରେ ମାଛଚାଷ କାର୍ଯ୍ୟକ୍ରମର ସଫଳତା ପରେ ନୂଆ ନୂଆ ସୂଚନା ଓ ଜ୍ଞାନ କୌଶଳ ପ୍ରୟୋଗରେ ସମୁଦ୍ର ଉପକୂଳ ଓ ଖାରିପାଣି ମାଡ଼ୁଥିବା କ୍ଷେତ୍ରରେ ବ୍ୟାପକ ରପ୍ତାନୀଯୋଗ୍ୟ ଚିଙ୍ଗୁଡ଼ିଚାଷ କାର୍ଯ୍ୟକ୍ରମକୁ ମତ୍ସ୍ୟ ବିଭାଗ ହାତକୁ ନେଲା । ଆଜି ଓଡ଼ିଶା ଉପକୂଳ ଅଞ୍ଚଳରେ ଯାନ୍ତ୍ରିକ ମାଛଧରା ଟ୍ରଲର ଜରିଆରେ ସମୁଦ୍ର ମାଛଧରା କାର୍ଯ୍ୟକ୍ରମ ଓ କୁଆରିଆ ଅଞ୍ଚଳରେ ରପ୍ତାନୀ ଯୋଗ୍ୟ ଚିଙ୍ଗୁଡ଼ି ଚାଷ କାର୍ଯ୍ୟକ୍ରମ ଫଳରେ ପୁଷ୍ଟିକର ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି ହାସଲ ହୋଇପାରିଛି । ଉପଭୋକ୍ତାମାନଙ୍କ ହାତକୁ କଞ୍ଚା ପଇସା ଆସିଛି । ସାମଗ୍ରିକ ଭାବେ ରାଜ୍ୟର ମତ୍ସ୍ୟ ଉତ୍ପାଦନ ବୃଦ୍ଧି ପାଇଛି ।

କାଳକ୍ରମେ କେତେକ ଅଶୋଭନୀୟ ପରିସ୍ଥିତି ଉପୁଜିବାରୁ ମତ୍ସ୍ୟ ବିଭାଗ ଭଳି ଏକ ବୈଷୟିକ ବିଭାଗର ଶାସନ ଡୋରି ଭାରତୀୟ ପ୍ରଶାସନ ସେବା (I.A.S.) ହାତକୁ ଯିବାକୁ ବାଧ ହେଲା । ଏହି କ୍ରମରେ ପ୍ରଥମ ମତ୍ସ୍ୟ ନିର୍ଦ୍ଦେଶକ ଭାବେ ଶ୍ରୀ ପଦ୍ମନାଭ ମିଶ୍ର ଆଇ.ଏ.ଏସ୍. ଦାୟିତ୍ୱ ଗ୍ରହଣ କଲେ । ତାଙ୍କ ପରେ ଆସିଲେ ଶ୍ରୀ ନୃସିଂହ ଚରଣ ବେହୁରିଆ, ଆଇ.ଏ.ଏସ୍. । ପରେ ଶ୍ରୀ ଉପେନ୍ଦ୍ର ମୋହନ ସେନାପତି, ଆଇ.ଏ.ଏସ୍, ଶ୍ରୀ ମଦନ ମୋହନ ମହାନ୍ତି, ଆଇ.ଏ.ଏସ୍., ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା, ଆଇ.ଏ.ଏସ୍ ଏବଂ ଶ୍ରୀ ଲିଭିନସ୍ କିଣ୍ଡୋ, ଆଇ.ଏ.ଏସ୍ । ଶ୍ରୀ ବେହୁରାଙ୍କ ଅମଳରୁ ମତ୍ସ୍ୟ ସୂଚନା ସେବା କାର୍ଯ୍ୟ ଆରମ୍ଭ ହୋଇଥିଲା । ମାସିକ ବୁଲେଟିନ୍ ପ୍ରକାଶନ ସହିତ ପାମ୍ପଲେଟ୍, ଲିଫଲେଟ୍ ଓ ହ୍ୟାଣ୍ଡ ଆଉଟ ଆଦି

ପ୍ରକାଶ ପାଇଲା । ଶ୍ରୀ ସେନାପତି ମତ୍ସ୍ୟ ସୂଚନା ଉପରେ ଗୁରୁତ୍ୱ ଆରୋପ କରି କେତେକ ଉପାଦେୟ ପାମ୍ଫଲେଟ୍ ଆଦି ପ୍ରକାଶନରେ ପ୍ରୋତ୍ସାହନ ଦେଲେ ଏବଂ ପ୍ରଥମବାର ରାଜ୍ୟ ମତ୍ସ୍ୟ ବିଭାଗ ରାଜଧାନୀ ଦିଲ୍ଲୀରେ ଅନୁଷ୍ଠିତ ହେଉଥିବା ଆନ୍ତର୍ଜାତିକ ବାଣିଜ୍ୟ ମେଳା (୧୯୭୭)ରେ ସକ୍ରିୟ ଅଂଶ ଗ୍ରହଣ କରି ଉଚ୍ଚ ପ୍ରଶଂସିତ ହୋଇଥିଲା । ଉଡ଼ାଜାହାଜରେ ପହଞ୍ଚିଥିବା ପାରାଦ୍ୱୀପର ବଡ଼ ଚିଙ୍ଗୁଡ଼ି (ପାରାଦ୍ୱୀପ ନାରିଙ୍ଗା) ଦିଲ୍ଲୀ ଦର୍ଶକମାନଙ୍କ ପାଇଁ ଏକ ଆକର୍ଷଣୀୟ ସାମଗ୍ରୀ ହୋଇଥିଲା ।

ଶ୍ରୀ ସେନାପତିଙ୍କ ପରେ ୧୯୭୮ ମସିହାରେ ମତ୍ସ୍ୟ ନିର୍ଦ୍ଦେଶକର ଦାୟିତ୍ୱ ଗ୍ରହଣ କରନ୍ତି ଶ୍ରୀ ମଦନ ମୋହନ ମହାନ୍ତି । ତାଙ୍କର ଦକ୍ଷ, ଗତିଶୀଳ ବ୍ୟକ୍ତିତ୍ୱ ମତ୍ସ୍ୟ ବିଭାଗର ହାଲ ହରକତ, ଅଭାବ ଅସୁବିଧା ହୃଦୟଙ୍ଗମ କରି ଦୃଢ଼ ନେତୃତ୍ୱ ଦେବାକୁ ଆଗେଇ ଆସିଲେ । ଦରିଦ୍ର ଜନସାଧାରଣଙ୍କର ଆର୍ଥିକ ଅବସ୍ଥା ସୁଧାରିବା ପାଇଁ ମାଛଚାଷ ଯେ ଏକ ସିଧାସଳଖ ତରିକା ଏକଥା ବୁଝିସାରିବା ପରେ ସେ ତାଙ୍କର ଦୃଢ଼ ନେତୃତ୍ୱ ଜାହିର କଲେ । ଡକ୍ଟର ମିତ୍ରଙ୍କ ସୃଷ୍ଟ ମତ୍ସ୍ୟ ବିଭାଗ ଜୀବନ୍ୟାସ ଲାଭକଲା । ବଜେଟ ବଢ଼ିଲା । ନିଯୁକ୍ତି ସୃଷ୍ଟି ହେଲା । କ୍ଷେତ୍ରରେ କର୍ମଶୀଳତା ବଢ଼ିଲା । କୁଶଳୀ କର୍ମଚାରୀମାନଙ୍କ ମଧ୍ୟରେ ଅଧିକ ଆନ୍ତରିକତା, ଅଧିକ ନିଷ୍ଠା ବୃଦ୍ଧି ଘଟିଲା । ନିର୍ଦ୍ଦେଶାଳୟ ପକ୍ଷରୁ ପ୍ରୋତ୍ସାହନ ଦେବାରେ କୌଣସି ତ୍ରୁଟି ହେଲା ନାହିଁ । ମତ୍ସ୍ୟ ବିଭାଗର ସମୃଦ୍ଧି ଦିଗରେ ଏକ ନୂଆ ମୋଡ଼ ସମସ୍ତଙ୍କୁ ବିସ୍ମିତ କରିଦେଲା । ଶ୍ରୀ ମହାନ୍ତିଙ୍କର ଦୃଢ଼ ନେତୃତ୍ୱ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଶ୍ରେଷ୍ଠ ମତ୍ସ୍ୟ ବିଜ୍ଞାନୀ ଡକ୍ଟର ମିତ୍ରଙ୍କର ଆତ୍ମସନ୍ତୋଷ ଲାଭ କଲା ।

ଶ୍ରୀ ମହାନ୍ତି ବେଶ୍ ବୁଝି ପାରିଲେ, ମତ୍ସ୍ୟ ବିଭାଗ ଭଳି ଏକ ବିକଶିତ ବିଭାଗ ପାଇଁ ପ୍ରକୃତରେ ମତ୍ସ୍ୟ ସୂଚନା ଓ ପରିପ୍ରଚାରର ଗୁରୁତ୍ୱ କେତେ ବେଶି । ରାଜ୍ୟସାରା ବ୍ୟାପକ ସୂଚନା ଓ ପରିପ୍ରଚାର ବ୍ୟବସ୍ଥା ପାଇଁ ନିର୍ଦ୍ଦେଶାଳୟ ସ୍ତରରେ ସୃଷ୍ଟି ହେଲା– ମତ୍ସ୍ୟ ସୂଚନା ସେବା (Fishery Information Service) ଏବଂ ସମଗ୍ର ରାଜ୍ୟ ପାଇଁ ଏହାର ନିର୍ବାହକ ଭାବେ କାର୍ଯ୍ୟକରିବା ପାଇଁ ସିନିୟର ଦ୍ୱିତୀୟ ଶ୍ରେଣୀ ସର୍ଭିସ୍ କ୍ୟାଡରର ଜଣେ ରଚନା ଅଧିକାରୀ (Production Officer) ପଦବୀ ସୃଷ୍ଟି ହେବା ସହିତ କଟକ, ସମ୍ବଲପୁର ଓ ବ୍ରହ୍ମପୁରରେ ତିନୋଟି ସୂଚନା ଓ ପରିପ୍ରଚାର ମଣ୍ଡଳ ପ୍ରତିଷ୍ଠା କରାଗଲା ।

ପ୍ରତ୍ୟେକ ମଣ୍ଡଳରେ ଜଣେ ଲେଖାଏଁ ପ୍ରଚାର ସହାୟକ, ଜଣେ ଲେଖାଏଁ ପ୍ରୋଜେକ୍ଟର ଓ ଜଣେ ଲେଖାଏଁ ହେଲପର ମୁତୟନ ହେବା ଫଳରେ ରାଜ୍ୟସାରା ବ୍ୟାପକ ସୂଚନା ଓ ପରିପ୍ରଚାର ଏକ 'ଆନ୍ଦୋଳନ' ରୂପେ କାର୍ଯ୍ୟ କରି ଜନ ସଚେତନତା ଆଣିଦେଲା । ନିର୍ଦ୍ଦେଶାଳୟ ସ୍ତରରେ ନିଯୁକ୍ତ ହୋଇଥିବା ରଚନା ଅଧିକାରୀଙ୍କ ମୁଖ୍ୟ ଦାୟିତ୍ୱ ହେଲା, ତିନୋଟି ମଣ୍ଡଳ ସହିତ ସୁସମନ୍ୱୟ ରଖିବା ସଂଗେ ସଂଗେ ନିର୍ଦ୍ଦେଶାଳୟ ସ୍ତରରେ ସାରା ରାଜ୍ୟପାଇଁ ଆବଶ୍ୟକୀୟ ସୂଚନା ଓ ପରିପ୍ରଚାର ସାମଗ୍ରୀ ପ୍ରସ୍ତୁତ କରି କ୍ଷେତ୍ର ପ୍ରଚାରକୁ ତ୍ୱରାନ୍ୱିତ କରିବା । ଗଣ ମାଧ୍ୟମ: ପ୍ରେସ, ଆକାଶବାଣୀ ଓ ଦୂରଦର୍ଶନରେ କାର୍ଯ୍ୟକ୍ରମ ପ୍ରସ୍ତୁତି, ପରିବେଷଣ ଦାୟିତ୍ୱ ମଧ୍ୟ ରଚନା ଅଧିକାରୀଙ୍କ ଦାୟିତ୍ୱ ଥିଲା । ମତ୍ସ୍ୟ ସୂଚନା ଓ ପରିପ୍ରଚାର ପାଇଁ ଆବଶ୍ୟକୀୟ ଶ୍ରାବ୍ୟ-ଦୃଶ୍ୟ ସାମଗ୍ରୀ (Audio Visual Equipments) ଯୋଗାଇ ଦେବା ଦିଗରେ ଅଧିକ ପାଣ୍ଠି ବ୍ୟବସ୍ଥା ଓ ଯୋଜନା ପ୍ରଣୟନ ଫଳରେ ରାଜ୍ୟ ମତ୍ସ୍ୟ ସୂଚନା ସେବା ଏକ 'ଅଗ୍ରଗାମୀ ସଂସ୍ଥା'ରେ ପରିଣତ ହୋଇ ଗଣମାଧ୍ୟମ ଓ କ୍ଷେତ୍ର ପ୍ରଚାର କ୍ଷେତ୍ରରେ କୃତିତ୍ୱ ହାସଲ କରି ଜନସାଧାରଣଙ୍କର ଶ୍ରଦ୍ଧା ଭାଜନ ହୋଇ ପାରିଛି । ଏଇଠି ବୁଝିବାର କଥା, ବ୍ୟକ୍ତିକୁ ଘେନି ଅନୁଷ୍ଠାନ । ପ୍ରଶାସନିକ ଦୃଢ଼ତା, କର୍ମ କୁଶଳତା ଓ ନିଷ୍ଠା ଫଳରେ ପ୍ରଗତି ଅନାୟାସେ ସମ୍ଭବ ଏକଥା ମଧ୍ୟ ପ୍ରମାଣିତ ।

ଶ୍ରୀ ମହାନ୍ତିଙ୍କର ରାଜ୍ୟ ସଚିବାଳୟକୁ ବଦଳି ହେବା ପରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଦୃଢ଼ ହସ୍ତର ପ୍ରଶାସକ (Steam Line administrator in I.A.S. Cadre) ଶ୍ରୀ ହୋତା ମତ୍ସ୍ୟ ନିର୍ଦ୍ଦେଶକ ଭାବେ ଦାୟିତ୍ୱ ନିର୍ବାହ କରିବାକୁ ଯୋଗ ଦେଲେ । ଶୃଙ୍ଖଳିତ କର୍ତ୍ତବ୍ୟବୋଧ ଥିଲା ତାଙ୍କ ନିକଟରେ ଭଗବାନ । ତାଙ୍କ ବଳିଷ୍ଠ ନେତୃତ୍ୱରେ ମତ୍ସ୍ୟ ସୂଚନା ଓ ପରିପ୍ରଚାର କ୍ଷେତ୍ରରେ ଅଶାତୀତ ଉନ୍ନତି ସାଧିତ ହୋଇଥିଲା । ଶ୍ରୀ ମହାନ୍ତିଙ୍କର ସମସ୍ତ ଅସଂପୂର୍ଣ୍ଣ କାର୍ଯ୍ୟକୁ ସେ ସମ୍ପୂର୍ଣ୍ଣ କରିଥିଲେ ।

ଆଜି ସୂଚନା ଜ୍ଞାନ କୌଶଳ (Information Technology) ଭାରତ ସରକାରଙ୍କ ଦୃଷ୍ଟିରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । କାରଣ ଯୋଗାଯୋଗ କ୍ଷେତ୍ରରୁ ଆରମ୍ଭ କରି ପ୍ରତିକ୍ଷେତ୍ରରେ ସୂଚନାର ଆବଶ୍ୟକତା ଅପରିହାର୍ଯ୍ୟ । ଏହି ସୂଚନାର ବ୍ୟାପକତା ପାଇଁ ଯେତେବେଳେ 'ଇଣ୍ଟର ନେଟ' ଆଶ୍ରିତ ହେବାକୁ ପଡ଼ିଲାଣି, ସେତେବେଳେ ଏହାର ମହତ୍ୱ ଅନସ୍ୱୀକାର୍ଯ୍ୟ ।

ସୂଚନା ଓ ପରିପ୍ରଚାର ମାଧ୍ୟମ ହେଲା ମୁଖ୍ୟତଃ ଚାରୋଟି । (୧) ଲିଖିତ (written) ୨. କଥିତ (spoken) ୩. ଶ୍ରାବ୍ୟ(Audio) ଏବଂ ୪. ଦୃଶ୍ୟ (visual) । ଏହି ଚାରୋଟି ବିଭାଗ ଉପରେ ସୂଚନା ଓ ପରିପ୍ରଚାର ପର୍ଯ୍ୟବେସିତ । ସାରା ବିଶ୍ୱରେ ତଥ୍ୟଭିତ୍ତିକ ପରିପ୍ରଚାର ଉପରେ ଗୁରୁତ୍ୱ ଦିଆଯାଉଥିବା ବେଳେ ଭାରତ ବା ଟିକିଏ ପଛରେ ରହିଯାଆନ୍ତା । କିମିତି ?

ଯେତେବେଳେ ତୁରୀ, ଢୋଲ, ନାଗରା ଓ ଢ଼ୁହାଳିଆ ମଣିଷକୁ ନେଇ ସୂଚନା ଓ ପରିପ୍ରଚାର ଚାଲିଥିଲା, ସେ ଯୁଗ ଏବଂ ଏ ଯୁଗ କଥା ବିଚାର କଲେ ଆଜିର ଗଣମାଧ୍ୟମ ଯୁଗରେ ଗଣ ମାଧ୍ୟମ ଜରିଆରେ ସାରା ବିଶ୍ୱରେ ଏହାର ପ୍ରଗତି କେତେ କ୍ଷିପ୍ର, ସହଜରେ ଅନୁଭବ କରି ହେବ ।

ବିଭାଗୀୟ ସୂଚନା ଓ ପରିପ୍ରଚାର କାର୍ଯ୍ୟକ୍ରମ ତୁଳନାରେ ଗଣ ମାଧ୍ୟମରେ କାର୍ଯ୍ୟକ୍ରମ ପରିସର ବ୍ୟାପକ । ଗଣମାଧ୍ୟମର ବିଭିନ୍ନ ପର୍ଯ୍ୟାୟ ଯଥା: ମୁଦ୍ରଣ ମାଧ୍ୟମ (Printing media) ଆକାଶବାଣୀ (Radio) ଏବଂ ଦୂରଦର୍ଶନ (Television) । ମୁଦ୍ରଣ ମାଧ୍ୟମର ପ୍ରମୁଖ ସ୍ଥାନ ଅଧିକାର କରିଛି ଦୈନିକ ସମ୍ବାଦପତ୍ର । ସମ୍ବାଦପତ୍ରର ବିଶେଷ ଗୁରୁତ୍ୱ ଦୃଷ୍ଟିରୁ ତାହାକୁ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ କୁହାଯାଏ । କାରଣ ଏହା ଜନମତକୁ ପ୍ରଭାବିତ କରିଥାଏ । ସମ୍ବାଦପତ୍ରର ବିଶେଷ

ସୁରୁଚ୍ଚ ଦୃଷ୍ଟିରୁ ତାହାକୁ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ କୁହାଯାଏ । କାରଣ ଏହା ଜନମତକୁ ପ୍ରଭାବିତ କରିଥାଏ । ସମ୍ବାଦପତ୍ର ପୃଷ୍ଠାରେ ସମ୍ବାଦ ସହିତ ବିଭିନ୍ନ ବିଭାଗର ଅବତାରଣା ହୋଇଥିବାରୁ ସବୁ ଶ୍ରେଣୀର ପାଠକ ମହଲରେ ସମାଦୃତ ହୋଇଥାଏ । ଏବେ ସିନା ଆମ ରାଜ୍ୟ ବା ରାଜ୍ୟ ବାହାରେ ବିଭିନ୍ନ ଭାଷାରେ ସମ୍ବାଦପତ୍ର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି, କିନ୍ତୁ ସେକାଳରେ ଏକ ସମ୍ବାଦପତ୍ର ବା ମାସିକ ପତ୍ରିକା ପ୍ରକାଶନ କେତେ ଆୟାସସାଧ୍ୟ ହେଉଥିଲା, ସେକଥା ଭାବିଲେ ବିସ୍ମିତ ଲାଗେ ।

ବାର୍ତ୍ତାକୁ ସିଧା ସଳଖ ଗାଁ ଗଣ୍ଡା ବା ନିପଟ ମଫସଲରେ ପହଞ୍ଚାଇ ଦେବାରେ ଆକାଶବାଣୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଆଞ୍ଚଳିକ ସମ୍ବାଦ, ଜାତୀୟ ସମ୍ବାଦ, ଆନ୍ତର୍ଜାତିକ ସମ୍ବାଦ ପରିବେଷଣ ସହିତ କୃଷି ସଂସାର, ସ୍ୱାସ୍ଥ୍ୟ, ଶିକ୍ଷା, ନାରୀ ମହଲ, ଜ୍ଞାନ ବିଜ୍ଞାନ, ଶିଶୁ ଓ କିଶୋର ସଂସାର, କାରିଗରୀ ଜ୍ଞାନକୌଶଳ, ସାହିତ୍ୟ, ସଂସ୍କୃତି, ନାଟକ, କ୍ରୀଡ଼ା ଓ ଅନ୍ୟାନ୍ୟ ବହୁ ବିଷୟର ପ୍ରସାର ଫଳରେ ଶ୍ରୋତାମହଲରେ ବହୁକାଳରୁ ପ୍ରିୟ । ଏବେ ସିନା ଇନ୍ଦିରାଗାନ୍ଧୀଙ୍କ ରାଜତ୍ୱକାଳରେ ଦୂରଦର୍ଶନ ଆମ ଦେଶରେ ବ୍ୟାପକ ହେଲା, କିନ୍ତୁ ଆକାଶବାଣୀ ତ ବହୁକାଳରୁ ଜନଜୀବନର ସେବା କରି 'ସର୍ବଜନାୟ ସୁଖାୟ' ହୋଇ ଆସିଛି । ହିଡ଼ ମୁଣ୍ଡାରେ ରେଡ଼ିଓ ଥୋଇ ଚାଷୀ ଚାଷ କାମ କରୁଛି । ଘରଣୀ ଚୁଲି ମୁଣ୍ଡରେ ରେଡ଼ିଓ ଥୋଇ ବ୍ୟଞ୍ଜନ ପ୍ରସ୍ତୁତ କରୁଛି ।

ଆକାଶବାଣୀ କାର୍ଯ୍ୟକ୍ରମ ଶ୍ରାବ୍ୟ (audio) ପ୍ରଧାନ । ଲେଖା ଧରି କଥକ, ବକ୍ତା ବା ଶିଳ୍ପୀ (ନେପଥ୍ୟରେ) ନିଜ ସ୍ୱର ମାଧ୍ୟମରେ ଶ୍ରୋତାମାନଙ୍କ ନିକଟରେ ପହଞ୍ଚି ପାରୁଥିବା ବେଳେ ଦୂରଦର୍ଶନ ଶ୍ରାବ୍ୟ ଓ ଦୃଶ୍ୟ (audio/visual) ଉଭୟକୁ ନେଇ କୋଟି କୋଟି ଦର୍ଶକଙ୍କର ଚିତ୍ତ ଆକର୍ଷଣ କରି ଚାଲିଛି । ଗାଁ ଗହଳିର ଜଣେ ସାଧାରଣ ମଣିଷ ଆଜି ସାରା ବିଶ୍ୱର ହାଲ ହକିକତ୍ ଦେଖି ଶୁଣି ତତ୍କ୍ଷଣାତ୍ ଜାଣି ପାରୁଛି । ଯୋଜନ ଯୋଜନ ଦୂରକୁ ନିକଟ କରିଛି ଦୂରଦର୍ଶନ । ନାମକୁ ସାର୍ଥକ କରିଛି । ଆଜିର ଆଧୁନିକ ଗଣଯୋଗାଯୋଗ ଯୁଗରେ ଟେଲିଫୋନ/ ଟେଲିଭିଜନ ବ୍ୟସ୍ତ ମଣିଷର ନିତି ଦିନର ସାଥୀ ହେଲେଣି । ଘରେ ଘରେ ଟେଲିଭିଜନ ବିଳାସ ନୁହେଁ– ଏକ ଆବଶ୍ୟକତା । ଆକାଶବାଣୀ ଭଳି ସକଳ ପ୍ରକାର କାର୍ଯ୍ୟକ୍ରମ ପରିବେଷଣ କରିଚାଲିଛି । 'ସିଧା ପ୍ରସାରଣ' କାର୍ଯ୍ୟକ୍ରମ ଫଳରେ ଘର/ ବାହାର ସମସ୍ତଙ୍କୁ ଦେଖି ହଉଛି । ଶୁଣି ହଉଛି । କାର୍ଯ୍ୟକ୍ରମ ଦେଖି ଆନନ୍ଦ ମିଳୁଛି । ଦୂରଦର୍ଶନ ମାଧ୍ୟମରେ ଜ୍ଞାନ ବିଜ୍ଞାନ ଆଜି ମୁକୁଳା । ମଣିଷ ଅନ୍ଧାର ମନର ନିବୁଜ କୋଠରୀ ଆଜି ସୂଚନାରେ ମୁକୁଳା । ତହିଁରେ ଜହ୍ନକା ଜ୍ଞାନ ଆଲୁଅରେ ଦୁଆର ।

ଆଧୁନିକ ଗଣମାଧ୍ୟମକୁ ସାଥୀରେ ଘେନି ରାଜ୍ୟ ମତ୍ସ୍ୟ ସୂଚନା ସେବା ସବୁ ପର୍ଯ୍ୟାୟରେ 'ଅଗ୍ରଗତି' କରି ଗଣ ମାଧ୍ୟମରେ ତାହାର ଆସନ ବାଛି ନେଇଛି । ଦୈନିକ ସମ୍ବାଦପତ୍ର ପାଇଁ ସୂଚନା, ତଥ୍ୟମୂଳକ ରଚନା, ସମ୍ବାଦ, ରିପୋର୍ଟ ଆଦି ପରିବେଷଣ ସଂଗେ ସଂଗେ ଆକାଶବାଣୀ ଓ ଦୂରଦର୍ଶନର ବିଭିନ୍ନ କାର୍ଯ୍ୟକ୍ରମର formatକୁ ସୁହାଇଲା ଭଳି ସୂଚନା, ତଥ୍ୟ, ସମାଚାର ଓ ରିପୋର୍ଟ ଆଦି ଯୋଗାଇ ଦେବାରେ ତ୍ରୁଟି ହୋଇନି । ବିଭାଗୀୟ ବୁଲେଟିନ୍, ପାମ୍ପଲେଟ୍, ହ୍ୟାଣ୍ଡ ଆଉଟ, କୃତିତ୍ୱ କାହାଣୀ କଥିକା (talk) ସାକ୍ଷାତକାର (Interview) କ୍ଷେତ୍ରଭିତ୍ତିକ କାର୍ଯ୍ୟକ୍ରମ, ଫିଚର ଆଦି ପରିବେଷଣ ନିୟମିତ କରାଯାଇଛି । ଦୂରଦର୍ଶନର 'ପଲ୍ଲିଶ୍ରୀ' ବିଭାଗ ଜରିଆରେ ଗାଁ ଗଣ୍ଡାର ମାଛଚାଷୀମାନଙ୍କ ଚାଷ ପୋଖରୀକୁ ନେଇ ବିଭିନ୍ନ ପର୍ଯ୍ୟାୟରେ କାର୍ଯ୍ୟକ୍ରମ କରାଯାଇ ଯଥା ସମୟରେ ପ୍ରସାରିତ ହୋଇଛି । ଏହି କ୍ରମରେ ପ୍ରାୟ ୨୬ଗୋଟି ଦୂରଦର୍ଶନ recording କରାଯାଇଥିବାର ମନେ ହୁଏ । ତାପରେ କେବଳ କଥା ଆବୃତ୍ତି (narration) ଦେଇ ଚିତ୍ର ପ୍ରସ୍ତୁତ କରା ନଯାଇ ତହିଁରେ ବିଭିନ୍ନ format ସଂଯୋଜନା କରାଯାଇଥିବାରୁ ଅନ୍ୟ ବିଭାଗର କାର୍ଯ୍ୟକ୍ରମ ତୁଳନାରେ ମତ୍ସ୍ୟ ବିଭାଗର କାର୍ଯ୍ୟକ୍ରମ ଅଧିକ ଆକର୍ଷଣୀୟ ଓ ଲୋକ ପ୍ରିୟତା ହାସଲ କରିପାରିଛି । ଅସଲ କଥା, ଏଥିପାଇଁ ସୃଜନଶୀଳତା (creativity) ଲୋଡ଼ା । ଲେଖା (script) ସହିତ ଦୃଶ୍ୟ (Visual) ସାମଗ୍ରୀ ଗୁଡ଼ିକର ସାମ୍ୟ ରହିଲେ ସୁଟିଂ କରାଯାଉଥିବା ଚିତ୍ରଟି ଆଶାନୁରୂପ ହୋଇପାରିବ । ଦୂରଦର୍ଶନ 'ପଲ୍ଲିଶ୍ରୀ' ବିଭାଗର ପ୍ରଯୋଜକ ଓ ବିଭାଗୀୟ ରଚନା ଅଧିକାରୀଙ୍କ ସଂଯୋଜନାରେ ପ୍ରସ୍ତୁତ ହେବା ଫଳରେ ତଥ୍ୟ ଭିତ୍ତିକ ତ୍ରୁଟି ବା ବୈଷୟିକ ତ୍ରୁଟି ପରିଲକ୍ଷିତ ହୋଇନି । ଆଦ୍ୟ ଅବତାର 'ମାଛ' ଗଣମାଧ୍ୟମକୁ ଅକ୍ତିୟାର କରି ଜନସାଧାରଣଙ୍କ ହୃଦୟରେ ଆସନ ଜମେଇ ବସିଛି ଏବଂ ଗାଁ ଗହଳିରେ ଅର୍ଥନୀତିକୁ ବଦଳେଇ ଦେଇଛି ।

ଆଜି ଘରେ ବାହାରେ ସବୁଠି ସୂଚନା ଓ ପରିପ୍ରଚାର । ଆକାଶବାଣୀ, ଦୂରଦର୍ଶନ ଓ ରାସ୍ତାଘାଟ ସୂଚନା ଓ ପରିପ୍ରଚାର ସାମଗ୍ରୀରେ ଭରପୂର । ଶ୍ରୋତା, ଦର୍ଶକ ଓ ଗ୍ରାହକ ମହଲରେ ଏହା ଏକ ସାର୍ଥକ ପଦକ୍ଷେପ । ସିଧା ସଳଖ ଦେଖିବା ଫଳରେ ସାଧାରଣ ମଣିଷ ମନରେ ସଚେତନତା ବୃଦ୍ଧି ପାଇବା ସାଙ୍ଗକୁ 'ବାର୍ତ୍ତା' ମଧ୍ୟ ମନକୁ ସ୍ପର୍ଶ କରୁଛି ।

ମତ୍ସ୍ୟ ସୂଚନା ସେବାର ଉନ୍ମେଷ କାଳରୁ ମତ୍ସ୍ୟଚାଷ ବିକାଶ ପାଇଁ ବିଭିନ୍ନ କାର୍ଯ୍ୟକ୍ରମକୁ ଗଣ ମାଧ୍ୟମରେ ପରିବେଷଣ କରିବା ଦିଗରେ ଆଶୁ ପଦକ୍ଷେପ ନିଆଯାଇଛି । ଜ୍ଞାନ କୌଶଳକୁ ସିଧା କ୍ଷେତ୍ର ତଥା ଦୂରଦର୍ଶନରୁ ଦେଖି ଚାଷୀ ଧନ୍ଦାଟିକୁ ନିଜର କରିପାରିଛି । ମତ୍ସ୍ୟ ସୂଚନା ମଧ୍ୟ ଗଣମାଧ୍ୟମର ସେବା ସାଧନ ରୂପେ କରିଚାଲିଛି ।

ଯୁଗେ ଯୁଗେ ସୂଚନା ଓ ପରିପ୍ରଚାର ତାହାର ମହତ୍ତ୍ୱ ପ୍ରକଟିତ କରି ଆସିଛି ଏବଂ ଆଜି ତାହା ଏକ ସ୍ୱତନ୍ତ୍ର ଆସନ ସାରା ଦେଶରେ ସୁଦୃଢ଼ କରି ଭାରତ ସରକାରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ସେବା ରୂପେ ପରିଣତ ହୋଇଛି । ଆଜି କିଛି ମିଛ ନୁହେଁ । ଗଣ ମାଧ୍ୟମରେ ସବୁ ଆଖି ଦେଖା । ସବୁ ସତ । ସବୁ ସତ ।

ପ୍ରେସ କଲୋନୀ, କଟକ-୭୫୩୦୦୧

# ମହିଳା ଓ ଶିଶୁ ବିକାଶ କାର୍ଯ୍ୟକ୍ରମ

ମହିଳା ଓ ଶିଶୁ ବିକାଶ ବିଭାଗ ୧୯୯୪-୯୫ ମସିହାରେ ପଞ୍ଚାୟତିରାଜ ବିଭାଗ ଠାରୁ ଅଲଗା ହୋଇ ଏକ ସ୍ୱତନ୍ତ୍ର ବିଭାଗରେ ପରିଣତ ହେଲା । ଏହି ବିଭାଗ ମହିଳା, ଶିଶୁ, ଶାରୀରିକ ବିକଳାଙ୍ଗ, ନିରାଶ୍ରୟ, ବୃଦ୍ଧ ଏବଂ ସମାଜର ଅନ୍ୟାନ୍ୟ ଅସହାୟ ବର୍ଗଙ୍କ ପାଇଁ ବିଭିନ୍ନ ପ୍ରକାର କଲ୍ୟାଣମୂଳକ ଯୋଜନା କାର୍ଯ୍ୟକାରୀ କରୁଅଛନ୍ତି ।

## ଶିଶୁ ବିକାଶ କାର୍ଯ୍ୟକ୍ରମ

ସମନ୍ୱିତ ଶିଶୁବିକାଶ ଯୋଜନା ମାଧ୍ୟମରେ ଶିଶୁମାନଙ୍କ ପାଇଁ ପ୍ରାଥମିକ ଶିକ୍ଷା, ଅନୁପୂରକ ପୁଷ୍ଟି କାର୍ଯ୍ୟକ୍ରମ, ଟୀକାଦାନ, ଛଅବର୍ଷରୁ କମ୍ ବୟସର ଶିଶୁ, ଗର୍ଭଧାରଣ କରିଥିବା ଓ ସ୍ତନ୍ୟପ୍ରଦାନକାରୀ ମହିଳାମାନଙ୍କୁ ସ୍ୱାସ୍ଥ୍ୟରକ୍ଷାର ସୁବିଧା ପ୍ରଦାନ କରାଯାଉଅଛି । SNP ମାଧ୍ୟମରେ ୨୩ଲକ୍ଷ ହିତାଧିକାରୀ ଉପକୃତ ହେଉଥିବାସ୍ଥଳେ CARE FEEDING ମାଧ୍ୟମରେ ୧୧.୬୭ ଲକ୍ଷ ହିତାଧିକାରୀ ଉପକୃତ ହେଉଅଛନ୍ତି । ICDS କାର୍ଯ୍ୟକ୍ରମରେ ୨୬୭ଟି ବ୍ଲକ ଓ ୧୨ଗୋଟି ସ୍ୱାୟତ୍ତଶାସନ ସଂସ୍ଥା ଉପକୃତ ହେଉଛନ୍ତି ଏବଂ ଅବଶିଷ୍ଟ ୪୭ଗୋଟି ବ୍ଲକକୁ ୧୯୯୯-୨୦୦୦ ବର୍ଷରେ ଅନ୍ତର୍ଭୁକ୍ତ କରିବାର ଯୋଜନା ଅଛି ।

ରାଜ୍ୟ ସରକାର ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କ ସହାୟତାରେ ୮୬ ଗୋଟି ବାଳାଶ୍ରମ ପରିଚାଳନା କରୁଅଛନ୍ତି । ଏଥିରେ ପ୍ରତି ଅନ୍ତେବାସୀଙ୍କ ପାଇଁ ମାସିକ ୩୦୦ ଟଙ୍କା ସରକାରୀ ସାହାଯ୍ୟ ପ୍ରଦାନ କରାଯାଉଅଛି ।୧୯୯୮-୯୯ ବର୍ଷରେ ୫୭୦୩ ଜଣ ଶିଶୁ ଉକ୍ତ ପରିକଳ୍ପନା ମାଧ୍ୟମରେ ଉପକୃତ ହୋଇଅଛନ୍ତି ।

ପ୍ରାଥମିକ ବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କୁ ଅତିରିକ୍ତ କ୍ୟାଲୋରୀ ଯୋଗାଇ ଦେବା ଏବଂ ଅଧାରୁ ପାଠଛାଡ଼ି ଚାଲିଯାଉଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା ହ୍ରାସ କରିବା ପାଇଁ ୪୦୬୯୭ଟି ସ୍କୁଲରେ ୪୫,୦୩,୦୪୫ ଜଣ ଛାତ୍ରଛାତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ପ୍ରଦାନ କରାଯାଉଅଛି । ଏଥିପାଇଁ ଭାରତ ସରକାର ବିନାମୂଲ୍ୟରେ ଜଣପ୍ରତି ୧୦୦ଗ୍ରାମ ଚାଉଳ ଯୋଗାଇ ଦେଉଛନ୍ତି । ଅନ୍ୟାନ୍ୟ ଖର୍ଚ୍ଚ ଯଥା ଡାଲି, ତେଲ, ଜାଳେଣି, ଆସବାବପତ୍ର, ରୋଷେଇଆ ଓ ସହଯୋଗୀ ଖର୍ଚ୍ଚ ରାଜ୍ୟସରକାର ବହନ କରୁଅଛନ୍ତି । ୧୯୯୮-୯୯ ବର୍ଷରେ ଏଥିପାଇଁ ୪୫ କୋଟି ଟଙ୍କା ବ୍ୟୟବରାଦ କରାଯାଇଅଛି ।

## ମହିଳା କଲ୍ୟାଣ କାର୍ଯ୍ୟକ୍ରମ

ମହିଳାମାନଙ୍କୁ ଅର୍ଥନୈତିକ ଓ ରାଜନୈତିକ କ୍ଷମତା ପ୍ରଦାନ କରି ସେମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା ପାଇଁ ଏହି ବିଭାଗ ଦ୍ୱାରା ଅନେକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଅଛି । ମହିଳାମାନଙ୍କୁ ଆର୍ଥିକ ସ୍ୱାବଲମ୍ବୀ କରିବା ତଥା ବିଭିନ୍ନ ମହିଳା ସେବା ସମବାୟ ସମିତିକୁ ଆର୍ଥିକ ସହାୟତା ଓ ପ୍ରଶିକ୍ଷଣ ଯୋଗାଇ ଦେବା ପାଇଁ ମହିଳା ବିକାଶ ନିଗମ ପ୍ରତିଷ୍ଠା କରାଯାଇଅଛି । ରାଷ୍ଟ୍ରୀୟ ମହିଳା କୋଷରୁ ଋଣ ଆଣିବାରେ ନିଗମ ଏକ ସହଯୋଗୀ ସଂସ୍ଥାରୂପେ କାର୍ଯ୍ୟ କରିଥାଏ । ରାଜ୍ୟ ମହିଳା ଆୟୋଗ ମହିଳାମାନଙ୍କ ମଧ୍ୟରେ ରାଜନୈତିକ ତଥା ଆଇନଗତ ସଚେତନତା ସୃଷ୍ଟି କରିବା ପାଇଁ ନାନାଦି ପଦକ୍ଷେପ ନେଇଥାଏ । ମହିଳା ଆୟୋଗ ବିଭିନ୍ନ ସ୍ଥାନରେ ଅସ୍ଥାୟୀ ବିଚାରାଳୟ ପ୍ରତିଷ୍ଠା କରି ପାରିବାରିକ ବିବାଦର ସମାଧାନ କରିଥାଏ । ନିର୍ଯ୍ୟାତିତ ମହିଳାମାନଙ୍କୁ ତୁରନ୍ତ ନ୍ୟାୟ ପ୍ରଦାନ କରିବାରେ ଆୟୋଗ ହସ୍ତକ୍ଷେପ କରିଥାଏ ।

## ବିକଳାଙ୍ଗ ଥଇଥାନ କାର୍ଯ୍ୟକ୍ରମ

ବିକଳାଙ୍ଗମାନଙ୍କୁ ଉପଯୁକ୍ତ ଶିକ୍ଷାପ୍ରଦାନ କରିବା ପାଇଁ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କ ସହାୟତାରେ ୫୦ଗୋଟି ସ୍ୱତନ୍ତ୍ର ବିଦ୍ୟାଳୟ ପରିଚାଳନା କରୁଅଛନ୍ତି । ଏଥିପାଇଁ ଏହି ବିଭାଗ ଆର୍ଥିକ ସହାୟତା ପ୍ରଦାନ କରୁଅଛନ୍ତି । ଶିକ୍ଷକ ଓ ଅଣଶିକ୍ଷକମାନଙ୍କ ଦରମା ବ୍ୟତିରେକେ ଅନୁଦାନ ଆକାରରେ ଜଣେ ଛାତ୍ରପ୍ରତି ୩୦୦ଟଙ୍କା ଏହି ବିଭାଗ ମଞ୍ଜୁର କରିଥାଏ । ଏହା ବ୍ୟତିରେକେ ଭାରତ ସରକାରଙ୍କ ଆର୍ଥିକ ସହାୟତାରେ ୧୨ଗୋଟି ସ୍ୱତନ୍ତ୍ର ବିଦ୍ୟାଳୟ ଏବଂ ରାଜ୍ୟ ଶିକ୍ଷାବିଭାଗ ଦ୍ୱାରା ୪ଗୋଟି ସ୍ୱତନ୍ତ୍ର ବିଦ୍ୟାଳୟ କାର୍ଯ୍ୟ କରୁଅଛି ।

ପ୍ରଥମରୁ ବିଶ୍ୱବିଦ୍ୟାଳୟସ୍ତର ପର୍ଯ୍ୟନ୍ତ ଶାରୀରିକ ବିକଳାଙ୍ଗ ଛାତ୍ରଛାତ୍ରୀମାନଙ୍କୁ ଏହି ବିଭାଗ ଛାତ୍ର ବୃତ୍ତି ପ୍ରଦାନ କରିଥାଏ ।

ବିକଳାଙ୍ଗମାନଙ୍କୁ ଧନ୍ଦାମୂଳକ ପ୍ରଶିକ୍ଷଣ ପ୍ରଦାନ ପାଇଁ ୪ଗୋଟି ଧନ୍ଦାମୂଳକ ପ୍ରଶିକ୍ଷଣ କେନ୍ଦ୍ର ଏହି ବିଭାଗ ଅନୁଦାନରେ ପରିଚାଳିତ ହେଉଅଛି । ଜାତୀୟ ବିକଳାଙ୍ଗ ଅର୍ଥବିକାଶ ନିଗମରୁ ବିକଳାଙ୍ଗମାନଙ୍କ ପାଇଁ ଆତ୍ମନିଯୁକ୍ତି ଯୋଜନାରେ ସହାୟତା ପାଇବା ପାଇଁ ମହିଳା ବିକାଶ ସମବାୟ ନିଗମକୁ ସଂଯୋଜକ ସଂସ୍ଥାରୂପେ ସ୍ଥିର କରାଯାଇଅଛି । ବିକଳାଙ୍ଗମାନଙ୍କ ଦୁର୍ଦ୍ଦଶାକୁ ଲାଘବ କରିବା ପାଇଁ ସରକାର ଜଣପ୍ରତି ୧୦୦ ଟଙ୍କା ଲେଖାଏଁ ଭତ୍ତା ପ୍ରଦାନ କରୁଅଛନ୍ତି ।

## ସାମାଜିକ ନିରାପତ୍ତା କାର୍ଯ୍ୟାବଳୀ

ରାଜ୍ୟ ସରକାର ୬୫ବର୍ଷରୁ ଉର୍ଦ୍ଧ୍ୱ ବୃଦ୍ଧ, ଅସହାୟ, ନିରାଶ୍ରୟ, ୬୦ବର୍ଷରୁ ଉର୍ଦ୍ଧ୍ୱ ଭୂମିହୀନ, କ୍ଷୁଦ୍ର ଓ ନାମମାତ୍ର ଚାଷୀ, ଯେକୌଣସି ବୟସର ବିଧବାମାନଙ୍କୁ ସରକାର ମାସିକ ୧୦୦ ଟଙ୍କା

ଲେଖାଏଁ ଭତ୍ତା ପ୍ରଦାନ କରୁଅଛନ୍ତି । ଏଥିରେ ୫,୩୦,୦୦୦ ହିତାଧିକାରୀ ଉପକୃତ ହେଉଅଛନ୍ତି । ଏତଦ୍ ବ୍ୟତୀତ NOAP ମାଧ୍ୟମରେ ୩,୩୩,୪୦୦ ହିତାଧିକାରୀ ଉପକୃତ ହେଉଅଛନ୍ତି । NOAP ହିତାଧିକାରୀମାନଙ୍କୁ ଦିଆଯାଉଥିବା ଭତ୍ତାର ଜଣପ୍ରତି ୭୫ଟଙ୍କା ଭାରତ ସରକାର ଦେଉଥିବା ସ୍ଥଳେ ୨୫ଟଙ୍କା ରାଜ୍ୟସରକାର ବହନ କରୁଅଛନ୍ତି । ରାଜ୍ୟ ସରକାରଙ୍କ ଅନୁରୋଧକ୍ରମେ କେନ୍ଦ୍ର ସରକାର କେବଳ ୮ଗୋଟି KBK ଜିଲ୍ଲାର ୫୦ ହଜାର ହିତାଧିକାରୀଙ୍କୁ ୧୯୯୮ ଜୁନ୍ ଠାରୁ ନୂତନଭାବେ NOAP ମାଧ୍ୟମରେ ଋଣ ଅର୍ଥ ମଞ୍ଜୁର କରିଛନ୍ତି ।

ଜାତୀୟ ପରିବାର ଉପକୃତ ଯୋଜନା ମାଧ୍ୟମରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରର ମୁଖ୍ୟ ରୋଜଗାରକ୍ଷମ ବ୍ୟକ୍ତିର ମୃତ୍ୟୁ ହେଲେ ତାଙ୍କୁ ୧୦ ହଜାର ଟଙ୍କାର ସାହାଯ୍ୟ ପ୍ରଦାନ କରାହେଉଅଛି ।

ସେହିପରି ଜାତୀୟ ପ୍ରସୂତି ଉପକୃତ ଯୋଜନା ମାଧ୍ୟମରେ ଦାରିଦ୍ର୍ୟ ସୀମା ରେଖାତଳେ ଥିବା ଜଣେ ମହିଳା ଦୁଇଗୋଟି ପିଲା ହେବା ପର୍ଯ୍ୟନ୍ତ ଗର୍ଭଧାରଣ ସମୟରେ ୫୦୦ଟଙ୍କା ଲେଖାଏଁ ସହାୟତା ପାଇପାରିବେ ।

## ଜରୁରୀକାଳୀନ ଖାଦ୍ୟ କାର୍ଯ୍ୟକ୍ରମ

KBK ଜିଲ୍ଲାରେ ଗରିବ ବୃଦ୍ଧ ଅସହାୟମାନଙ୍କୁ ଅନାହାରରେ ନରଖିବାକୁ ସରକାର ବଦ୍ଧପରିକର । ୬ଗୋଟି (KBK) ଜିଲ୍ଲାରେ ପ୍ରତିଦିନ ୭୪,୫୪୫ ଜଣ ଅସହାୟ ବୃଦ୍ଧଙ୍କୁ ରନ୍ଧା ଖାଦ୍ୟ ଯୋଗାଇ ଦିଆଯାଉଅଛି । ଏଥିରେ ଜଣପ୍ରତି ଦିନକୁ ୨ଟଙ୍କା ୪୧ ପଇସା ବ୍ୟୟ ହେଉଅଛି ।

❑❑❑

# ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର କାର୍ଯ୍ୟାବଳୀ

କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜର ହୃଦରୋଗ ବିଭାଗରେ ହୃଦରୋଗୀମାନଙ୍କର ଚିକିତ୍ସା ପାଇଁ ୧୯୯୮ ମସିହା ମଇ ୮ ତାରିଖରେ କ୍ୟାଥେରାଇଜେସନ ଲାବୋରୋଟୋରୀ ମେସିନ ସ୍ଥାପନ କରାଯାଇଅଛି ।

ସର୍ବ ସାଧାରଣଙ୍କୁ ଉତ୍ତମ ସ୍ୱାସ୍ଥ୍ୟ ସେବା ଯୋଗାଇଦେବା ପାଇଁ ରାଜ୍ୟର ୩ଗୋଟି ଡାକ୍ତରୀ ମହାବିଦ୍ୟାଳୟ ଅଧ୍ୟାପକ ଓ ଏଥିସହିତ ସଂଯୁକ୍ତ ହାସପାତାଳର ଡାକ୍ତର, ସର୍ଦ୍ଦାର ବଲ୍ଲଭ ଭାଇପଟେଲ ସ୍ନାତକୋତ୍ତର ଶିଶୁରୋଗ ପ୍ରତିଷ୍ଠାନ, କଟକର ଡାକ୍ତର ଏବଂ AHRCCର ଡାକ୍ତରମାନଙ୍କ ଘରୋଇ ରୋଗୀ ଚିକିତ୍ସା ନିଷିଦ୍ଧ କରାଯାଇଅଛି ।

୧୯୯୮ ମସିହା ଡିସେମ୍ବର ମାସ ୬ ତାରିଖରେ ଅନୁଷ୍ଠିତ ପଲ୍ସ ପୋଲିଓ ଟୀକାଦାନ କାର୍ଯ୍ୟକ୍ରମରେ ୫ବର୍ଷରୁ କମ୍ ବୟସର ଶତକଡ଼ା ୯୯.୮ ଭାଗ ଶିଶୁ ଉପକୃତ ହୋଇଅଛନ୍ତି ।

୧୯୯୮ ମସିହାରେ ଅଣଆଦିବାସୀ ଇଲାକାରେ ୫୨ଗୋଟି ନୂତନ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଏବଂ ଆଦିବାସୀ ଅଧ୍ୟୁଷିତ ଇଲାକାରେ ୧୨ଗୋଟି ନୂତନ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା କରାଯାଇଅଛି ।

ସରକାର ପରୀକ୍ଷାମୂଳକ ଭାବରେ ଗରିବ ରୋଗୀମାନଙ୍କୁ ସାହାଯ୍ୟ କରିବା ପାଇଁ ଏକ ନୂତନ ପରିଯୋଜନା କାର୍ଯ୍ୟକାରୀ କରୁଅଛନ୍ତି । ଉକ୍ତ ପରିଯୋଜନା ଅନୁଯାୟୀ ଆମାଶୟରେ ୫ବର୍ଷରୁ କମ୍ ବୟସର ଶିଶୁ ୧.୯.୯୮ ଠାରୁ ୩୦.୯.୯୮ ମଧ୍ୟରେ ରାଜ୍ୟର ୩୦ଗୋଟି DHH ଡାକ୍ତରଖାନା ଭୁବନେଶ୍ୱର ରାଜଧାନୀ ହାସପାତାଳ, ରାଉରକେଲାର ସରକାରୀ ହାସପାତାଳ, ରାଜ୍ୟର ୩ଗୋଟି ଚିକିତ୍ସା ମହାବିଦ୍ୟାଳୟ, କଟକର SVP ଶିଶୁଭବନରେ ଚିକିତ୍ସିତ ହୋଇଥିଲେ । ସେମାନଙ୍କର ଚିକିତ୍ସା ଖର୍ଚ୍ଚର ୫୦ଭାଗ ସଂଯୁକ୍ତ ହାସପାତାଳର ବ୍ୟାବହାରିକ ଖର୍ଚ୍ଚରୁ ଭରଣା କରାଯିବ ।

ନିକଟ ଅତୀତରେ ଦିଲ୍ଲୀ ଓ ଏହାର ଆଖପାଖ ସୋରିଷ ତେଲ ସହିତ ଅଗରାତେଲର ଅପମିଶ୍ରଣ ଖାଇ କେତେଜଣ ଡ୍ରପସି ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିଲେ । ରାଜ୍ୟର ଏପରି ପରିସ୍ଥିତି ସୃଷ୍ଟି ହେବାକୁ ନଦେବା ଏବଂ ଡ୍ରପସି ରୋଗକୁ ନିରାକରଣ କରିବା ପାଇଁ ସରକାର ଖୋଲା ତଥା ଉତ୍ପାଦକ ଚିହ୍ନ ବିହୀନ ସୋରିଷତେଲର ବିକ୍ରିକୁ ୨୯.୮.୯୮ ଠାରୁ ନିଷିଦ୍ଧ କରିଥିଲେ । ସଂଗୃହୀତ ୩୯୮ଟି ସୋରିଷତେଲ ନମୁନା ସ୍ୱାସ୍ଥ୍ୟ ବିଭାଗ ପରୀକ୍ଷାଗାରରେ ପରୀକ୍ଷା କରାଯାଇ ତିନିଗୋଟି ନମୁନାରେ ଅଗରାତେଲ ମିଶିଥିବାର ଜଣାଗଲା । ରାଜ୍ୟକୁ କମ୍ ଖାଇବା ତେଲ ଆସୁଥିବାରୁ ଖାଇବା ତେଲ ବିକ୍ରି ଉପରେ ନିଷେଧ ପ୍ରକ୍ରିୟା ଜାରି ରହିଲେ ଏହା ଦରବୃଦ୍ଧିରେ ସହାୟକ ହେବବୋଲି ଖାଦ୍ୟଯୋଗାଣ ଓ ଖାଉଟିକଲ୍ୟାଣ ବିଭାଗ ରାଜ୍ୟସରକାରଙ୍କୁ ଅବଗତି କରାଇଥିଲେ । ଏହାକୁ ଆଖି ଆଗରେ ରଖି ରାଜ୍ୟସରକାର ୨୯.୯.୯୮ରେ ଉକ୍ତ ନିଷେଧାଦେଶ ପ୍ରତ୍ୟାହାର କରିନେଇଛନ୍ତି ।

# ଉଚ୍ଚଶିକ୍ଷା ପ୍ରସାର କାର୍ଯ୍ୟକ୍ରମ

ତତ୍କାଳୀନ ଶିକ୍ଷା ଓ ଯୁବକଲ୍ୟାଣ ବିଭାଗକୁ ୧୯୯୨ ମସିହାରେ ଦୁଇଭାଗରେ ବିଭକ୍ତ କରିବା ଫଳରେ ଉଚ୍ଚଶିକ୍ଷା ବିଭାଗର ସୃଷ୍ଟି ହୋଇଥିଲା ।

ବହୁ ଛାତ୍ରଛାତ୍ରୀ ଯେପରି ଉଚ୍ଚ ଶିକ୍ଷା ପାଇପାରିବେ ତାକୁ ଆଖି ଆଗରେ ରଖି ରାଜ୍ୟସରକାର ମହାବିଦ୍ୟାଳୟ ବିହୀନ ବ୍ଲକ ଗୁଡ଼ିକରେ କିମ୍ବା ଯେଉଁ ଠାରେ ଉଚ୍ଚ ଶିକ୍ଷାର ପ୍ରସାର ନିତାନ୍ତ ଆବଶ୍ୟକ ସେ ସବୁ ସ୍ଥାନରେ ମହାବିଦ୍ୟାଳୟ ଖୋଲିବା ପାଇଁ ସ୍ଥିର କରିଛନ୍ତି ।

ବିଜ୍ଞାନ ଶିକ୍ଷା ପ୍ରତି ଆକୃଷ୍ଟ ହେବା ପାଇଁ ରାଜ୍ୟ ସରକାର ମାଲକାନଗିରିଠାରେ ଯୁକ୍ତ ଦୁଇ ବିଜ୍ଞାନ ମହାବିଦ୍ୟାଳୟ ଖୋଲିଛନ୍ତି ଏବଂ ସେହିପରି ଆଉ ୫ଟି ମହାବିଦ୍ୟାଳୟ ନୂଆପଡ଼ା ଜିଲ୍ଲାର ନୂଆପଡ଼ା, କେନ୍ଦ୍ରାପଡ଼ା ଜିଲ୍ଲାର କେନ୍ଦ୍ରାପଡ଼ା, ସୁନ୍ଦରଗଡ଼ ଜିଲ୍ଲାର ହେମଗିର, ମୟୂରଭଞ୍ଜ ଜିଲ୍ଲାର ତିରିଙ୍ଗ ଏବଂ ଗଜପତି ଜିଲ୍ଲାର ଗାରବନ୍ଧାଠାରେ ଖୋଲିବା ପାଇଁ ସ୍ଥିର କରିଛନ୍ତି । ବହୁ ସଂଖ୍ୟାରେ ବାଳିକାମାନଙ୍କୁ ଆକୃଷ୍ଟ କରିବା ପାଇଁ ଢେଙ୍କାନାଳ ଏବଂ ସୁନ୍ଦରଗଡ଼ ମହିଳା ମହାବିଦ୍ୟାଳୟରେ ଯୁକ୍ତ ଦୁଇ ପର୍ଯ୍ୟନ୍ତ ବିଜ୍ଞାନ ଶିକ୍ଷାର ବ୍ୟବସ୍ଥା କରାଯାଇଛି ।

ଦୀର୍ଘକାଳ ଧରି ରାଜ୍ୟର ଉଚ୍ଚ ଶିକ୍ଷାର ପ୍ରସାର ଓ ଉନ୍ନତି କଲେ ରେଭେନ୍ସା ମହାବିଦ୍ୟାଳୟର ଗୌରବୋଜ୍ଜ୍ୱଳ ଭୂମିକାକୁ ଦୃଷ୍ଟିରେ ରଖି ଏହାକୁ ଏକ ବିବେଚିତ ବିଶ୍ୱବିଦ୍ୟାଳୟ ରୂପେ ଘୋଷଣା କରିବାକୁ ସରକାର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗକୁ ସୁପାରିଶ କରାଯାଇଛି । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ୯ଗୋଟି, ସମ୍ବଲପୁର ବିଶ୍ୱବିଦ୍ୟାଳୟର ୨ଗୋଟି ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଗୋଟିଏ ସର୍ବମୋଟ ୧୨ଗୋଟି ମହାବିଦ୍ୟାଳୟକୁ ସ୍ୱୟଂଶାସିତ ମର୍ଯ୍ୟାଦା ଦେବାକୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗକୁ ସୁପାରିଶ କରାଯାଇଛି ।

ଉତ୍କଳ ବିଶ୍ୱବିଦ୍ୟାଳୟ ପରିଚାଳନା କ୍ଷେତ୍ରରେ ସୃଷ୍ଟି ହୋଇଥିବା ସମସ୍ୟାବଳୀ ପ୍ରତି ଦୃଷ୍ଟି ରଖି ଓ ଶିକ୍ଷାର ଗୁଣାତ୍ମକ ମାନର ଉନ୍ନତି ସାଧନ ପାଇଁ ଉତ୍ତର ଓଡ଼ିଶାରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇ ଏହାର କାର୍ଯ୍ୟ ଅସ୍ଥାୟୀ ଭାବେ ଭୁବନେଶ୍ୱରରେ ସଂପାଦିତ ହେଉଛି । ଏତଦ୍‌ବ୍ୟତୀତ ରାଜ୍ୟରେ ଏକ ମୁକ୍ତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ନିମନ୍ତେ ନୀତିଗତ ଭାବରେ ନିଷ୍ପତ୍ତି ନିଆଯାଇଛି ।

କମ୍ପ୍ୟୁଟର ଶିକ୍ଷା କ୍ଷେତ୍ରରେ ଛାତ୍ରଛାତ୍ରୀମାନଙ୍କର ଆକାଂକ୍ଷା ପୂରଣ କରିବା ନିମନ୍ତେ ସ୍ୱଅର୍ଥ ବିନିଯୋଗ ମାଧ୍ୟମରେ ୭ଗୋଟି ସ୍ୱୟଂଶାସିତ ମହାବିଦ୍ୟାଳୟ ଏବଂ କଟକସ୍ଥିତ ହିସାବ ପରିଚାଳନା ମହାବିଦ୍ୟାଳୟରେ ଏମ୍.ସି.ଏ ପାଠ୍ୟକ୍ରମ ପ୍ରଚଳନ କରାଯାଇଛି । ୬ଗୋଟି ମହାବିଦ୍ୟାଳୟରେ କମ୍ପ୍ୟୁଟର ବିଜ୍ଞାନ (ଅନର୍ସ) ପାଠ୍ୟକ୍ରମ ପ୍ରଚଳନ କରାଯାଇଛି ।

ସଂପ୍ରତି ପରୀକ୍ଷା ପଦ୍ଧତିରେ ସଂସ୍କାର ଆଣିବା ଏବଂ ପରୀକ୍ଷାରେ ହେଉଥିବା ଅସାଧୁ ଉପାୟକୁ ବନ୍ଦ କରିବା ପାଇଁ ୧୯୯୮ ମସିହାରୁ ସପ୍ଲିମେଣ୍ଟାରୀ ପରୀକ୍ଷା ଉଠାଇ ଦିଆଯାଇଛି ଏବଂ ଏଣିକି ଉତ୍ତର କାଗଜରେ ''ସଂକେତ ପ୍ରଥା'' ପ୍ରଚଳନ କରାଯାଉଛି । ଏ ସଂପର୍କରେ ମଧ୍ୟ ଏକ କମିଟି ଜଷ୍ଟିସ୍ ଗୋପାଳ ସ୍ୱାମୀ, ଅବସରପ୍ରାପ୍ତ ବିଚାରପତିଙ୍କ ଅଧ୍ୟକ୍ଷତାରେ ଗଠନ କରାଯାଇଛି । ଘରୋଇ ଶିକ୍ଷାଦାନକୁ ମଧ୍ୟ ସରକାର ନିଷିଦ୍ଧ ଘୋଷଣା କରିଛନ୍ତି ।

ଜାନୁଆରୀ ପହିଲା ୧୯୮୫ରୁ ୧୯୯୨ ମସିହା ମାର୍ଚ୍ଚ ୩୧ ତାରିଖ ମଧ୍ୟରେ ଯେଉଁ ଅଧ୍ୟାପକମାନେ ସାହାଯ୍ୟପ୍ରାପ୍ତ ମହାବିଦ୍ୟାଳୟଗୁଡ଼ିକର ସ୍ୱୀକୃତିପ୍ରାପ୍ତ ପଦବୀରେ କାର୍ଯ୍ୟରତ ଥିଲେ ସେହିମାନଙ୍କୁ ସରକାର ବିଧିମାନ୍ୟତା ପ୍ରଦାନ କରିଛନ୍ତି । ସାହାଯ୍ୟପ୍ରାପ୍ତ କଲେଜର ୧ହଜାର ଅଧ୍ୟାପକ ବିଧିମାନ୍ୟତା ପାଇଛନ୍ତି ।

# ରାଜ୍ୟରେ ରେଳପଥର ବିକାଶ

## ତାଳଚେର-ସମ୍ବଲପୁର ରେଳପଥ-୧୭୪ କି.ମି.

ଏହି ପ୍ରକଳ୍ପଟିର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ, ୧୫.୮.୧୯୯୮ ମସିହାଠାରୁ ତପସ୍ୱିନୀ ଏକ୍ସପ୍ରେସ୍ ଟ୍ରେନ୍ ଭୁବନେଶ୍ୱର ଓ ରାଉରକେଲା ମଧ୍ୟରେ ଏବଂ ପାସେଞ୍ଜର ଟ୍ରେନ୍ ତାଳଚେର ଓ ସମ୍ବଲପୁର ମଧ୍ୟରେ ଚଳାଚଳ କରୁଛି ।-

## କୋରାପୁଟ- ରାୟଗଡ଼ା ରେଳପଥ– ୧୬୪ କି.ମି.

୧୯୯୫ ମସିହା ଡିସେମ୍ବର ମାସରେ ଏହି ରେଳପଥଟି ଭାରତର ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଯାଇଛି । ଖୁବ୍‌ଶୀଘ୍ର ଭୁବନେଶ୍ୱର ଓ କୋରାପୁଟ ମଧ୍ୟରେ ପ୍ରଥମ ଥର ଏକ ଏକ୍ସପ୍ରେସ ଟ୍ରେନ୍ ଚଳପ୍ରଚଳ କରିବ ।

## ଦଇତାରୀ-ବାଂଶପାଣୀ ରେଳପଥ– ୧୫୫ କି.ମି.

ଏହି ପ୍ରକଳ୍ପର ନର୍ମାଣ କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଛି । ଏହି ପ୍ରକଳ୍ପ ନିର୍ମାଣ କରିବା ପାଇଁ ଦରକାର ପଡୁଥିବା ବେସରକାରୀ ଜମି ରେଳ ବିଭାଗକୁ ହସ୍ତାନ୍ତର କରାଯାଇଛି । ୨୦୦୩ ମସିହା ପୂର୍ବା ଏହି ପ୍ରକଳ୍ପର କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଛି ।

## ହରିଦାଶପୁର- ପାରାଦ୍ୱୀପ ରେଳପଥ - ୭୮ କି.ମି.

ଏହି ପ୍ରକଳ୍ପ ନିର୍ମାଣ ପାଇଁ ୧୯୯୭ ମସିହାରେ ମଞ୍ଜୁରୀ ପାଇସାରିଛି । ୧୯୯୮-୯୯ ବଜେଟରେ ୨ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି । ଭୂମି ଅଧିଗ୍ରହଣ କାର୍ଯ୍ୟ ଆଗେଇ ଚାଲିଛି ।

## ପାରାଦ୍ୱୀପ ରେଳ ସଂଯୋଗର ଦୋହରୀକରଣ - ୮୩ କି.ମି.

୮୩ କିଲୋମିଟର କଟକ- ପାରାଦ୍ୱୀପ ଏକ ପଥବିଶିଷ୍ଟ ରେଳପଥ ଦୋହରା କରିବା ପାଇଁ ୧୯୯୫-୯୬ ମସିହାରେ ମଞ୍ଜୁରୀ ପାଇସାରିଛି । ରଘୁନାଥପୁରରୁ ରାହାମା ପର୍ଯ୍ୟନ୍ତ ଭୂମି ଅଧିଗ୍ରହଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି । ଅବଶିଷ୍ଟ ଅଂଶର ଭୂମି ଅଧିଗ୍ରହଣ କାର୍ଯ୍ୟ ଆଗେଇ ଚାଲିଛି ।

## ପୂର୍ବ ଉପକୂଳ ରେଳପଥ

ରେଳବାଇର ପୂର୍ବ ଉପକୂଳ ଜୋନ୍ ନାମରେ ଏକ ନୂତନ ରେଳବାଇ ଜୋନ୍ ପ୍ରତିଷ୍ଠା ହେବା ସଂଗେ ସଂଗେ ଏହାର ସଦର ମହକୁମା ୧୯୯୬ ଅଗଷ୍ଟ ମାସରେ ଭାରତର ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଯାଇଛି । ଦକ୍ଷିଣ-ପୂର୍ବ ରେଳବାଇର ୩ଟି ମଣ୍ଡଳ ଯଥା- ୱାଲଟିୟର, ଖୋର୍ଦ୍ଧାରୋଡ଼ ଓ ସମ୍ବଲପୁର ଏହାର ଅନ୍ତର୍ଭୁକ୍ତ ହେବ । ଏହାଫଳରେ ଗୋଟିଏ ନୂତନ ଜୋନ୍ ସୃଷ୍ଟି ହୋଇପାରିବ । ଏହି ଜୋନ୍‌ର ସଦର ମହକୁମା ଭୁବନେଶ୍ୱରରେ ଖୋଲାଯାଇ ଓ.ଏସ୍.ଡି. ଏବଂ ଅନ୍ୟ ବିଭାଗୀୟ ମୁଖ୍ୟମାନଙ୍କୁ ନିଯୁକ୍ତି ଦିଆଯାଇଛି । ଆଞ୍ଚଳିକ ସଦର ମହକୁମା ପ୍ରତିଷ୍ଠା କରିବା ପାଇଁ ରାଜ୍ୟ ସରକାର ୪୭ ଏକର ଜମି ବିନା ମୂଲ୍ୟରେ ଯୋଗାଇ ଦେଇଛନ୍ତି ।

## ଇଷ୍ଟକୋଷ୍ଟ ରେଳପଥର ବିଦ୍ୟୁତକରଣ

ପାରାଦ୍ୱୀପ-କଟକ-ତାଳଚେର ସମେତ ଖଡ଼ଗପୁରଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ରେଳପଥ ବିଦ୍ୟୁତକରଣ ପାଇଁ ୧୯୯୫-୯୬ରେ ମଞ୍ଜୁରୀ ପାଇସାରିଛି । ଭୁବନେଶ୍ୱର ଠାରୁ ବିଶାଖାପାଟଣା ପର୍ଯ୍ୟନ୍ତ ବିଦ୍ୟୁତକରଣ ପାଇଁ ୧୯୯୭-୯୮ ବଜେଟରେ ବ୍ୟବସ୍ଥା କରାଯାଇଥିଲା । ୧୯୯୮-୯୯ରେ ଯଥାକ୍ରମେ ୪୫.୫୦ ଓ ୫୦କୋଟି ଟଙ୍କାର ମଧ ବରାଦ କରାଯାଇଛି । ଖଡ଼ଗପୁରଠାରୁ କଟକ-ୱାଟିୟର ଶେଷ ପର୍ଯ୍ୟନ୍ତ ବିଦ୍ୟୁତକରଣ କାର୍ଯ୍ୟ ଆରମ୍ଭ କରାଯାଇଛି ।

□□□

# ବାଣିଜ୍ୟ ଓ ପରିବହନ ବିଭାଗର ପ୍ରଗତି

ଦେଶରେ ପ୍ରଥମ ଥର ପାଇଁ ବେସରକାରୀ ସ୍ତରରେ ଧାମରା ଓ ଗୋପାଳପୁର କ୍ଷୁଦ୍ର ବନ୍ଦରର ଉନ୍ନୟନ ଓ ବିକାଶ କାର୍ଯ୍ୟ ବାଣିଜ୍ୟ ବିଭାଗର ଏକ ଉଲ୍ଲେଖନୀୟ ସଫଳତା । ଉପକୂଳବର୍ତ୍ତୀ ଓଡ଼ିଶାରେ ସାମୁଦ୍ରିକ ନୌବାଣିଜ୍ୟ କ୍ଷେତ୍ରରେ ଏହା ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବ ।

## ମୁଦ୍ରଣ, ଲିଖନ ପ୍ରକାଶନ ନିର୍ଦ୍ଦେଶାଳୟ

ଓଡ଼ିଶା ସରକାରୀ ମୁଦ୍ରଣାଳୟ ଗୋଟିଏ ସେବାସଂସ୍ଥା । ଏଠାରୁ ସରକାରୀ କାର୍ଯ୍ୟାଳୟଗୁଡ଼ିକୁ ଲିଖନ ସାମଗ୍ରୀ ଯୋଗାଇ ଦିଆଯିବା ସଂଗେ ସଂଗେ ସରକାରୀ ନଥିପତ୍ର ଯଥା— ବାର୍ଷିକ ବଜେଟ୍, ନିର୍ବାଚନ ସମ୍ବନ୍ଧୀୟ କାଗଜପତ୍ର, ଗେଜେଟ୍ ବିଜ୍ଞପ୍ତି ଓ ସରକାରୀ ଅର୍ଡ଼ିନାନ୍ସ ସମ୍ବନ୍ଧୀୟ ବିଜ୍ଞପ୍ତି ତଥା ଅନ୍ୟାନ୍ୟ ବିଜ୍ଞପ୍ତି ପ୍ରକାଶ ପାଇଥାଏ । ଏତଦ୍ ବ୍ୟତୀତ ରାଜ୍ୟ ସରକାରଙ୍କ ଦ୍ୱାରା ଅନୁମୋଦିତ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମଗୁଡ଼ିକର ସଫଳ ରୂପାୟନ ପାଇଁ ପ୍ରଚାରପତ୍ର ଓ ବିଜ୍ଞାପନ ଇତ୍ୟାଦି ପ୍ରକାଶ କରିଥାଏ ।

## ଅନ୍ତର୍ଦ୍ଦେଶୀୟ ଜଳପଥ

ରେଳ କିମ୍ବା ସଡ଼କ ପଥ ଦ୍ୱାରା ସଂଯୁକ୍ତ ହୋଇନଥିବା ଅଗମ୍ୟ ଅଞ୍ଚଳଗୁଡ଼ିକ ପାଇଁ ଅନ୍ତର୍ଦ୍ଦେଶୀୟ ଜଳପଥ ହେଉଛି ଏକମାତ୍ର ପରିବହନ ଓ ଗମନାଗମନର ପଥ । ଚିଲିକା ହ୍ରଦ ଅଞ୍ଚଳ ଯଥା— କୃଷ୍ଣପ୍ରସାଦ ଓ ସାତପଡ଼ା ଲୋକମାନଙ୍କ ଗମନାଗମନ ପାଇଁ ଏହା ଏକମାତ୍ର ମାଧ୍ୟମ । ସେହିପରି ଚାନ୍ଦବାଲି ଓ ଅସ୍ତରଙ୍ଗ ସେକ୍ଟରର କେତେକ ଅଞ୍ଚଳରେ ସର୍ଭେ କରାଯାଇଛି ।

ଅନ୍ତର୍ଦ୍ଦେଶୀୟ ଜଳ ପରିବହନ ନିର୍ଦ୍ଦେଶାଳୟ ଦ୍ୱାରା କେତେକ ଆଇନ୍ ପ୍ରଣୟନ କରାଯାଇ, ଜଳ ପରିବହନକୁ ସୁବ୍ୟବସ୍ଥିତ କରାଯାଇଛି । ରାଜ୍ୟ ଭିତରେ ଅନ୍ତର୍ଦ୍ଦେଶୀୟ ଜଳଯାନ ଅଧିନିୟମ ପ୍ରଣୟନ କରାଯାଇଛି । ଯାତ୍ରୀବାହୀ ଲଞ୍ଚ ସେବା ପ୍ରଚଳନ, ଅନ୍ତର୍ଦ୍ଦେଶୀୟ ଜଳଯାନ ଗୁଡ଼ିକ ଚଳାଇବା ଓ ତାଲିମ୍ ପ୍ରଦାନ ଏହି ନିର୍ଦ୍ଦେଶାଳୟ ଦ୍ୱାରା କରାଯାଇଥାଏ ।

ଅନ୍ତର୍ଦ୍ଦେଶୀୟ ଜଳପଥ ଦ୍ୱାରା ଚାନ୍ଦବାଲି, ଚିଲିକା ଓ ଅସ୍ତରଙ୍ଗ ସେକ୍ଟରରେ ପ୍ରାୟ ୨୦ ଟି ଲଞ୍ଚ ଓ ୫ଟି ଦେଶୀ ବୋଟ୍ ଚଳପ୍ରଚଳ ହେଉଛି ।

## ପରିବହନ

ଜନସାଧାରଙ୍କ ଚାହିଦାକୁ ଚାହିଁ ଓଡ଼ିଶା ପରିବହନ ନିଗମ ଓ ବେସରକାରୀ ପରିବହନ ସଂସ୍ଥା ମିଳିତ ଭାବେ ଜନସାଧାରଣଙ୍କୁ ପରିବହନ ସେବା ଯୋଗାଇ ଆସୁଛନ୍ତି । ପରିବହନ ସେବାର ମାନ ଉନ୍ନତ କରିବା ପାଇଁ ପରିବହନ ସେବା ସଂସ୍ଥାରେ ବର୍ତ୍ତମାନ ଏକ ବଡ଼ଧରଣର ପୁନର୍ଗଠନ କାର୍ଯ୍ୟ ଚାଲୁରହିଛି । ବେସରକାରୀ ପରିବହନକୁ ଆଧୁନିକୀକରଣ କରିବା ପାଇଁ ପୁରୁଣା ବସଗୁଡ଼ିକୁ ବଦଳା ଯାଇ ତା ସ୍ଥାନରେ ଅତ୍ୟାଧୁନିକ ବିଳାସପୂର୍ଣ୍ଣ ଓ ଆଧୁନିକ ଯାନର ପ୍ରଚଳନ ପାଇଁ ପଦକ୍ଷେପ ନିଆଯାଇଛି । ଯାନବାହାନଗୁଡ଼ିକର ଚଳପ୍ରଚଳ ପାଇଁ ନିୟମିତଭାବେ ରୁଟଗୁଡ଼ିକ ସର୍ଭେ ଓ ସମୀକ୍ଷା କରାଯାଇ ପାସେଞ୍ଜର ଓ ରାଜ୍ୟ ପରିବହନ କର୍ତ୍ତୃପକ୍ଷ ଜିନିଷପତ୍ର ନେବା ଆଣିବା କରୁଥିବା ଯାନଗୁଡ଼ିକୁ ପରିମିଟ ପ୍ରଦାନ କରୁଛି । ପରିବହନ କ୍ଷେତ୍ରରେ ମାନର ଉନ୍ନତି ଆଣିବା ପାଇଁ ବିଭିନ୍ନ ବେସରକାରୀ ପରିବହନ ଓ ପେଶାଦାର ସଂସ୍ଥା ଯାନବାହାନ ଚଳାଚଳ କ୍ଷେତ୍ରରେ ଉପୁଜିଥିବା ବିଭିନ୍ନ ଅସୁବିଧାର ଦୂରୀକରଣ ପାଇଁ ସମୟାନୁକ୍ରମେ ପରିବହନ କର୍ତ୍ତୃପକ୍ଷଙ୍କ ସହ ପରାମର୍ଶ କରିଥାନ୍ତି ।

ପରିବହନ କ୍ଷେତ୍ର ହେଉଛି ରାଜ୍ୟସରକାରଙ୍କର ରାଜସ୍ୱର ଏକ ପ୍ରଧାନ ଉତ୍ସ । ରାଜସ୍ୱ ସଂଗ୍ରହ ପରିମାଣ ବୃଦ୍ଧି ପାଇଁ ପଦକ୍ଷେପ ମାନ ନିଆଯାଇଛି ।

# ସଫଳ କାହାଣୀ

## ସୁନ୍ଦରଗଡ଼ ଜିଲ୍ଲାର ବାଉଁଶ ତିଆରି ଜିନିଷର ଆଦର

ସୁନ୍ଦରଗଡ଼ ଜିଲ୍ଲାର ସଦର ମହକୁମା ନିକଟବର୍ତ୍ତୀ ଟାଙ୍ଗରପାଲି ବ୍ଲକ ସାତଗୋଟି ଗ୍ରାମପଞ୍ଚାୟତକୁ ନେଇ ଗଠିତ । ଏହି ବ୍ଲକରେ ଅଧିକାଂଶ ଲୋକଙ୍କର କୃଷି ହେଉଛି ପ୍ରଧାନ ଜୀବିକା । ଗ୍ରାମ୍ୟ ଶିଳ୍ପ କାରିଗରଙ୍କ ସଂଖ୍ୟା ବହୁତ କମ୍ । ବାଉଁଶରେ ବିଭିନ୍ନ ପ୍ରକାର ଜିନିଷ ତିଆରି କରି ଡମ, ତୁରୀ ଓ ଅନ୍ୟାନ୍ୟ ଆଦିବାସୀ ଜାତିର ଲୋକମାନେ ଜୀବିକା ନିର୍ବାହ କରନ୍ତି । ପ୍ରସ୍ତୁତ ଜିନିଷ ମଧ୍ୟରେ କୁଲା, ଡାଲା, ଚୋଙ୍ଗ, ବାଉଁଶିଆ, ଗେରେ, ଲୋପେଇ, ଝୁମ୍ନା, ଟାଟର ପ୍ରଧାନ । ଗାଁ ଗହଳିର ଲୋକଙ୍କ ଚାହିଦାକୁ ନେଇ ଏହି ଜିନିଷଗୁଡ଼ିକ ତିଆରି କରିଥାନ୍ତି ଏବଂ ଏଥିରେ ସେମାନଙ୍କ ଆର୍ଥିକ ଅବସ୍ଥାର ବିଶେଷ ଉନ୍ନତି ହୋଇପାରୁନଥିଲା ।

୧୯୯୨ ମସିହାରେ ଜିଲ୍ଲାଶିଳ୍ପକେନ୍ଦ୍ର, ସୁନ୍ଦରଗଡ଼ ଏହି ବ୍ଲକରେ କାରିଗର ସର୍ଭେ କରି ଦର୍ଶାଇଥିଲେ ଯେ, ବାଉଁଶର ସୌଖୀନ ପଦାର୍ଥ ତିଆରି କଲେ କାରିଗରମାନଙ୍କର ଆର୍ଥିକ ଉନ୍ନତି ହୋଇପାରିବ, କାରଣ ସୌଖୀନ ପଦାର୍ଥର ଚାହିଦା ଯଥେଷ୍ଟ ଅଛି । ତେଣୁ ବାଉଁଶ କାରିଗରମାନଙ୍କୁ ନେଇ ଏକ ଶିଳ୍ପ ସମବାୟ ସମିତି ଗଠନ ନିମନ୍ତେ ସ୍ଥିର କରାଯାଇଥିଲା । ବିଭିନ୍ନ ଶ୍ରେଣୀର ବାଉଁଶ କାରିଗରମାନେ ସମଲେଶ୍ୱରୀ ବାଉଁଶ ହସ୍ତଶିଳ୍ପ ସମବାୟ ସମିତି ତା ୧୮.୩.୯୩ରେ ଜିଲ୍ଲା ଶିଳ୍ପକେନ୍ଦ୍ରରେ ପଞ୍ଜିକରଣ କରାଇଲେ । ପ୍ରଥମେ ଏହାର ସଭ୍ୟ ସଂଖ୍ୟା ୪୮ ଥିଲା । ଏହି ସମିତି ଟାଙ୍ଗରପାଲି ବ୍ଲକର ରଙ୍ଗମୁଣ୍ଡାଠାରେ ଆଜି ପର୍ଯ୍ୟନ୍ତ କାର୍ଯ୍ୟ କରିଆସୁଛି । ଏହି ସମିତିର ସ୍ୱୀକୃତିପ୍ରାପ୍ତ ଅଂଶଧନ ୨ ଲକ୍ଷ ଟଙ୍କା । କାରିଗରମାନଙ୍କୁ ସମିତି ଜରିଆରେ ରାଜ୍ୟସରକାରଙ୍କର ବିଭିନ୍ନ ପ୍ରକାର ପ୍ରୋତ୍ସାହନ ଯୋଗାଇ ଦିଆଯାଉଛି । ଏହି ସମିତିର କାରିଗରମାନଙ୍କୁ ଟ୍ରାଇସେମ୍ ଜରିଆରେ ତାଲିମ ଦିଆଯାଇଛି । ଏତଦ୍ ବ୍ୟତୀତ କେନ୍ଦ୍ର ଉନ୍ନୟନ କମିଶନର, ହସ୍ତଶିଳ୍ପଙ୍କ ସହାୟତାରେ ତିନି ସ୍ତରରେ ୮୫ ଜଣ ସଭ୍ୟଙ୍କୁ ବାଉଁଶର ସୌଖୀନ ପଦାର୍ଥ ନିର୍ମାଣ ଉପରେ ତାଲିମ ଦିଆଯାଇଛି ।

ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଦତ୍ତ ୧୬,୦୦୦/- ଟଙ୍କାରେ ଉନ୍ନତ ଯନ୍ତ୍ରପାତି କିଣାଯାଇ ବାଉଁଶ ତିଆରି ପଦାର୍ଥର ମାନ ବୃଦ୍ଧି କରାଯାଇପାରୁଛି । ପ୍ରତ୍ୟେକ କାରିଗର ମାସିକ ହାରାହାରି ୪ ହଜାରରୁ ୫ ହଜାର ଟଙ୍କାର ଜିନିଷ ବିକ୍ରି କରି ପାରୁଛନ୍ତି । ଏହି ସଂସ୍ଥା ଜିଲ୍ଲାସ୍ତରୀୟ, ରାଜ୍ୟସ୍ତରୀୟ ଓ ରାଜ୍ୟ ବାହାରର ମେଳା ଏବଂ ପ୍ରଦର୍ଶନୀରେ ଭାଗନେଇ ଖ୍ୟାତି ଅର୍ଜନ କରିପାରିଛି । ୧୯୯୭-୯୮ରେ ଏହି ସଂସ୍ଥା ମଧ୍ୟପ୍ରଦେଶର ରାୟପୁରର ଏକ ପ୍ରଦର୍ଶନୀରେ ଅଂଶଗ୍ରହଣ କରି ଅନେକ ଜିନିଷ ବିକ୍ରୟ କରିଥିଲା । ଚଳିତ ବର୍ଷ ଆନ୍ତର୍ଜାତିକ ଭାରତ ବାଣିଜ୍ୟ ମେଳାରେ ଯୋଗଦେବା ନିମନ୍ତେ ମନୋନୀତ ହୋଇ ଯୋଗଦାନ କରିଛି ।

ବର୍ତ୍ତମାନ ଏହି ସଂସ୍ଥାରେ ୧୦୯ ଜଣ ସଭ୍ୟ ରହି କାମ କରୁଛନ୍ତି । ଏମାନେ ବାଉଁଶ ଏବଂ ତାର ମୂଳରେ ବିଭିନ୍ନ ପ୍ରକାରର ସୌଖୀନ ଜିନିଷ ତିଆରି କରୁଛନ୍ତି । ଏହି ବ୍ଲକରେ ଗ୍ରାମ୍ୟ ଶିଳ୍ପୀ ଯୋଜନାରେ ଏକ ତାଲିମ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଏହି ବାବଦକୁ ରାଜ୍ୟ ସରକାର ୨ଲକ୍ଷ ୮୪ ହଜାର ଟଙ୍କା ଜିଲ୍ଲା ଶିଳ୍ପ କେନ୍ଦ୍ରକୁ ଦେଇଛନ୍ତି । ଏହା ଜିଲ୍ଲା କୁଟୀର ଶିଳ୍ପ ଅଧିକାରୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଆସନ୍ତା ବର୍ଷଠାରୁ କାର୍ଯ୍ୟକାରୀ ହେବ ।

ଶ୍ରୀ ରତ୍ନମଣି ମାଝି
ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ, ସୁନ୍ଦରଗଡ଼

## ସରକାରୀ ସାହାଯ୍ୟ ପାଇ ସଂପନ୍ନ ଗୃହସ୍ଥ

କାଶୀନାଥ ମହାନ୍ତି ୧୯୯୦ ମସିହାରେ ଗଞ୍ଜାମ ଜିଲ୍ଲାରେ ବିପ୍ଲବ ସୃଷ୍ଟି କରିଥିବା ପ୍ରଳୟଂକରୀ ବନ୍ୟାର ଶିକାର ହୋଇ ତାଙ୍କର ଛୋଟ ବ୍ୟବସାୟ ଓ ରୋଜଗାର ହରାଇ ଫୁଲବାଣୀ ସହରକୁ ପଳାଇ ଆସିଥିଲେ । ଶହେ ଦୁଇଶହ ଟଙ୍କାର ପୁଞ୍ଜିନେଇ ବଜାରରେ ଗୋଟିଏ ଠେଲା ସାହାଯ୍ୟରେ ଝାଲ ମୁଢ଼ି ବିକି ନିଜର ସ୍ତ୍ରୀ ଓ ଦୁଇଟି ପୁଅ ଝିଅଙ୍କ ଗୁଜୁରାଣ ବହୁ କଷ୍ଟରେ ଚଳାଇ ନେବାକୁ ଉଦ୍ୟମ କରି ଆସୁଥିଲେ । ତାଙ୍କ ଭାଗ୍ୟ ଓ ଉଦ୍ୟମ ଫଳରେ ୧୯୯୫ ମସିହାରେ ସେ ସ୍ଥାନୀୟ ବିଜ୍ଞାପିତ ଅଞ୍ଚଳ ପରିଷଦ କାର୍ଯ୍ୟାଳୟର ସମାଜ ସଂଗଠିକାଙ୍କ ସହ ଆଲୋଚନା କରି ନେହେରୁ ରୋଜଗାର ଯୋଜନାରେ ଦଶ ହଜାର ଟଙ୍କାର ଏକ ଋଣ ବନ୍ଦୋବସ୍ତ କରିପାରିଲେ । ୟୁକୋ ବ୍ୟାଙ୍କରୁ ସେହି ମଞ୍ଜୁରପ୍ରାପ୍ତ ଋଣ ନେଇ ଗୋଟିଏ ଚାରିଚକିଆ ଠେଲା କିଣି ଅବଶିଷ୍ଟ ଟଙ୍କାରେ ମିକ୍ସଚର, ଚାଟ, ବିସ୍କୁଟ, ଲଡୁ, ଚକୋଲେଟ୍ ଆଦି ବିକ୍ରି କରୁଛନ୍ତି । ସେ ଦିନ ଦେବେ

ଦିନିକି ସ୍କୁଲ ଓ ସଂଧ୍ୟାରେ ବଜାର ଛକରେ ତାଙ୍କ ଭ୍ରାମ୍ୟମାଣ ଦୋକାନ ଖୋଲି ଭଲ ବିକ୍ରି କରି ବେଶ୍ ରୋଜଗାର କରୁଛନ୍ତି । କାଶୀନାଥ ପରିବାର ନିୟୋଜନ କରିଥିବା ଜଣେ ସବୁଜ ପତ୍ରିକାଧାରୀ ଗୃହସ୍ଥ । ଏହି ରୋଜଗାରରେ ସେ ତାଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅକୁ ଠିକ୍ ଭାବରେ ଖାଇବା, ଲୁଗା ପଟା ଦେଇ ପାରିବା ସହ ସେମାନଙ୍କ ପାଠ ପଢ଼ା ଖର୍ଚ୍ଚ ମଧ୍ୟ ଭଲ ଭାବରେ ତୁଲାଇ ପାରୁଛନ୍ତି । ସେ ଦୈନିକ ଚାରି ଶହରୁ ପାଞ୍ଚ ଶହ ଟଙ୍କାର ବ୍ୟବସାୟ କରି ନିତି ୮୦ ଟଙ୍କାରୁ ଊର୍ଦ୍ଧ୍ୱ ଲାଭ ପାଆନ୍ତି । ସେହି ଆୟରୁ କାଶୀନାଥ ୩୬ଟି କିସ୍ତିରେ ଋଣ ଅର୍ଥ ୧୦ହଜାର ଟଙ୍କା ଓ ସୁଧ ପରିଶୋଧ କରିସାରିଛନ୍ତି । ପୁଅ ହାଇସ୍କୁଲ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବା ପରେ କଲେଜରେ ପଢୁଛି । ଝିଅ ଅଷ୍ଟମରେ ପଢୁଛି ।

ସମସ୍ତ ପାରିବାରିକ ଖର୍ଚ୍ଚ, ପିଲାଙ୍କ ପାଠପଢ଼ା ଖର୍ଚ୍ଚ ତୁଲାଇବା ସହ ସେ କିଛି ସଂଞ୍ଚୟ ମଧ୍ୟ କରନ୍ତି । ସ୍ଥାନୀୟ ୟୁକୋ ବ୍ୟାଙ୍କରେ ଝିଅ ବିବାହର ପାଇଁ ଝିଅ ନାମରେ ମାସିକ ୪୦୦/- ଟଙ୍କା ରଖି ଏକ ପୁନଃପୌନିକ ଜମାଖାତା ଖୋଲିଛନ୍ତି ।

ଓମ୍ ପ୍ରଧାନ
ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ, ଫୁଲବାଣୀ

# ସୌଭାଗ୍ୟର ନୂଆସକାଳ

ଢେଙ୍କାନାଳ ଜିଲ୍ଲା ଓଡ଼ାପଢ଼ା ବ୍ଲକର ଗୋବିନ୍ଦ ପ୍ରସାଦ ପଞ୍ଚାୟତ ଭିତରେ ଛୋଟ ଗାଁଟିଏ– ସାନନଢ଼ା । ସେଇ ଗାଁରେ ଶ୍ରୀ ପ୍ରଫୁଲ୍ଲ ନାଏକର ଘର । ପ୍ରଫୁଲ୍ଲକୁ ଏବେ ବୟସ ୩୦ବର୍ଷ । ପିଲାଦିନରୁ ପିତୃହରା ପ୍ରଫୁଲ୍ଲର ଜୀବନ ଦୁଃଖ-ଜଞ୍ଜାଳ ଭିତରେ କଟିଥିଲା । ପୈତୃକ ସମ୍ପତ୍ତି କହିଲେ ମାତ୍ର ଆଠ/ଦଶ ଗୁଣ୍ଠ ଜମି । ପ୍ରଫୁଲ୍ଲଙ୍କର ପୁଅଟିଏ, ଝିଅଟିଏ । ଭାଇ ଦୁଇ ଓ ଭଉଣୀ ତିନି । ମା' ବୁଢ଼ୀଟି ଏସନ ଦେହ ଡେଜିଲା ।

ପେଟପାଟଣା ଲାଗି ମୂଲ-ମଜୁରୀ କଲେବି, ଘର କରି ଦି'ଓଳି ପେଟ ପୁରେଇ ଖାଇବାକୁ ଅଣ୍ଟେ ନାହିଁ । ତହିଁକୁ ପୁଣି ଘରେ ବୁଢ଼ୀଟିଏ, ଛୋଟ ଛୋଟ ପିଲା ଦିଓଟି । ସେମାନଙ୍କର ଦିହ ପା', ଔଷଧ ପାଣି ଖର୍ଚ୍ଚ ଅଛି । ଓଷାବାର, ବନ୍ଧୁବାନ୍ଧବ ଖରଚା କିଏ ପଚାରେ ? ସମୟ ପାଇଲେ ପ୍ରଫୁଲ୍ଲ ପଞ୍ଚାୟତ ଅଫିସ୍ ଆଡ଼େ ଯାଏ । ଗ୍ରାମ ସଭାରେ ଯୋଗ ଦିଏ । ଗରିବ ଲୋକଙ୍କ ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ସରକାର କରୁଥିବା ବିଭିନ୍ନ ଯୋଜନା ବିଷୟରେ ଶୁଣେ, ପଚାରି ବୁଝେ । ଅଭାବ ଅନାଟନର ଚକ୍ରବ୍ୟୂହ ଭିତରୁ ନିଜକୁ ଓ ପରିବାରକୁ ମୁକୁଳେଇବା ପାଇଁ ମନେ ମନେ ଚିନ୍ତା କରେ ।

ଦିନେ ପ୍ରଫୁଲ୍ଲ ନିଜ ମନର କଥା ସରପଞ୍ଚଙ୍କୁ କହିଲା । ସରପଞ୍ଚ ପ୍ରଫୁଲ୍ଲକୁ ସାଥୀରେ ଧରି ଭା'ପୁରରେ ଥିବା ୟୁକୋ ବ୍ୟାଙ୍କକୁ ନେଇଗଲେ । ପ୍ରଫୁଲ୍ଲ ନିଜର ଅଭାବ ଅସୁବିଧା କଥା ବ୍ୟାଙ୍କ ବାବୁଙ୍କ ଆଗେ କହିଲା । ନିଜେ କିଛି ଗୋଟାଏ ଛୋଟ ବ୍ୟବସାୟ କରି ଦି'ପଇସା ରୋଜଗାର କରିବାର ଇଚ୍ଛା ବି ଖୋଲି କହିଲା । ବ୍ୟାଙ୍କ ବାବୁ ପ୍ରଫୁଲ୍ଲର ଆନ୍ତରିକତାକୁ ଅନୁଭବ କଲେ । ୧୯୯୬ ମସିହାରେ ଆଇ.ଆର୍.ଡି.ପି. ଯୋଜନାରେ ଚାଉଳ ବ୍ୟବସାୟ କରିବା ପାଇଁ ପ୍ରଫୁଲ୍ଲକୁ ୟୁକୋ ବ୍ୟାଙ୍କ, ଭା'ପୁର ଦ୍ୱାରା ୨୦,୦୦୦ ଟଙ୍କା ଋଣ ମଞ୍ଜୁର କରାଗଲା ।

ଋଣ ପାଇବା ପରେ ସେ ତା'ର ବ୍ୟବସାୟରେ ଲାଗିପଡ଼ିଲା । ଢେଙ୍କାନାଳ ଓ ଘଟିପିରି ବଜାରରୁ ବସ୍ତାଦରିଆ ଚାଉଳ ଆଣି ଗାଁରେ ଖୁଚୁରା ଭାବେ ଗ୍ରାମବାସୀଙ୍କୁ ବିକ୍ରିକରି ବେଶ୍ ଦୁଇପଇସା ରୋଜଗାର କଲା । ସରକାରଙ୍କ ଆର୍ଥିକ ଅନୁଦାନ ଏବଂ ନିଜର ଆନ୍ତରିକ ପ୍ରଚେଷ୍ଟା, ଉଭୟ ଏକାଠି ହେବାରୁ ପ୍ରଫୁଲ୍ଲର ଆୟ ବୃଦ୍ଧି ହେବାରେ ଲାଗିଲା । ବ୍ୟାଙ୍କରୁ ଆଣିଥିବା ଋଣ କଥା ସେ ପାଶୋରି ନଥିଲା । ଚାଉଳ ବ୍ୟବସାୟରୁ ଲବ୍ଧ ଲାଭାଂଶରେ ନିୟମିତ କିସ୍ତି ଅର୍ଥ ଶୁଝିବାରେ ଅବହେଳା କରିନଥିଲା ସେ । ଧୀରେ ଧୀରେ ପ୍ରଫୁଲ୍ଲର ଆର୍ଥିକ ପରିସ୍ଥିତି ଉନ୍ନତ ହୋଇପାରିଛି । ପିଲା ଦୁହିଁଙ୍କୁ ଉତ୍ତମ ଖାଦ୍ୟ, ବସ୍ତ୍ର ଯୋଗାଇ ଦେବା ସହ ପାଠପଢ଼ାଇ ପାରିଛି । ଘରକୁ ହଳେ ବଳଦ ଓ ୫ଟି ଛେଳି କିଣିପାରିଛି ଏବଂ ଦି'ପଇସା ସଞ୍ଚୟ କରିପାରିଛି ।

ପ୍ରଫୁଲ୍ଲ ଆଜି ଦେଖୁଛି ନୂଆସ୍ୱପ୍ନ, ଆଗାମୀ ଭବିଷ୍ୟତର । ସରକାରଙ୍କ ଆଇ.ଆର୍.ଡି.ପି. ଯୋଜନା ତା ପାଇଁ ଆଣିଦେଇଛି ସୌଭାଗ୍ୟର ନୂଆସକାଳ ।

ଶ୍ରୀମତୀ ଲିଲିମା ତ୍ରିପାଠୀ
ଉପଖଣ୍ଡ ସୂଚନା ଓ ଲୋକସମ୍ପର୍କ ଅଧିକାରୀ, ଢେଙ୍କାନାଳ

# କ୍ଷେତ ମୂଲିଆରୁ ହୋଟେଲ ମାଲିକ

ଢେଙ୍କାନାଳ ଜିଲ୍ଲା ଅନ୍ତର୍ଗତ କାମାକ୍ଷାନଗର ବ୍ଲକର ଧୋବାବାହାଳି ଗ୍ରାମରେ ଭଗବାନ ସାହୁ ଜଣେ ସାଧାରଣ ବର୍ଗର କୃଷି ମଜୁରିଆ । ତାଙ୍କର ବାର୍ଷିକ ଆୟ ମାତ୍ର ୬୦୦୦/- ଟଙ୍କା । ସ୍ତ୍ରୀ ଓ ୩ଟି କନ୍ୟା ସନ୍ତାନଙ୍କୁ ନେଇ ବହୁ କଷ୍ଟରେ ଦିନ ମଜୁରୀ କରି ଜୀବନଯାପନ କରୁଥିଲେ । ପୈତୃକ ସମ୍ପତ୍ତି ହିସାବରେ ମାତ୍ର ଏ ୧.୨୦ ଡେସିମିଲ ଜମି ।

ସାହୁଙ୍କର ବୟସ ୩୦ବର୍ଷ । ଶିକ୍ଷାଗତ ଯୋଗ୍ୟତା ଅଷ୍ଟମ ଶ୍ରେଣୀ । ଉଚ୍ଚଶିକ୍ଷା ପାଇଁ ଇଚ୍ଛାଥିଲେ ବି ଆର୍ଥିକ ପରିସ୍ଥିତି ଯୋଗୁଁ ତାହା ସମ୍ଭବ ହୋଇପାରିନଥିଲା । ଚାଷରୁ ଯାହା ଆମଦାନୀ ହୁଏ, ତାହା ୪ ମାସର ଖର୍ଚ୍ଚକୁ ନିଅଣ୍ଟ । ପିଲାମାନଙ୍କୁ ଦୁଇବେଳା ପେଟପୂରାଇ ଖାଇବାକୁ ଦେବା

ଓ ସେମାନଙ୍କୁ ପାଠ ପଢ଼ାଇ ମଣିଷ କରିବା ତାଙ୍କ ନିକଟରେ ସ୍ୱପ୍ନ ଥିଲା । ସବୁବେଳେ ଚିନ୍ତା କିପରି ସେ ପିଲାମାନଙ୍କୁ ମଣିଷ କରିବେ ।

୧୯୯୫ ମସିହାରେ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ଦ୍ୱାରା ଆହୂତ ଗ୍ରାମ ସଭାରେ ସେ ଉପସ୍ଥିତ ରହି ସରକାରଙ୍କ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ବିଭିନ୍ନ ଅର୍ଥନୈତିକ ଯୋଜନା ସମ୍ବନ୍ଧରେ ଜାଣିଲା । ଗୋଟିଏ ଦୋକାନ କରିବାକୁ ମନସ୍ଥ କରି ଗ୍ରାମସଭାରେ ଉପସ୍ଥିତ ସମ୍ପ୍ରସାରଣ ଅଧିକାରୀ, ଶାଖାପରିଚାଳକ ତଥା ଗ୍ରାମସେବକଙ୍କୁ ଜଣାଇଲା । ତା'ର ଆଗ୍ରହ ଦେଖି ଗ୍ରାମସଭାରେ ତାଙ୍କ ନାମ ଅନୁମୋଦନ ହେବା ସଂଗେ ସଂଗେ ଗ୍ରାମସେବକ ବାବୁ ଋଣ ଦରଖାସ୍ତ ସଂଗ୍ରହ କରି ଗ୍ରାମଠାରୁ ମାତ୍ର ୪ କି.ମି. ଦୂର ଢେଙ୍କାନାଳ ଗ୍ରାମ୍ୟ ବ୍ୟାଙ୍କ ତୁମୁସିଙ୍ଗାକୁ ଦରଖାସ୍ତଟି ପଠାଇଦେଲେ ।

ଶ୍ରୀ ସାହୁଙ୍କର ଭାଗ୍ୟାକାଶରେ ନୂତନ ସୂର୍ଯ୍ୟ ଉଦୟ ହେଲା । ଗ୍ରାମ୍ୟ ବ୍ୟାଙ୍କର ମ୍ୟାନେଜର ଗତ ୧୯.୧୨.୯୬ ରେ ଏକ ଛୋଟ ଜଳଖିଆ ଦୋକାନ ନିମିତ୍ତ ମଞ୍ଜୁର କଲେ ଆଠ ହଜାର ଟଙ୍କା । ଏଥିରୁ ସେ ୨୬୬୭ ଟଙ୍କା ସରକାରୀ ଅର୍ଥାନୁକୂଲ୍ୟ (ସବ୍‌ସିଡି) ପାଇଛନ୍ତି । ଏହି ୮୦୦୦ ଟଙ୍କାକୁ ପାଥେୟ କରି ସେ ଘର ନିକଟରେ ଆରମ୍ଭ କଲେ ଏକ ଜଳଖିଆ ଦୋକାନ । ଏହି ଦୋକାନରୁ ଦୈନିକ ପ୍ରାୟ ୫୦ଟଙ୍କାରୁ ୬୦ଟଙ୍କା ରୋଜଗାର କଲେ । ପିଲାମାନଙ୍କର ପାଠପଢ଼ା ତଥା ନିଜ ଚଳଣିରେ ଟିକେ ଉନ୍ନତି ହେଲା । ବ୍ୟାଙ୍କର କିସ୍ତି ଟଙ୍କା ଶୁଝିବାରେ ସେ କିନ୍ତୁ ଅବହେଳା କରୁନଥାନ୍ତି ।

ଅଧିକ ଅର୍ଥ ଉପାର୍ଜ୍ଜନ ଚିନ୍ତା ତାଙ୍କ ମନରେ ସର୍ବଦା ଉଙ୍କି ମାରୁଥାଏ । ଏହିପରି କିଛି ଦିନ ଯିବାପରେ ଦିନେ ବାହାରି ପଡ଼ିଲେ ଘରଠାରୁ ୧୯ କି.ମି ଦୂର କାମାକ୍ଷାନଗରକୁ ନିଜର ବ୍ୟବସାୟ ଉନ୍ନତି ପାଇଁ । ପାଖରେ ତାଙ୍କର ପୁଞ୍ଜି ଥାଏ ସେହି ଜଳଖିଆ ଦୋକାନର ମୂଳଧନ ୮୦୦୦ ଟଙ୍କା ଓ ନିଜେ ଅଳ୍ପ ଅଳ୍ପ ସଞ୍ଚୟ କରି ରଖିଥିବା ୨୦୦୦ଟଙ୍କା । ସମୁଦାୟ ୧୦,୦୦୦ଟଙ୍କା । ବ୍ଲକ ପାଖରେ ତିଆରି କଲେ ଏକ ଛୋଟ ଛାଟିମାଟିର କୁଡ଼ିଆ ଘରଟିଏ ଓ ଆରମ୍ଭ କରିଦେଲେ ଏକ ଛୋଟିଆ ହୋଟେଲ । ହୋଟେଲର ନାମ ଦେଲେ ''ମହାବୀର ହୋଟେଲ'' ।

ଏହି ଛୋଟିଆ ହୋଟେଲରେ ଆସ୍ତେ ଆସ୍ତେ ଭିଡ଼ ଜମିଲା । ଦୈନିକ ପ୍ରାୟ ୩୦୦୦/- ଟଙ୍କାର ବ୍ୟବସାୟ ହେବା ଫଳରେ ସେ ଦୈନିକ ୧୦୦ ଟଙ୍କାରୁ ୨୦୦ ଟଙ୍କା ପର୍ଯ୍ୟନ୍ତ ରୋଜଗାର କରିପାରୁଛନ୍ତି । ଫଳରେ ନିଜର ଆର୍ଥିକ ଉନ୍ନତି ସଂଗେ ସଂଗେ ଦୁଇଜଣ ବେକାର ଯୁବକଙ୍କୁ ମଧ୍ୟ ତାଙ୍କ ହୋଟେଲରେ କର୍ମସଂସ୍ଥାନ ଯୋଗାଇ ପାରିଛନ୍ତି ।

ଇତି ମଧ୍ୟରେ ସେ ବ୍ୟାଙ୍କର ସମସ୍ତ ଋଣ ପରିଶୋଧ କରିପାରିଛନ୍ତି । ନିଜ ରୋଜଗାର ସଞ୍ଚିତ ଅର୍ଥରେ ସେ ୧୦.୨୫ ଡେସିମିଲ ଜମି କିଣିବା ସହିତ ଦିପଇସା ହାତରେ ରଖି ପାରିଛନ୍ତି ।

ଶ୍ରୀ ଖଗେନ୍ଦ୍ର ରାଉତ

ଉପଖଣ୍ଡ ସୂଚନା ଓ ଲୋକସମ୍ପର୍କ ଅଧିକାରୀ, କାମାକ୍ଷାନଗର

# ଅଟୋ ରିକ୍ସା ହେଲା ଶାହା ଭରସା

ପୁରୀ ଜିଲ୍ଲାର ସଦର ବ୍ଲକ ଅନ୍ତର୍ଗତ ସିଂହପୁର ଗାଁର ଶ୍ରୀ ଗଙ୍ଗାଧର ମହାପାତ୍ର ଜଣେ ଶିକ୍ଷିତ ଯୁବକ । କିଛିଦିନ ଚାକିରି ପଛରେ ଧାଇଁଲେ, ହତାଶ ହେଲେ । ଘରର ଆର୍ଥିକ ସ୍ଥିତି ଭଲ ନଥିଲା । ସ୍ୱାଧୀନ ବ୍ୟବସାୟ ପାଇଁ ପ୍ରଚୁର ପୁଞ୍ଜି ଆବଶ୍ୟକ । ଶ୍ରୀ ମହାପାତ୍ର ନିଜସ୍ୱ ଉଦ୍ୟମ ଓ ସାମାନ୍ୟ ଘରୋଇ ସମ୍ବଳକୁ ଭିତ୍ତି କରି ବ୍ୟବସାୟ ଆରମ୍ଭ କରିଦେଲେ । ବ୍ୟବସାୟରେ ସଫଳତା ପାଇଁ ପୁଞ୍ଜି ଯେତିକି ଦରକାର ତାଠୁ ବେଶୀ ଦରକାର ବ୍ୟବସାୟିକ ଚତୁରତା । ବେଶୀ ଦିନ ତିଷ୍ଠି ପାରିଲେନି । ସେ ବ୍ୟବସାୟ ବନ୍ଦ କରିବାକୁ ବାଧ୍ୟ ହେଲେ । ପୁଣି ନିରାଶାର ଅନ୍ଧାର ମଧ୍ୟରେ ଘୁରି ବୁଲିଲେ ।

ଏମିତି ବୁଲୁ ବୁଲୁ, ଦୈବାତ ୧୯୯୬-୯୭ ମସିହାରେ ତାଙ୍କ ନଜରରେ ପଡ଼ିଲା ଖବର କାଗଜରେ ପ୍ରକାଶିତ ଏକ ବିଜ୍ଞାପନ ଉପରେ । ବିଜ୍ଞାପନଟି ଥିଲା ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା ପାଇଁ ଦରଖାସ୍ତ ଆହ୍ୱାନ ସମ୍ପର୍କରେ । ପୁଣି ମନରେ ଆଶା ଗଜୁରି ଉଠିଲା । ଆଶା ଓ ଆଶଙ୍କା ଭିତରେ ଶ୍ରୀ ମହାପାତ୍ର ଦରଖାସ୍ତ ପକେଇ ଦେଲେ । ପୂର୍ବରୁ ସେ ପେଟ୍ରୋଲ ଚାଳିତ ଅଟୋ ରିକ୍ସା ପାଇଁ ମାନସିକ ପ୍ରସ୍ତୁତି କରିଥିଲେ । ତାଙ୍କୁ ଅତି ସହଜରେ ପେଟ୍ରୋଲ ଚାଳିତ ଅଟୋ ରିକ୍ସା ପାଇଁ ଭାରତୀୟ ଷ୍ଟେଟ ବ୍ୟାଙ୍କ ପୁରୀ ଶାଖାରୁ ଟ.୫୩,୭୫୦ଙ୍କା ଋଣ ମିଳିଲା । ଅଟୋରିକ୍ସା ହେଲା ତାଙ୍କର ପରିବାର ଭରଣ ପୋଷଣର ଏକମାତ୍ର ମାଧ୍ୟମ । ସୁଖ ଦୁଃଖର ସାଥୀ ।

ଏବେ ଗଙ୍ଗାଧର ଚନ୍ଦନପୁରରେ ଅଟୋ ନେଇ ପହଞ୍ଚିଯାଇଛନ୍ତି । ସକାଳେ ଓ ରାତିରେ ଘରକୁ ଫେରିବା ବେଳକୁ ପକେଟରେ ରହୁଛି ଟ.୨୫୦/- ରୁ ୩୫୦/- ପରିବାର ଚଳାଇବା ସହ ବ୍ୟାଙ୍କ ଋଣ ମଧ୍ୟ ନିୟମିତ ଶୁଝିଚାଲିଛନ୍ତି । ଆଉ ଅଳ୍ପ କେତେ ମାସ ପରେ ସେ ହେବେ ଅଟୋର ସମ୍ପୂର୍ଣ୍ଣ ମାଲିକ ।

ଶ୍ରୀ ବିଧୁଭୂଷଣ ମାର୍ଥା

ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ, ପୁରୀ

# ନାଁଟି ତାର ରାଧା: କିଏ ଦେବ ଆଉ ବାଧା

ରାଜାରାଓ ସୋମପେଟାର ଜଣେ ଚାଷୀ । ସ୍ତ୍ରୀ, ୨ଟି ଝିଅକୁ ନେଇ ସେ ସୁଖେ ଦୁଃଖେ ଚଳିଯାଉଥିଲା । ହଠାତ ପରିବାରରେ ଝଡ଼ ଉଠିଲା ଗାଁ ମହାଜନ ଦ୍ୱାରା ସର୍ବସ୍ୱାନ୍ତ ହୋଇଗଲା ସେ । ଇତି ମଧ୍ୟରେ ପୁଅ ଆଶାରେ ପୁଣି ୭ଟି କନ୍ୟାର ବାପା ହୋଇଯାଇଥାଏ । ଦଶପ୍ରାଣୀ ଦୁଇମୁଠା ପେଟରଗି ଖାଇବାକୁ ବି ପାଇଲେ ନାହିଁ, ତେଣୁ ସେ ବାଧ୍ୟ ହୋଇ ନିଜର ଭିଟାମାଟିକୁ ଛାଡ଼ି ଭୁବନେଶ୍ୱରକୁ ସପରିବାର ଚାଲିଆସିଲା । ସେଠାରେ ରିକ୍ସା ଟାଣି ପରିବାର ଚଳାଇଲା । ମୁଣ୍ଡ ଗୋଞ୍ଜିଲେ ଝାଟିମାଟି ଘେରା ଘରେ । କିଛିବର୍ଷ ପରେ ତା ସ୍ତ୍ରୀ ଓ ବଡ଼ଝିଅମାନେ ବାବୁଘରମାନଙ୍କରେ ଖଟି କିଛି ରୋଜଗାର କଲେ । ଛୋଟ ପିଲାମାନେ ମଧ୍ୟ ଆଳୁ, ପିଆଜ, ଇତ୍ୟାଦି ହାଟମାନଙ୍କରେ ବାଛି କିଛି ରୋଜଗାର କଲେ ।

ରାଜାରାଓ ବଡ଼ଝିଅ 'ରାଧା' କୁ ବିଭା କରାଇଲା ପାରଳାଖେମୁଣ୍ଡିସ୍ଥିତ ଏକ ଗ୍ରାମରେ । ହେଲେ କିଏ ଜାଣିଥିଲା 'ରାଧା' କପାଳରେ ଦୁର୍ଦ୍ଦିନ, ଯନ୍ତ୍ରଣାହିଁ ଲେଖା ହୋଇଛି ବୋଲି । ଶାଶୁ ଘରେ ପଶୁପଶୁ ସେ ସ୍ୱାମୀ ପରିତ୍ୟକ୍ତା ହୋଇଗଲା । କାରଣ ସ୍ୱାମୀ ତାର ଅନ୍ୟ ସ୍ତ୍ରୀ ସହ ଓଡ଼ିଶା ଛାଡ଼ି ବମ୍ବେର ସୁରାଟକୁ ଚାଲିଗଲା ବାହାଘର ବାସିଦିନ ।

ରାଧାର ଶାଶୁଘର ଲୋକମାନେ ରାଧାକୁ ଆଣି ଛାଡ଼ିଦେଇଗଲେ ତା ବାପ ପାଖରେ କିଛିଦିନ ପାଇଁ । ମାତ୍ର ରାଧାର ତାହାହିଁ ଥିଲା ଶେଷ ଶାଶୁ ଘର । ସେତେବେଳେ ରାଜାରାଓ ଧରଣୀ ଦଳେଇରେ ରୂପାନ୍ତରିତ ହୋଇ ଓଡ଼ିଶାର ଅଧିବାସୀ ହୋଇସାରିଥିଲା । ସେ ରିକ୍ସା ଛାଡ଼ି ମାଛ ବ୍ୟବସାୟ କରୁଥିଲା ଭୁବନେଶ୍ୱରରେ । ପରିତ୍ୟକ୍ତା ରାଧା ପାଇଁ ବାହାର ଦୁନିଆ ଥିଲା ମନା । ଭଉଣୀମାନଙ୍କ ଭିତରୁ ତିନିଜଣ ବିଭା ହୋଇଯାନ୍ତି । ହଠାତ୍ ଦିନେ ମାଆ ତାର ସମସ୍ତଙ୍କୁ ଛାଡ଼ି ଚାଲିଗଲା ଆରପାରିକୁ । ବାପର ବୃଦ୍ଧାବସ୍ଥା । ଏତେ ଦୁଃଖକୁ ମୁକାବିଲା କରି ନପାରି ବାପା ଧରଣୀ ମଦପିଇବା ଆରମ୍ଭ କଲା ।

ବାଧ୍ୟ ହୋଇ ଘରର ସବୁ ଦାୟିତ୍ୱକୁ ବହନ କଲା ''ରାଧା'' । ବାପର ମାଛ ବେପାରକୁ ସେ ସାହସର ସହିତ ସମ୍ଭାଳି ନେଲା । ''ରାଧା'' ମାଛ ବେପାରରୁ ଅଣିଆଡ଼ି ଥିବା ଆଉ ତିନି ଭଉଣୀଙ୍କୁ ମଧ୍ୟ ବିଭା କରାଇଥିଲା । ବହୁତ ଧାର ଉଧାର କରିବାକୁ ପଡ଼ିଥିଲା । ବାପ ତାର ମଦପିଇ ରାସ୍ତାରେ ଆସୁଥିବା ବେଳେ ହଠାତ୍ ଦିନେ କାର ତଳେ ମରିଗଲା ।

ଏବେ ରାଧା ପୁରା ନିଃସହାୟା । ବାପ ମରିଯିବାର ମାସେ ବି ଯାଇନି ଅଶୋକ ନଗର ମାଛ ହାଟକୁ ଉଠାଇ ଦିଆଗଲା । ସତେକି ବଜ୍ର ପଡ଼ିଲା ରାଧା ମୁଣ୍ଡରେ । କିନ୍ତୁ ସେହି ସମୟରେ ତାଙ୍କୁ ଈଶ୍ୱରଙ୍କ ଭଳି ସାହା ହେଲେ ଜଣେ ବାବୁ ନାମ ଦିଲୀପ ରାଜ ବେହେରା । ମୁନିସିପାଲିଟି ତରଫରୁ ଉଠାଦୋକାନ କରିବା ପାଇଁ ମିଳୁଥିବା ଟ.୨୦୦୦/- ଋଣ ପାଇଁ ମାନି ହେଲେ ସେ । ଖର୍ଚ୍ଚବାର୍ଚ୍ଚ ଯାଇ ରାଧାକୁ ମିଳିଲା ଟ.୧୪୦୦/-।

ସେତିକି ମୂଳଧନରୁ ରାଧା ଟ.୧୨୦୦/- ସାନଭାଇ ବାହାଘରରେ ଲଗାଇ, ବାକି ଟ.୨୦୦/- ଧରି ଆରମ୍ଭ କଲା ତାର ମାଛ ବେପାର । ୪ନମ୍ବର ହାଟରୁ ସମୁଦ୍ର ଓ ଦେଶୀ ମାଛ ଆଣି ବିକିଲା । ସେଥିରୁ ଲାଭ ବାହାର କରି କିରୋସିନି ଆଣି ଫୁଟପାଥର ଦୋକାନୀ ଓ ବସ୍ତିବାସିନ୍ଦାଙ୍କୁ ବିକ୍ରି କରିବା କାମ ଆରମ୍ଭ କଲା ।

ଏହି ଦୁଇ ବେପାରରୁ ଲାଭ କରି ଅଣ୍ଡା ବେପାର କଲା ଫୁଟ୍‌ପାଥରେ ବସି । ଆଗର ରାଧା ହୋଇନାହିଁ ସେ । ଏବେ ୪୦/୫୦ ହଜାର ଟଙ୍କାର ବେପାରୀ । ସେ ବର୍ତ୍ତମାନ ଅସହାୟା ନାରୀମାନଙ୍କ ଆଦର୍ଶ ହୋଇଯାଇଛି । ନାରୀ ଦୁର୍ବଳା ନୁହେଁ । ଧୈର୍ଯ୍ୟ, ସାହସ, ନିଷ୍ଠା, ତ୍ୟାଗ ଓ କର୍ତ୍ତବ୍ୟ ଦ୍ୱାରା ସେ ଅସାଧ୍ୟ ସାଧନ କରିପାରିବ ।

*ଶ୍ରୀମତୀ ସୁମତୀ ବେହେରା*
*ସୂଚନା ଅଧିକାରୀ, ଭୁବନେଶ୍ୱର*

# ଟାଇପ୍ ମେସିନ ହରିଲା ଦୁଃଖ

ଢେଙ୍କାନାଳ ଜିଲ୍ଲା ଅନ୍ତର୍ଗତ କାମାକ୍ଷାନଗର ବ୍ଲକ୍‌ର କାଦୁଆ ଗ୍ରାମ ପଞ୍ଚାୟତ ଅଧୀନସ୍ଥ ଭଗିରଥିପୁର ଗ୍ରାମର ଆର୍ତ୍ତତ୍ରାଣ ଦାଶ । ନାମମାତ୍ର ଚାଷୀ । ବାର୍ଷିକ ଆୟ ମାତ୍ର ୭୦୦୦ଟଙ୍କା । ପୈତୃକ ସମ୍ପତ୍ତି ଏ ୧.୨୫ ଡେସିମିଲ ଜମି । ପରିବାର କହିଲେ, ସେ, ତାଙ୍କର ସ୍ତ୍ରୀ ଦୁଇଗୋଟି ସନ୍ତାନ ଓ ବୃଦ୍ଧାମାଆ । ଶ୍ରୀ ଦାଶଙ୍କ ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ୍ୟୁଲେସନ, ବୟସ ୨୮ବର୍ଷ । ପରିବାରର ଭରଣ ପୋଷଣ ଦାୟିତ୍ୱ ତାଙ୍କୁ ଉଚ୍ଚଶିକ୍ଷାରୁ ବଞ୍ଚିତ କଲା । ଚାକିରି ଖୋଜି ଖୋଜି ନିରାଶ ହେବାପରେ କାମାକ୍ଷାନଗର ଯାଇ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କୁ ସାକ୍ଷାତ କଲେ । ଟ୍ରାଇସେମ୍ ଯୋଜନାରେ ପ୍ରଶିକ୍ଷଣ ନେବାପାଇଁ ସେହି ସମୟରେ ପ୍ରାର୍ଥୀ ମନୋନୟନ ଚାଲିଥାଏ । ଶ୍ରୀ ଦାଶ ଟ୍ରାଇସେମ୍ ଯୋଜନାରେ ମୁଦ୍ରଲେଖକ

(ଟାଇପିଷ୍ଟ) ତାଲିମ ପାଇଁ ଆବେଦନ କରି ସେଥିରେ ମନୋନୀତ ହୋଇ ମୁଦ୍ରଲେଖକ ତାଲିମ ଶେଷ କରିଥିଲେ । ତାପରେ ଖୋଜି ବୁଲିଲେ ସରକାରୀ କି ଘରୋଇ ଅନୁଷ୍ଠାନରେ ଟାଇପିଷ୍ଟ ଚାକିରିଟିଏ । ସେଥିରେ ନିରାଶ ହେବାପରେ ନିଜ ଗ୍ରାମଠାରୁ ୭ କି.ମି. ଦୂର କାମାକ୍ଷାନଗର କଚେରୀ ହତାରେ ମୋହରୀର କାମ ଆରମ୍ଭ କଲେ ।

ଗତ ୧୯୯୬ ମସିହାରେ ତାଙ୍କ ଭାଗ୍ୟରେ ପରିବର୍ତ୍ତନ ଆସିଲା । ବ୍ଲକର ଗ୍ରାମସେବକଙ୍କୁ ସାକ୍ଷାତ କରି ସେ ପରିବାରର ଦୁଃଖ ଜଣାଇଲେ । ଗ୍ରାମସେବକ ସମନ୍ୱିତ ଗ୍ରାମ ଉନ୍ନୟନ ଯୋଜନାରେ ମୁଦ୍ରଲେଖକ ନିମିତ୍ତ ଏକ ଋଣ ଦରଖାସ୍ତ ତାଙ୍କ ଠାରୁ ସଂଗ୍ରହ କଲେ । ଭାରତୀୟ ଷ୍ଟେଟ ବ୍ୟାଙ୍କ, ମୁଣ୍ଡିଦେଉଳି, କାମାକ୍ଷାନଗରକୁ ପଠାଇବାରେ ତାଙ୍କୁ ସହାୟତା କଲେ । ଗତ ୩.୩.୯୬ତାରିଖରେ ଭାରତୀୟ ଷ୍ଟେଟ ବ୍ୟାଙ୍କର ଶାଖା ପରିଚାଳକ ଶ୍ରୀ ଦାଶଙ୍କ ନାମରେ ୧୨,୨୫୦ଟଙ୍କାର ଋଣ ମଞ୍ଜୁର କଲେ । ସେଥିରେ ସେ ୪୦୦୦ ଟଙ୍କା ସରକାରୀ ଅର୍ଥାନୁକୂଲ୍ୟ (ସବ୍‌ସିଡି) ପାଇଲେ । ଟଙ୍କା ପାଇବା ପରେ କାମାକ୍ଷାନଗର କଚେରୀ ଉପରେ ଗୋଟିଏ ଟାଇପ୍ ମେସିନ କିଣି ଟାଇପ୍ କାର୍ଯ୍ୟ ଆରମ୍ଭ କଲେ ।

ପ୍ରଥମେ ପ୍ରଥମେ ଶ୍ରୀ ଦାଶ ଦୈନିକ ୫୦ଟଙ୍କାରୁ ୬୦ଟଙ୍କା ଭିତରେ ରୋଜଗାର କରୁଥିଲେ । ନିଜର ଆମାୟିକ ସ୍ୱଭାବ ଓ କାର୍ଯ୍ୟ ଦକ୍ଷତା ବଳରେ ସେ ସମସ୍ତଙ୍କର ପ୍ରିୟ ଭାଜନ ହୋଇପାରିଲେ । ଆଜିକାଲି ସେ ଦୈନିକ ୧୦୦ ଟଙ୍କାରୁ ୧୫୦ଟଙ୍କା ରୋଜଗାର କରିବାକୁ ସକ୍ଷମ ହୋଇଛନ୍ତି । ବ୍ୟାଙ୍କର କିସ୍ତି ମଧ୍ୟ ଠିକ୍ ମାସକୁ ମାସ ଶୁଝିବାରେ ଲାଗିଛନ୍ତି ।

ପିଲାଙ୍କ ପାଠପଢ଼ା, ପୋଷାକ ପତ୍ର ଏବଂ ଘରର ଉନ୍ନତିରେ ସେ ସଫଳ ହୋଇ ପାରିଛନ୍ତି । ବର୍ତ୍ତମାନ ସେ ସୁଧ ଏବଂ ମୂଳ ବାବଦକୁ ୭୫୦୦ଟଙ୍କା ବ୍ୟାଙ୍କ୍‌ରେ ପରିଶୋଧ କରିସାରିଲେଣି । ହାତରେ ମଧ୍ୟ କିଛି ଦି ପଇସା ରଖି ପାରିଛନ୍ତି । ଜଣେ ସଫଳ ହିତାଧିକାରୀ ଭାବେ ସରକାରଙ୍କ ଯୋଜନାକୁ ସେ ଭୂରି ଭୂରି ପ୍ରଶଂସା କରୁଛନ୍ତି ।

*ଶ୍ରୀ ଖଗେଶ୍ୱର ଦାସ*

*ଉପଖଣ୍ଡ ସୂଚନା ଓ ଲୋକସମ୍ପର୍କ ଅଧିକାରୀ, କାମାକ୍ଷାନଗର*

## ସଫଳ ଆତ୍ମନିଯୁକ୍ତି

ଅନେକ ଶିକ୍ଷିତ ଯୁବକ ଚାକିରି ପଛରେ ନଗୋଡ଼ାଇ ନିଜର ଉଦ୍ୟୋଗ ପ୍ରତିଷ୍ଠା କରି ଆତ୍ମନିର୍ଭରଶୀଳ ହେବାପାଇଁ ଉଦ୍ୟମ କରୁଛନ୍ତି । ଏଭଳି ଯୁବଉଦ୍ୟୋଗୀମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ଶ୍ରୀ ରବିନାରାୟଣ ପଟ୍ଟନାୟକ । ସେ ଢେଙ୍କାନାଳ ଜିଲ୍ଲା ହିନ୍ଦୋଳ ଉପଖଣ୍ଡ ନୂଆପାଣି ସାହିର ବାସିନ୍ଦା ।

ପରିବାରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା । ଶିକ୍ଷା ସମାପ୍ତି ପରେ ଆତ୍ମନିର୍ଭରଶୀଳ ହେବାପାଇଁ ସେ ବ୍ୟବସାୟ କରିବାକୁ ସ୍ଥିର କଲେ । ଅର୍ଥାଭାବରୁ ବ୍ୟବସାୟ ଆରମ୍ଭ କରିବାରେ ସେ ବହୁ ଅସୁବିଧାର ସମ୍ମୁଖୀନ ହେଲେ ତଥାପି ସେ ଧୈର୍ଯ୍ୟ ହରାଇ ନଥିଲେ । 'ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା' କାର୍ଯ୍ୟକ୍ରମ ଆଣିଦେଲା ତାଙ୍କ ପାଇଁ ଏକ ସୁବର୍ଣ୍ଣ ସୁଯୋଗ ।

ଆତ୍ମନିଯୁକ୍ତି ଏବଂ ନିଜସ୍ୱ ଉଦ୍ୟୋଗ ପ୍ରତିଷ୍ଠା କରିବା ପାଇଁ ଏହି ଯୋଜନା ମାଧ୍ୟମରେ ପଞ୍ଚାନବେ ହଜାର ଟଙ୍କା ଆର୍ଥିକ ସହାୟତା ପାଇଲେ ଏବଂ ୧୯୯୫ ମସିହାରେ ହିନ୍ଦୋଳ ସହରରେ ପ୍ରତିଷ୍ଠା କଲେ ଏକ ଜେରକ୍ସ ୟୁନିଟ୍ । ଏହି ୟୁନିଟ ସ୍ଥାପନ କରି ସେ ମାସରେ ପ୍ରାୟ ଦୁଇହଜାର ପାଞ୍ଚଶହ ଟଙ୍କା ପର୍ଯ୍ୟନ୍ତ ରୋଜଗାର କରିପାରୁଛନ୍ତି । ଏହି ଜେରକ୍ସ ୟୁନିଟ୍ ପାଇଁ ପାଇଥିବା ଆର୍ଥିକ ଋଣର ଅର୍ଦ୍ଧାଧିକ ଅର୍ଥ ସେ ପରିଶୋଧ କରି ସାରିଲେଣି । ଶ୍ରୀ ପଟ୍ଟନାୟକ ଏହି ଜେରକ୍ସ ୟୁନିଟ୍ ସହିତ ବହି ଖାତା ଓ ଅନ୍ୟାନ୍ୟ ପାଠ ଉପକରଣ ବିକ୍ରି କରି ମଧ୍ୟ ନିଜର ବ୍ୟବସାୟ ବୃଦ୍ଧି କରିଛନ୍ତି । ଆଜି ସେ ଜଣେ ଆତ୍ମନିର୍ଭରଶୀଳ ଯୁବକ ।

*ଶ୍ରୀ ଅଲେଖ ମଲ୍ଲିକ*

*ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ, ଢେଙ୍କାନାଳ*

## ଆଇ.ଡବ୍ଲ୍ୟୁ.ଡି.ପି. ଯୋଜନାରେ ଖଟିଖିଆ ପନିପରିବା ଚାଷ

କନ୍ଧମାଳ ଜିଲ୍ଲାର ବାରିକୁମ୍ପା ଗ୍ରାମର ଉଦ୍‌ଯୋଗୀ ଯୁବକ ହେଉଛନ୍ତି ଶ୍ରୀ ଇଲାତେନ୍ଦୁ ମିଶ୍ର । ଚାଷବାସ ଉପରେ ନିର୍ଭର କରି ସେ ତାଙ୍କର ଜୀବିକା ନିର୍ବାହ କରନ୍ତି । ତାଙ୍କର ଥିବା ୭ ଏକର ଚାଷ ଜମିରେ ଖରିଫ ଋତୁରେ ଧାନ ଓ ଅଳସୀ କରି ନିଜର ଗୁଜୁରାଣ ମେଣ୍ଟାନ୍ତି । ବିଶ୍ୱବ୍ୟାଙ୍କ ସହାୟତାରେ ରାଜ୍ୟ ମୃତ୍ତିକା ସଂରକ୍ଷଣ ବିଭାଗ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ସମନ୍ୱିତ ଜଳ ବିଭାଜିକା ଉନ୍ନୟନ ଯୋଜନାର କର୍ମଚାରୀଙ୍କ ପରାମର୍ଶରେ ଶୀତଦିନରେ ସେ ତାଙ୍କର ଦୁଇଏକର ଜମିରେ କଦଳୀ, ବାଇଗଣ ଓ ଟମାଟୋ ଏବଂ ଆଉ ଦୁଇ ଏକର ଜମିରେ ଖରାଦିନେ

ଚଉଳୁଇ, ଟମାଟୋ, କଖାରୁ ଚାଷ ଆରମ୍ଭ କରିଥିଲେ । ସମନ୍ୱିତ ଜଳ ବିଭାଜିକା ଯୋଜନାର ଉଦ୍ୟାନ କାର୍ଯ୍ୟକ୍ରମ ଜରିଆରେ ଏଥିପାଇଁ ତାଙ୍କୁ ଗୋଟିଏ ନଳକୂପ ଏବଂ ୩୦୦୦୦ ଟଙ୍କା ମୂଲ୍ୟର ମଞ୍ଜି ଓ ସାର ସହାୟତା ଆକାରରେ ଦିଆଯାଇଥିଲା । ଯୋଜନା କର୍ମକର୍ତ୍ତାଙ୍କ ପରାମର୍ଶ ଅନୁଯାୟୀ ଉନ୍ନତ ପ୍ରଣାଳୀରେ ଚାଷ କରି ଶ୍ରୀ ମିଶ୍ର ମୋଟ ୯ହଜାର ଟଙ୍କା ଲାଭ ପାଇଥିଲେ । ଖର୍ଚ୍ଚ ବାବଦରେ ଶ୍ରୀ ମିଶ୍ର ନିଟ୍ ୬ହଜାର ଟଙ୍କା ଲାଭ ପାଉଛନ୍ତି । ଏହି ସଫଳତାରେ ଉତ୍ସାହିତ ହୋଇ ଶ୍ରୀ ମିଶ୍ର ଅଧିକ ଜମିରେ ଖରାଟିଆ ପନିପରିବା ଚାଷ କରିବା ପାଇଁ ସ୍ଥିର କରିଛନ୍ତି ।

ସମନ୍ୱିତ ଜଳ ବିଭାଜିକା ଉନ୍ନୟନ ପ୍ରୋଜେକ୍ଟ ଅନ୍ତର୍ଗତ ବିରାମାହା ଗ୍ରାମର ଜଣେ ଅଗ୍ରଣୀ ମହିଳା ଚାଷୀ ହେଉଛନ୍ତି ଶ୍ରୀମତୀ ଲୁଗା ପ୍ରଧାନ । ଗତ ଖରାଦିନରେ ସମନ୍ୱିତ ଜଳ ବିଭାଜିକା ଉନ୍ନୟନ ପ୍ରୋଜେକ୍ଟ କର୍ମକର୍ତ୍ତାଙ୍କ ପରାମର୍ଶରେ ଅଢ଼େଇ ଏକର ଜମିରେ ବାଇଗଣ ଓ ଟମାଟୋ ଚାଷ କରିଥିଲେ । ଆଇ. ଡବ୍ଲ୍ୟୁ.ଡି.ପି. ଯୋଜନାରୁ ମିଳିଥିବା ୨,୦୦୦ ଟଙ୍କାର ସାର ଓ ମଞ୍ଜି ନେଇ ସେ ତାଙ୍କର ଚାଷ କାର୍ଯ୍ୟ ଆରମ୍ଭ କରିଥିଲେ । ଫସଲ ଅମଳ ପରେ ସେ ଉପରୋକ୍ତ ଖର୍ଚ୍ଚକୁ ବାଦ୍ ଦେଇ ନିଟ୍ ୬୫୦୦ ଟଙ୍କା ଲାଭ ପାଇଥିଲେ । ଏଥିରେ ଉତ୍ସାହିତ ହୋଇ ଏହି ବୟସ୍କା ମହିଳା ଚାଷୀ ଜଣକ ଆସନ୍ତା ବର୍ଷରେ ଖରାଟିଆ ପନିପରିବା ଚାଷ ପାଇଁ ସ୍ଥିର କରିଛନ୍ତି ।

ଫୁଲବାଣୀ ପ୍ରୋଜେକ୍ଟ ଏରିଆର ୧୭୦ଟି ଗ୍ରାମର ୧୦୦୧ ଜଣ ଚାଷୀ ସମନ୍ୱିତ ଜଳ ବିଭାଜିକା ଉନ୍ନୟନ ଯୋଜନାର ଉଦ୍ୟାନ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଛନ୍ତି ।

ଶ୍ରୀ ସୁକାନ୍ତ କୁମାର ପଣ୍ଡା
ସହକାରୀ ସୂଚନା ଅଧିକାରୀ, ଭୁବନେଶ୍ୱର

# କୃଷି ଋଣ ସମବାୟ ସମିତି ମାଧ୍ୟମରେ ବିଗତ ୧୦ବର୍ଷ ମଧ୍ୟରେ କୃଷି ଋଣ ଲଗାଣ

ଟଙ୍କା କୋଟି ଆକାରରେ
ସଦସ୍ୟ ସଂଖ୍ୟା ଲକ୍ଷ ଆକାରରେ

| ବର୍ଷ | ଖରିଫ | | | | ରବି | | | |
|---|---|---|---|---|---|---|---|---|
| | ସଦସ୍ୟ ସଂଖ୍ୟା | ଟଙ୍କା ଋଣ | ଦ୍ରବ୍ୟ ଋଣ | ମୋଟ | ସଦସ୍ୟ ସଂଖ୍ୟା | ଟଙ୍କା ଋଣ | ଦ୍ରବ୍ୟ ଋଣ | ମୋଟ |
| ୮୮-୮୯ | ୨.୨୮ | ୨୬.୨୧ | ୮.୫୩ | ୩୪.୭୪ | ୦.୯୭ | ୧୦.୭୩ | ୯.୨୯ | ୨୦.୦୨ |
| ୮୯-୯୦ | ୨.୭୬ | ୩୬.୬୩ | ୧୧.୦୫ | ୪୭.୬୮ | ୦.୧୪ | ୧.୬୪ | ୧.୩୧ | ୨.୯୫ |
| ୯୦-୯୧ | ୧.୪୬ | ୯.୮୭ | ୯.୪୯ | ୧୯.୩୬ | ୦.୬୬ | ୫.୪୦ | ୬.୪୫ | ୧୧.୮୫ |
| ୯୧-୯୨ | ୧.୦୭ | ୧୦.୧୫ | ୭.୦୯ | ୧୭.୨୪ | ୦.୫୩ | ୫.୧୭ | ୬.୯୧ | ୧୨.୦୮ |
| ୯୨-୯୩ | ୧.୪୩ | ୧୮.୪୬ | ୧୦.୬୭ | ୨୯.୧୩ | ୦.୫୪ | ୭.୪୪ | ୯.୪୫ | ୧୬.୮୯ |
| ୯୩-୯୪ | ୨.୦୨ | ୩୨.୯୧ | ୧୪.୫୬ | ୪୭.୪୭ | ୦.୮୩ | ୧୨.୩୪ | ୧୩.୨୨ | ୨୫.୫୬ |
| ୯୪-୯୫ | ୨.୪୧ | ୪୪.୫୨ | ୨୧.୭୭ | ୬୬.୨୯ | ୧.୦୪ | ୧୬.୮୪ | ୧୭.୬୦ | ୩୪.୪୪ |
| ୯୫-୯୬ | ୩.୮୨ | ୮୦.୨୨ | ୩୬.୩୧ | ୧୧୬.୫୩ | ୧.୦୧ | ୨୦.୩୭ | ୧୯.୧୬ | ୩୯.୫୩ |
| ୯୬-୯୭ | ୩.୩୦ | ୭୮.୬୨ | ୩୮.୨୯ | ୧୧୬.୯୧ | ୧.୧୨ | ୨୩.୭୬ | ୨୨.୬୨ | ୪୬.୩୮ |
| ୯୭-୯୮ | ୩.୪୪ | ୮୭.୧୨ | ୪୬.୦୦ | ୧୩୩.୧୨ | ୧.୪୧ | ୩୭.୯୬ | ୩୦.୬୯ | ୬୮.୬୫ |
| ୯୮-୯୯ | ୪.୨୫ | ୧୪୭.୮୮ | ୬୧.୭୭ | ୨୦୯.୬୫ | ଲକ୍ଷ୍ୟ ଧାର୍ଯ୍ୟ-୧୨୫ କୋଟି | | | |

# ଶହୀଦ ଲକ୍ଷ୍ମଣ ନାୟକ



ଓଡ଼ିଶାର ବଣ ପାହାଡ଼ ଘେରା ଏକ ଆଦିବାସୀ ପଲ୍ଲୀରୁ ଶହୀଦ ଲକ୍ଷ୍ମଣ ନାଏକ ସ୍ୱାଧୀନତା ସଂଗ୍ରାମର ସ୍ରୋତରେ ସାମିଲ ହୋଇ ବ୍ରିଟିଶ୍ ଶାସନ-ବିରୁଦ୍ଧରେ ଆନ୍ଦୋଳନ କରି ଜନ୍ମମାଟିକୁ ମୁକ୍ତ କରିବା ପାଇଁ ନେଇଥିଲେ ଆଗ୍ନେୟ ଶପଥ ।

୧୮୯୯ ମସିହା ନଭେମ୍ବର ୨୨ ତାରିଖରେ ତେନ୍ତୁଲିଗୁମା ଗ୍ରାମର ଏକ ଭୂମିଆ ଆଦିବାସୀ ପରିବାରରେ ଜନ୍ମଗ୍ରହଣ କରିଥିଲେ ଲକ୍ଷ୍ମଣ ନାଏକ । ପିତାଙ୍କ ନାମ ପଦଲମ ନାଏକ । ପିଲାଟି ଦିନରୁ ଲକ୍ଷ୍ମଣ ନାଏକ ଥିଲେ ସାହସୀ ଓ ଜିଦ୍‌ଖୋର । ସେହି ଅଞ୍ଚଳର ବଣ, ପାହାଡ଼, ଝରଣା ଓ ବିଭିନ୍ନ ଚେରମୂଳି ସହିତ ଲକ୍ଷ୍ମଣ ଖୁବ୍ ପରିଚିତ ଥିଲେ । ତେଣୁ ସେ ଗାଉଁଲୀ ବୈଦ୍ୟଗିରି, ଝାଡ଼ଣ, ଫୁଙ୍କଣ, ଓ ଚେରମୂଳି ଚିକିତ୍ସା କରି ଲୋକଙ୍କ ସେବା କରି ବିଶେଷ ଲୋକପ୍ରିୟ ହୋଇ ପାରିଥିଲେ । ସମୟ ସମୟରେ ସେ ବାପାଙ୍କ ସହ ଜୟପୁର, ମାଟିଲି ଓ ରାମଗିରିକୁ ନାନା କାର୍ଯ୍ୟରେ ଯାଇ ଓଡ଼ିଆ ଭାଷା ଶିଖିଥିଲେ । ୧୯ବର୍ଷ ବୟସରେ ଲକ୍ଷ୍ମଣ ସାନକୁମାର ଗାଁର ଭୂମିଆଙ୍କ ଝିଅ ମତ୍ତୁବିକୁ ବିବାହ କରିଥିଲେ । ପିତାଙ୍କ ଅବସର ଗ୍ରହଣ ପରେ ଲକ୍ଷ୍ମଣ ମୁଖିଆ ପଦରେ ଅବସ୍ଥାପିତ ହୋଇଥିଲେ ।

କୋରାପୁଟ ଜିଲ୍ଲାର ସରଳ, ନିରୀହ, ନିଷ୍କପଟ ଆଦିବାସୀମାନେ ଇଂରେଜମାନଙ୍କ ଅନ୍ୟାୟ ଓ ଅତ୍ୟାଚାରରେ ଜର୍ଜରିତ ହେଉଥିଲେ । ଜଙ୍ଗଲରକ୍ଷୀ, ଆର୍. ଆଇ.ମାନେ ଆଦିବାସୀମାନଙ୍କର ପ୍ରଭୁ ବା ଅଧିକାରୀ ହୋଇ ସେମାନଙ୍କୁ ନେଇ ବେଠି, ବେଗାରୀ ପ୍ରଥା ପ୍ରଚଳନ କରିଥିଲେ । ସେତେବେଳେ ମହାଜନମାନେ ଆଦିବାସୀମାନଙ୍କୁ ଠକିବାରେ ନିପୁଣ ଥିଲେ । ଏହି ସବୁ କାର୍ଯ୍ୟ ଶହୀଦ ଲକ୍ଷ୍ମଣ ନାଏକଙ୍କୁ ବିଶେଷ ବିବ୍ରତ କରିଥିଲା । ସେ ଆଦିବାସୀମାନଙ୍କୁ ସଙ୍ଗଠିତ କରି ଅନ୍ଧବିଶ୍ୱାସ ଓ ଅନ୍ୟାୟ ବିରୁଦ୍ଧରେ ଅଭିଯାନ ଆରମ୍ଭ କରି ହୃଦୟସ୍ପର୍ଶୀ ଭାଷଣ ଦେଇ ଦେଶପ୍ରେମ ଓ ସ୍ୱାଧୀନତା ବହ୍ନିକୁ ପ୍ରଜ୍ଜ୍ୱଳିତ କରିଥିଲେ । ଅଳ୍ପ ସମୟ ମଧ୍ୟରେ ଆନ୍ଦୋଳନ ବୈପାରୀଗୁଡ଼ାଠାରୁ ମାଲକାନଗିରି ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ୧୯୨୧ ମସିହାରେ ମହାତ୍ମା ଗାନ୍ଧୀ ଯେତେବେଳେ ଅସହଯୋଗ ଡାକରା ଦେଲେ, ସେତେବେଳେ ଲକ୍ଷ୍ମଣ ନାଏକଙ୍କ ଆହ୍ୱାନରେ କୋୟା ଓ ବଣ୍ଡାମାନେ ବଣ ଜଙ୍ଗଲରେ ଲୁଚି ଛପି ସଶସ୍ତ୍ର ଆକ୍ରମଣ କରିବା ଫଳରେ ବହୁ ଇଂରେଜଙ୍କର ମୃତ୍ୟୁ ଘଟିଲା । ସେ ସରକାରଙ୍କୁ ବିରୋଧ କରିଥିବାରୁ ତାଙ୍କୁ ରାଜଦ୍ରୋହୀ ବା ଫୁତରଦାର ଘୋଷଣା କରାଗଲା । ତାଙ୍କଠାରୁ ମୁଖିଆର ଦାୟିତ୍ୱ କାଢ଼ି ନେଇ କେବଳ ୨୫ ଏକର ଜମି ଦେଇ ଅନ୍ୟ ସମସ୍ତ ଜମି ସରକାର ନେଇଗଲେ । ପାରିବାରିକ ଭରଣପୋଷଣରେ ଘୋର ଅସୁବିଧା ସୃଷ୍ଟି ହେଲା । ସେଥିରେ ସେ ଧୈର୍ଯ୍ୟଚ୍ୟୁତ ହୋଇନଥିଲେ ।

କଂଗ୍ରେସ ନେତା ସ୍ୱର୍ଗତ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପ୍ରେରଣାରେ ଲକ୍ଷ୍ମଣ ନାଏକ କଂଗ୍ରେସ ଅନୁଷ୍ଠାନର ସଭ୍ୟ ହୋଇ ପରିଧାନ କଲେ ଖଦଡ଼ ବସ୍ତ୍ର, ଗାଇଲେ ରାମଧୁନ୍ ଓ ପ୍ରଚାର କଲେ 'କାଟି ପିନ୍ଧ, କୁଟି ଖାଅ' । ସରକାରଙ୍କ କାର୍ଯ୍ୟରେ ଅସହଯୋଗ କରିବାକୁ ଆଦିବାସୀମାନଙ୍କୁ ପ୍ରବର୍ତ୍ତାଇଲେ । ତାଙ୍କରି ଅକ୍ଲାନ୍ତ ପରିଶ୍ରମରେ ଘଞ୍ଚ ଜଙ୍ଗଲରେ ଆରମ୍ଭ ହେଲା ନୈଶ୍ୟ ବିଦ୍ୟାଳୟ, ଗ୍ରାମ ସଫେଇ କାର୍ଯ୍ୟକ୍ରମ ଓ ଔଷଧ ବଣ୍ଟନ । ସେ ଗାଁକୁ ଗାଁ ଯାଇ ଘରେ ଘରେ ପହଞ୍ଚି ନିଜ ଲୋକ ପରି ସେମାନଙ୍କ ସହିତ ଦୁଃଖ ସୁଖ ହେଉଥିଲେ ଏବଂ ସ୍ୱାଧୀନତାର ଆଭିମୁଖ୍ୟ ପ୍ରଚାର କରୁଥିଲେ । ଫଳରେ ସମଗ୍ର କୋରାପୁଟ ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମର ମହାସ୍ରୋତ ଛୁଟି ଚାଲିଲା ।

୧୯୩୯ରେ ଲକ୍ଷ୍ମଣ ନାଏକ ମାଟିଲିଠାରେ ସତ୍ୟାଗ୍ରହ କରି ଜେଲ ଗଲେ । ପୁଣି ଅଗଷ୍ଟ ୨୧ ତାରିଖରେ ଲକ୍ଷ୍ମଣ ନାଏକଙ୍କ ନେତୃତ୍ୱରେ ଶହ ଶହ ଆଦିବାସୀ ମାଟିଲି ଥାନା ପଟେ ଶୋଭାଯାତ୍ରା କରି ବନ୍ଦେ ମାତରଂ ଓ ବ୍ରିଟିଶ୍ ସରକାର ଭାରତ ଛାଡ଼ି ଚାଲିଯାଅ ସ୍ଲୋଗାନ ଦେଇ ସତ୍ୟାଗ୍ରହ ଆରମ୍ଭ କଲେ ।

ଏହାକୁ ପଣ୍ଡ କରିବା ପାଇଁ ଏମ୍. ଜଗାନାଇଡୁଙ୍କୁ ଦୋଷୀ ଗାଦି ଓ ଲୁହିତାନଳୀ କଲେ । ତଥାପି ସତ୍ୟାଗ୍ରହୀମାନଙ୍କ ମଧ୍ୟରୁ ଟିମିଗୁଡ଼ାର

ମିଲିବୁମିଆ ଓ ସରୁଗିଗୁଡ଼ାର ନଛୁକ ମାଡ଼କାମୀ ଭୟ ନକରି ଥାନା ଉପରେ ତ୍ରିରଙ୍ଗା ପତାକା ଉଡ଼େଇବାକୁ ଥାନା ଉପରକୁ ଚଢ଼ୁ ଚଢ଼ୁ ପୋଲିସ୍‌ର ଗୁଳିମାଡ଼ରେ ସେଠାରେ ସେମାନେ ଶହୀଦ ହେଲେ । ସତ୍ୟାଗ୍ରହୀମାନଙ୍କ ଉତ୍ତେଜନା ବଢ଼ିବାରୁ ଥାନାବାବୁଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣଙ୍କୁ ଥାନା ସାମନାକୁ ଟାଣି ନେଇ ଖୁବ୍ ମାଡ଼ ଦିଆଗଲା । ଅନ୍ୟ ଦୁଇଜଣ ପୋଲିସ୍ ମାଡ଼ିବସି ତାଙ୍କର ନିଶ ଓପାଡ଼ିବାରେ ଲାଗିଲେ । ଖୋପି ଲକ୍ଷ୍ମଣ ବନ୍ଦେ ମାତରଂ ସ୍ୱର ଉତ୍ତୋଳନ କରିବାରୁ ଅନ୍ୟ ଜଣେ ପୋଲିସ ବନ୍ଧୁକର ବାୟୋନଟ୍‌ରେ ତାଙ୍କରି ମୁହଁକୁ ଆଘାତ କରିବାରୁ ସେ ଅଚେତ ହୋଇଗଲେ । ଉତ୍ତ୍ୟକ୍ତ ସଂଗ୍ରାମୀମାନଙ୍କୁ ତଡ଼ିବାକୁ ପୋଲିସ୍‌ର ପ୍ରବଳ ଗୁଳି ଚାଳନାରେ ନିରସ୍ତ୍ର ସଂଗ୍ରାମୀମାନେ ଛତ୍ରଭଙ୍ଗ ହେଲେ । ଲୋକମାନଙ୍କୁ ମାନସିକ ବଳ ଦେବାକୁ ଲକ୍ଷ୍ମଣ ନିଜ ଅଞ୍ଚଳକୁ ଫେରି କିଛି ଦିନ ପାଇଁ ଫେରାର ଥିଲେ । ୧୯୪୨ ମସିହା ସେପ୍ଟେମ୍ବର ମାସ ୨ ତାରିଖ ସକାଳ ୬ଟା ବେଳେ ଲକ୍ଷ୍ମଣ ଗ୍ରାମବାସୀଙ୍କ ଗହଣରେ ନିଜ ବାସଗୃହର ଅଗଣାରେ ବସି ବାପୁଜୀଙ୍କ ପ୍ରିୟ ଭଜନ ଗାନ କରୁଥିବା ବେଳେ କାହାଠାରୁ ଖବର ପାଇ ପୋଲିସ୍ ହଠାତ୍ ପହଞ୍ଚି ଲକ୍ଷ୍ମଣଙ୍କୁ ଓ ଅନ୍ୟ ୫୪ ଜଣଙ୍କୁ ହାତକଡ଼ି ପକାଇ କୋର୍ଟକୁ ଚାଲାଣ କରିଥିଲେ । କୋରାପୁଟ ଜେଲ୍‌ରେ ସେ ନିଜେ ସହକର୍ମୀମାନଙ୍କ ସହ ଜେଲ୍ ଭୋଗିଲେ । ତତ୍କାଳୀନ ଡେପୁଟି କଲେକ୍ଟର ସୋମନାଥ ମିଶ୍ରଙ୍କ କୋର୍ଟରେ ଲକ୍ଷ୍ମଣ ନାଏକ ଓ ତାଙ୍କର ୫୪ଜଣ ସହକର୍ମୀଙ୍କ ନାମରେ ଦେଶଦ୍ରୋହ ଓ ନରହତ୍ୟା ମାମଲା ବିଚାର କରାଗଲା । ସରକାରଙ୍କ ତରଫରୁ ୩୩ଜଣ ସାକ୍ଷ୍ୟ ଦେଇଥିଲେ । ମାତ୍ର ଲକ୍ଷ୍ମଣଙ୍କ ତରଫରୁ କେହି ସାକ୍ଷୀ ନଥିଲେ କି କୋର୍ଟରେ ତାଙ୍କ ପକ୍ଷଭୁକ୍ତ ହୋଇ ଲଢ଼ିବାକୁ ସେ କୌଣସି ଓକିଲ ନିଯୁକ୍ତ କରିନଥିଲେ । ଡେପୁଟି କଲେକ୍ଟର ସାକ୍ଷ୍ୟ ପ୍ରମାଣ ଦେଖି ଉପର କୋର୍ଟକୁ କେସ୍‌ଟି ପଠାଇ ଦେଲେ । ସେହି ବର୍ଷ ଅକ୍ଟୋବର ମାସରେ କୋରାପୁଟରେ ଅତିରିକ୍ତ ସେସନ୍‌ସ ଜଜ୍ ଶ୍ରୀ ଭି. ରାମନାଥଙ୍କ କୋର୍ଟରେ ୧୮ ନମ୍ବର କେସ୍‌ର ବିଚାର ହୋଇଥିଲା । ଆଦିବାସୀ ସେଲିଆ ଓ ସିଙ୍ଗିଗୁଡ଼ାର କେଶବ ପାତ୍ରଙ୍କ ମିଥ୍ୟା ସାକ୍ଷ୍ୟ ଯୋଗୁଁ ୧୯୪୨ ମସିହା ନଭେମ୍ବର ୧୩ ତାରିଖରେ ବିଚାରପତି ରାୟ ଶୁଣାଇଲେ ଭାରତୀୟ ଦଣ୍ଡବିଧି ଆଇନ୍‌ର ୩୦୨ ଧାରା ଅନୁଯାୟୀ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦିଆଯିବ ।

୧୯୪୨ ନଭେମ୍ବର ୧୬ ତାରିଖ ଦିନ ଲକ୍ଷ୍ମଣ ନାଏକଙ୍କୁ କୋରାପୁଟ ଜେଲ୍‌ରୁ ବ୍ରହ୍ମପୁର ଜେଲ୍‌କୁ ଅଣାଗଲା । ସେ ଥିଲେ ଆସାମୀ ନଂ. ୬୬୧ । ସେତେବେଳେ ଓଡ଼ିଶାର ବରେଣ୍ୟ ନେତା ସ୍ୱର୍ଗତ ସଦାଶିବ ତ୍ରିପାଠୀ, ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଓ ଜାତୀୟ କବି ବୀରକିଶୋର ଦାସ ପ୍ରମୁଖ ଜେଲ୍‌ରେ ଥାନ୍ତି ।

ଇଂରେଜମାନେ ଅଭିସନ୍ଧି ରଖି ଫରେଷ୍ଟ ଗାର୍ଡ଼ ଜି. ରାମାୟାଙ୍କ ମୃତ୍ୟୁ ଲକ୍ଷ୍ମଣ ନାଏକଙ୍କ ଯୋଗୁଁ ହୋଇଛି ବୋଲି ମିଥ୍ୟା ପ୍ରଚାର କରି ଆସୁଥିଲେ । ଲକ୍ଷ୍ମଣଙ୍କୁ ମୃତ୍ୟୁ ଦଣ୍ଡରୁ ରକ୍ଷା କରିବା ପାଇଁ ବ୍ରହ୍ମପୁରର ବିଶିଷ୍ଟ ଆଇନଜ୍ଞ ସ୍ୱର୍ଗତ ରାଧାଚରଣ ଦାସ ବିହାର ହାଇକୋର୍ଟରେ ଅପିଲ କରିଥିଲେ, କିନ୍ତୁ ତାହା ଖାରଜ ହୋଇଗଲା । ଜେଲ୍‌ରେ ଥିବା ସମସ୍ତ ସ୍ୱାଧୀନତା ସଂଗ୍ରାମୀ ଦୁଃଖରେ ଭାଙ୍ଗି ପଡ଼ିଥିଲେ । ଉପରୁ ଆଦେଶ ଆସିଲା ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖରେ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦେବାକୁ । ଏ ଖବର ଶୁଣି ଜେଲ୍‌ରେ ଥିବା ସମସ୍ତ ନେତାଙ୍କ ମୁଖ ମଳିନ ପଡ଼ିଗଲା କିନ୍ତୁ ହସି ହସି ଲକ୍ଷ୍ମଣ କହୁଥାନ୍ତି– “ଦେଶ ପାଇଁ ମୃତ୍ୟୁ ବରଣ କରିବା ଭାଗ୍ୟବାନ ଲୋକଙ୍କ ପକ୍ଷରେ ହିଁ ସମ୍ଭବ ।”

୧୯୪୩ ମସିହା ମାର୍ଚ୍ଚ ୨୮ ତାରିଖ ରାତ୍ରି । ବ୍ରହ୍ମପୁର ଜେଲ୍‌ଟି ଶୁନ୍‌ଶାନ୍ । ସମସ୍ତ ସ୍ୱାଧୀନତା ସଂଗ୍ରାମୀ ଉପବାସ ବ୍ରତ ପାଳନ କରିଥିଲେ ଜେଲ୍ ଭିତରେ । ସତେ ଯେମିତି ମୂକ ପାଲଟି ଯାଇଥିଲେ । କେବଳ ଲକ୍ଷ୍ମଣଙ୍କ କାରାଗୃହରୁ ଶୁଣାଯାଉଥିଲା ବାପୁଜୀଙ୍କ ପ୍ରିୟ ଭଜନ ରାମଧୁନ୍ । ସଦାଶିବ ତ୍ରିପାଠୀ ଏକା ଲକ୍ଷ୍ମଣଙ୍କ କାରାଗୃହ ନିକଟକୁ ଯାଇ ଦେଖିଲେ ତାଙ୍କର ଶରୀର ଉଦାସ ପ୍ରାଣବନ୍ତ ମୁଖମଣ୍ଡଳ । ତାଙ୍କ ଆଖିରୁ ଝରିଲା ଅବାରିତ ଅଶ୍ରୁ । ଧୀର ସ୍ୱରରେ ପଚାରିଲେ– “ଲକ୍ଷ୍ମଣ ଘରକୁ କ'ଣ ଖବର ଦେବେ କି ?” ସେତେବେଳେ ସଂଗ୍ରାମୀ ନାଏକଙ୍କର ଗୋଟିଏ ଉତ୍ତର– “ମୋର ଆଉ କିଛି କହିବାର ନାହିଁ । ଆମେ ଯେଉଁ ସ୍ୱାଧୀନତା ପାଇଁ ଲଢ଼େଇ କରୁଛୁ, ସେ ସ୍ୱରାଜ୍ୟକୁ ଦେଖି ନପାରିବାରୁ ଦୁଃଖିତ ।”

ମାର୍ଚ୍ଚ ୨୯ ତାରିଖ ଭୋର ୫ଟାରେ ବ୍ରହ୍ମପୁର ଜେଲର ଫାଶୀ ଖୁଣ୍ଟ ଆଡ଼କୁ ଯାଉ ଯାଉ ଲକ୍ଷ୍ମଣ ତାଙ୍କ ଶେଷ ଉକ୍ତିରେ କହିଥିଲେ– “ଯେବେ ଆକାଶରେ ସୂର୍ଯ୍ୟ, ଚନ୍ଦ୍ର ଅଛନ୍ତି, ଦେଖିବ ରହିଥା, ସ୍ୱରାଜ୍ୟ ନିଶ୍ଚୟ ଆସିବ ।” ଫାଶୀ ଖୁଣ୍ଟରେ ଝୁଲିବାର ନିମିଷକ ମଧ୍ୟରେ ଚଳମାନ ଶରୀରଟି ସ୍ଥିର ହୋଇଗଲା । ସ୍ୱାଧୀନତା ସଂଗ୍ରାମର ଅମର ଶହୀଦ ହୋଇ ଲକ୍ଷ୍ମଣ ନାଏକ ହେଲେ ଆମ ଜାତିର ଗର୍ବ ଓ ଗୌରବ ।

ଠଠଠ

# ରାଜ୍ୟ ଅର୍ଥ କମିଶନଙ୍କ କାର୍ଯ୍ୟାବଳୀ

ଭାରତୀୟ ସମ୍ବିଧାନର ଧାରା ୨୪୩-୧ରେ ପାଠ୍ୟ ଓଡ଼ିଶା ଅର୍ଥ କମିଶନ (ବିବିଧ ବ୍ୟବସ୍ଥା) ଅଧିନିୟମ, ୧୯୯୩ ଅନୁଯାୟୀ ରାଜ୍ୟପାଳ ଓଡ଼ିଶା ଅର୍ଥ କମିଶନ ଗଠନ କରିଛନ୍ତି । ନିମ୍ନଲିଖିତ ବିଷୟଗୁଡ଼ିକରେ ଅନୁମୋଦନ କରିବା ପାଇଁ କମିଶନ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଛି ।

(୧) ରାଜ୍ୟ ଓ ପଞ୍ଚାୟତିରାଜ ଅନୁଷ୍ଠାନ/ ମ୍ୟୁନିସିପାଲିଟିଗୁଡ଼ିକ ମଧ୍ୟରେ ଟିକସ, ଶୁଳ୍କ, ଟୋଲ୍ ଇତ୍ୟାଦିରୁ ମିଳୁଥିବା ଅର୍ଥର ବଣ୍ଟନ ନିମନ୍ତେ ନୀତି ନିର୍ଦ୍ଧାରଣ କରିବା ।

(୨) ରାଜ୍ୟର ଏକତ୍ରୀକୃତ ନିଧିରୁ ଗ୍ରାମାଞ୍ଚଳ/ସହରାଞ୍ଚଳ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକୁ ସହାୟକ ଅନୁଦାନ ଦେବା ପାଇଁ ସୁପାରିଶ କରିବା ।

(୩) ଏହି ସ୍ୱାୟତ୍ତଶାସନ ସଂସ୍ଥାଗୁଡ଼ିକର ଆର୍ଥିକ ଅବସ୍ଥାର ଉନ୍ନତି ବିଧାନ ନିମନ୍ତେ କମିଶନ ମଧ୍ୟ ବିଭିନ୍ନ ପଦକ୍ଷେପ ସୁପାରିଶ କରିବେ ।

୧୯୯୫ ଅକ୍ଟୋବର ପହିଲାଠାରୁ ସ୍ୱାଧୀନତା ସଂଗ୍ରାମୀମାନଙ୍କର ପେନ୍‌ସନ୍‌ର ପରିମାଣ ମାସିକ ଟ.୩୦୦/- ରୁ ଟ.୫୦୦/-କାକୁ ବଢ଼ାଇ ଦିଆଯାଇଛି ।

ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି ଯେ ଯଦି ମୃତ ସରକାରୀ କର୍ମଚାରୀ/ ପେନ୍‌ସନ୍ ଗ୍ରହୀତାଙ୍କର ପତ୍ନୀ/ ସ୍ୱାମୀ କିମ୍ବା ସନ୍ତାନ ନଥାନ୍ତି, ତେବେ ମୃତ ସରକାରୀ କର୍ମଚାରୀଙ୍କର ପିତାଙ୍କୁ ଆଜୀବନ ପରିବାର ପେନ୍‌ସନ୍ ମଞ୍ଜୁର କରାଯିବ କିମ୍ବା ପିତା ନଥିଲେ, ମାତାଙ୍କୁ ଏହି ପରିବାର ପେନ୍‌ସନ୍ ମଞ୍ଜୁର କରାଯିବ ।

ପେନସନ୍ ନିମନ୍ତେ ସର୍ବନିମ୍ନ ଯୋଗ୍ୟ ବିବେଚିତ ୧୦ବର୍ଷର ସେବା ପୂରଣ ନିମନ୍ତେ ଠିକାକାମ ଚୁକ୍ତି ସେବାକାଳକୁ ସେବାର ପରିସରଭୁକ୍ତ କରାଯିବ ।

ନୂଆଦିଲ୍ଲୀସ୍ଥିତ ଜାତୀୟ ସରକାରୀ ବିତ୍ତ ଓ ନୀତି ପ୍ରତିଷ୍ଠାନ (ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଫାଇନାନ୍ସ ଆଣ୍ଡ ପଲିସି)ର ସୁପାରିଶ କ୍ରମେ ବିକ୍ରୟ ଟିକସ ହାରକୁ ସୁବ୍ୟବସ୍ଥାକରଣ କରିବା ନିମନ୍ତେ ପଦକ୍ଷେପ ନିଆଯାଇଛି । ତଦନୁଯାୟୀ, କେତେକ ଅତ୍ୟାବଶ୍ୟକ ସାମଗ୍ରୀର ବିକ୍ରୟ ଟିକସ ହାର ହ୍ରାସ କରାଯାଇଛି କିମ୍ବା ଉଚ୍ଛେଦ କରାଯାଇଛି । ସେହିଭଳି, କେତେକ ବିଳାସ ସାମଗ୍ରୀ/ "ଉଚ୍ଚ ମୂଲ୍ୟର ସାମଗ୍ରୀ" ଉପରେ ଟିକସ ହାର ବୃଦ୍ଧି କରାଯାଇଛି ।

ରାଜ୍ୟ ସରକାରଙ୍କ ୧୯୯୬ ମସିହା ଶିଳ୍ପ ନୀତି ଓ କୃଷିନୀତି ଅନୁଯାୟୀ ଆବଶ୍ୟକ ଟିକସକୁ ଅବ୍ୟାହତି ଦିଆଯାଇଛି । ବିଗତ ୪ବର୍ଷ ମଧ୍ୟରେ ସଂଗୃହୀତ ବାଣିଜ୍ୟିକ ଟିକସର ଏକ ତୁଳନାତ୍ମକ ଚିତ୍ର ନିମ୍ନରେ ପ୍ରଦତ୍ତ ହୋଇଛି:

| ବର୍ଷ | ମୋଟ ସଂଗ୍ରହ (କୋଟି ଟଙ୍କା ହିସାବରେ) |
|---|---|
| ୧୯୯୪-୯୫ | ୬୦୯.୦୭ |
| ୧୯୯୫-୯୬ | ୭୩୩.୮୭ |
| ୧୯୯୬-୯୭ | ୯୨୨.୮୩ |
| ୧୯୯୭-୯୮ | ୭୪୭.୫୫ |
| (ଫେବୃୟାରୀ ୯୮ ପର୍ଯ୍ୟନ୍ତ) | (ଲକ୍ଷ୍ୟଧାର୍ଯ୍ୟ ୧୦୬୦ କୋଟି) |

ଡାକ୍ତରମାନଙ୍କ ନିମନ୍ତେ ଅଧ୍ୟୟନକାଳୀନ ଛୁଟି ମଞ୍ଜୁର ଦୁଇବର୍ଷଠାରୁ ତିନିବର୍ଷ ପର୍ଯ୍ୟନ୍ତ ବିଚାରଯୋଗ୍ୟ ହେବ ।

ରାଜ୍ୟ ସରକାରୀ କର୍ମଚାରୀମାନଙ୍କୁ ସମର୍ପଣ ଛୁଟି ବେତନ ରୋକଡ଼ ଆକାରରେ ଦେବାପାଇଁ ମଞ୍ଜୁର ହୋଇଛି ।

ବରଗଡ଼, ଭବାନୀପାଟଣା ଓ ସୁନାବେଡ଼ା ଟାଉନ୍‌ଗୁଡ଼ିକୁ 'ଗ' ଶ୍ରେଣୀଭୁକ୍ତ ଟାଉନ୍‌କୁ ଉନ୍ନୀତ କରାଯାଇଛି ଏବଂ ଯେଉଁ କର୍ମଚାରୀମାନଙ୍କର ଉକ୍ତ ତିନିଗୋଟି ଟାଉନ୍ ସଦର ମହକୁମା ହୋଇଥିବ, ସେମାନେ ତା ୧.୭.୧୯୯୬ ରିଖ ଠାରୁ ରାଜ୍ୟର ଅନ୍ୟ 'ଗ' ଶ୍ରେଣୀଭୁକ୍ତ ଟାଉନ୍ ଅନୁରୂପ ଘରଭଡ଼ା ଭତ୍ତା ପାଇବାକୁ ଯୋଗ୍ୟ ବିବେଚିତ ହେବେ ।

୫ମ କେନ୍ଦ୍ରୀୟ ବେତନ କମିଶନଙ୍କ ସୁପାରିଶକୁ ଭିତ୍ତି କରି ଭାରତ ସରକାର ତା ୧.୧.୯୬ ପୂର୍ବରୁ ପେନ୍‌ସନ୍ ଗ୍ରହୀତା/ ପରିବାର ପେନ୍‌ସନ୍ ଗ୍ରହୀତାଙ୍କ ପେନ୍‌ସନ୍ ଓ ପରିବାର ପେନ୍‌ସନ୍‌ର ପୁନରୀକ୍ଷଣ କରିଛନ୍ତି । ଯେଉଁ କର୍ମଚାରୀମାନେ ତା ୧.୧.୧୯୮୬ ପୂର୍ବରୁ ଅବସରଗ୍ରହଣ କରିଛନ୍ତି, ଭାରତ ସରକାର ସେମାନଙ୍କର ପେନ୍‌ସନ୍/ପରିବାର ପେନ୍‌ସନ୍ ମଧ୍ୟ ପୁନରୀକ୍ଷଣ କରିଛନ୍ତି । ସେହିଭଳି, ରାଜ୍ୟ ସରକାର ମଧ୍ୟ ତା ୧.୧.୯୬ ପୂର୍ବରୁ ପେନ୍‌ସନ୍ ଗ୍ରହୀତା/ ପରିବାର ପେନ୍‌ସନ୍ ଗ୍ରହୀତାଙ୍କ ପେନ୍‌ସନ୍ ଓ ପରିବାର ପେନ୍‌ସନ୍ ଏବଂ ଯେଉଁମାନେ ତା ୧.୫.୧୯୮୯ ପୂର୍ବରୁ ଅବସର ଗ୍ରହଣ କରିଛନ୍ତି, ସେମାନଙ୍କ ପେନ୍‌ସନ୍ ମଧ୍ୟ ପୁନରୀକ୍ଷଣ କରିଛନ୍ତି ।

ଗ୍ରାଚ୍ୟୁଇଟିର ଉଚ୍ଚତର ସୀମା ୧ଲକ୍ଷ ଟଙ୍କାରୁ ୨ଲକ୍ଷ ୫୦ ହଜାର ଟଙ୍କାକୁ ପୁନରୀକ୍ଷଣ କରାଯାଇଛି । ଏହା ବ୍ୟତୀତ, ପ୍ରଚଳିତ ସ୍ଲାବ୍ ବ୍ୟବସ୍ଥା ପରିବର୍ତ୍ତେ, ତା ୧.୧.୯୬ ରିଖଠାରୁ ପରିବାର ପେନ୍‌ସନ୍‌କୁ ଶେଷ ଦରମାର ଶତକଡ଼ା ୩୦ଭାଗକୁ ପୁନରୀକ୍ଷଣ କରାଯାଇଛି । ଯେଉଁମାନେ ତା ୧.୧.୯୬ ରିଖ ପୂର୍ବରୁ ଅଠାବନ

ବର୍ଷ ବୟସ ପୂରି ଯିବାରୁ ଚାକିରିରୁ ଅବସର ନେଉଛନ୍ତି ବା ଚାକିରିରେ ଥାଇ ମୃତ୍ୟୁବରଣ କରିଛନ୍ତି, ସେମାନଙ୍କ କ୍ଷେତ୍ରରେ ମଧ୍ୟ ପେନ୍‌ସନ୍ ପାଇଁ ଶେଷ ଦରମାର ଶତକଡ଼ା ୩୦ ଭାଗ ପୁନରୀକ୍ଷଣ ବ୍ୟବସ୍ଥା ଲାଗୁ ହେବ । କିନ୍ତୁ ସେମାନଙ୍କ ପାଇଁ ଏହି ବ୍ୟବସ୍ଥା ତା ୧.୧.୯୬ ରିଖ ଠାରୁ ପ୍ରଯୁଜ୍ୟ ହେବ । ତା ୧.୭.୯୬,ତା୧.୧.୯୭, ତା ୧.୭.୯୭ ଓ ତା ୧.୧.୯୮ ରିଖ ଠାରୁ ଯଥାକ୍ରମେ ଶତକଡ଼ା ୪, ଶତକଡ଼ା-୮, ଶତକଡ଼ା-୧୩ ଓ ଶତକଡ଼ା ୧୬ ହାରରେ ପୁନରୀକ୍ଷଣ ପେନ୍‌ସନ୍‌ରେ ଅସ୍ଥାୟୀ ବୃଦ୍ଧି ମଞ୍ଜୁର କରାଯାଇଛି ।

## ସେବା ସର୍ତ୍ତାବଳୀ ଶାଖା-୩

ରାଜ୍ୟ ସରକାର ଯଥାକ୍ରମେ ତା ୧.୧.୯୬ ପୂର୍ବରୁ ଓ ତା ୧.୧.୯୬ ରିଖ ପରେ ପେନ୍‌ସନ୍/ ପରିବାର ପେନ୍‌ସନ୍ ପାଉଥିବା ପେନ୍‌ସନ୍ ଗ୍ରହୀତାଙ୍କର ପେନ୍‌ସନ୍/ ପରିବାର ପେନ୍‌ସନ୍‌କୁ ପୁନରୀକ୍ଷଣ କରିଛନ୍ତି । ଅର୍ଥ ବିଭାଗର ନିର୍ଦ୍ଧାରଣ ସଂଖ୍ୟା ୨୫୪୬୦/ ଏଫ୍, ତା ୧୨.୬.୯୮ ରିଖରେ ପେନ୍‌ସନର ଅସ୍ଥାୟୀ ବୃଦ୍ଧି ତା ୧.୭.୯୬, ତା ୧.୧.୯୭, ତା ୧.୭.୯୭ ଓ ତା ୧.୧.୯୮ ରିଖରୁ ପୁନରୀକ୍ଷଣ କରାଯାଇଛି ।

## ଦରମା କମିଟି ପ୍ରକୋଷ୍ଠ

ରାଜ୍ୟ ସରକାରୀ କର୍ମଚାରୀମାନଙ୍କୁ ସଂଶୋଧିତ ଦରମା ହାର ଲାଗୁ କରାଯାଇଛି ।

ସ୍ୱାଧୀନତା ସଂଗ୍ରାମୀ ଏବଂ ସେମାନଙ୍କ ଉପରେ ନିର୍ଭରଶୀଳ ଦାୟାଦଙ୍କ ପାଇଁ ପ୍ରଚଳିତ ପେନ୍‌ସନର ହାର ୧୯୯୯ ଜାନୁଆରୀ ପହିଲା ଠାରୁ ୫୦୦ଟଙ୍କାରୁ ୭୦୦ ଟଙ୍କାକୁ ବଢ଼ାଇ ଦିଆଯାଇଛି ।

କେନ୍ଦ୍ରୀୟ ରାଜସ୍ୱରୁ ଏସ୍.ଏସ୍.ଏସ୍. ପେନ୍‌ସନ୍ ପାଉଥିବା ସ୍ୱାଧୀନତା ସଂଗ୍ରାମୀ ତଥା ସେମାନଙ୍କ ଉପରେ ନିର୍ଭରଶୀଳ ଦାୟାଦମାନଙ୍କ ପାଇଁ ରାଜ୍ୟ ସଦିଚ୍ଛାମୂଳକ ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍ ୧୯୯୯ ଜାନୁଆରୀ ପହିଲାଠାରୁ ୩୦୦ ଟଙ୍କାରୁ ୫୦୦ ଟଙ୍କାକୁ ବୃଦ୍ଧି କରାଯାଇଛି ।

ପୂର୍ବରୁ ଗଠିତ ହୋଇଥିବା ଉଚ୍ଚ କ୍ଷମତା ସମ୍ପନ୍ନ କମିଟିକୁ ଉଚ୍ଛେଦ କରାଯାଇଛି । ଏଣିକି, ଆବଶ୍ୟକ ପଡ଼ିଲେ ଖାଲି ପଡ଼ିଥିବା ପଦବୀଗୁଡ଼ିକ ପୂରଣ କରାଯିବ, ନୂତନ ପଦବୀ ସୃଷ୍ଟି କରାଯିବ ଏବଂ ମଟରଯାନ ମଧ୍ୟ କିଣାଯାଇପାରିବ । ପ୍ରକାଶ ଥାଉକି, ଏଥିପାଇଁ ଓ.ଜି.ଏଫ୍.ଆର୍– ପ୍ରଥମ ଖଣ୍ଡ, ଆର୍ଥିକ କ୍ଷମତା ନିୟମାବଳୀର ଅର୍ପଣ, ୧୯୭୮ ତଥା ଏହାର ସଂଶୋଧନ ଏବଂ ମିତବ୍ୟୟୀ ପଦକ୍ଷେପକୁ କଡ଼ାକଡ଼ିଭାବେ ପାଳନ କରାଯିବ ।

❑❑❑

# ଶକ୍ତି କ୍ଷେତ୍ରରେ ଅଭିନବ ସଂସ୍କାର

ରାଜ୍ୟର ୪୬,୯୦୭ ଟି ଗ୍ରାମ ମଧ୍ୟରୁ ବର୍ତ୍ତମାନ ସୁଦ୍ଧା ୩୩,୬୨୫ଟି ଗ୍ରାମକୁ ବିଦ୍ୟୁତିକରଣ କରାଯାଇଛି ଏବଂ ଆଗାମୀ ୨୦୦୦ ମସିହା ମାର୍ଚ୍ଚ ମାସ ଶେଷ ସୁଦ୍ଧା ରାଜ୍ୟର ସମସ୍ତ ଗ୍ରାମକୁ ବିଦ୍ୟୁତିକରଣ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ବିଦ୍ୟୁତ ପରିବହନ ବ୍ୟବସ୍ଥାକୁ ସୁଦୃଢ଼ କରିବା ପାଇଁ ପରିବହନ କାର୍ଯ୍ୟ ପୁନର୍ଗଠନ ଲକ୍ଷ୍ୟରେ ସମଗ୍ର ବ୍ୟବସ୍ଥାକୁ ୪ ଭାଗ କରାଯାଇ ୪ଗୋଟି ସହାୟକ କମ୍ପାନୀ ଉପରେ ଏହି କାର୍ଯ୍ୟ ନ୍ୟସ୍ତ କରାଯାଇଛି ।

ବିଦ୍ୟୁତ ଶକ୍ତି କ୍ଷେତ୍ରରେ ଆମ ରାଜ୍ୟ ସ୍ୱାବଲମ୍ବନଶୀଳ ହୋଇପାରିଛି । ରାଜ୍ୟରେ ୧,୭୦୦ ମେଗାୱାଟ୍ ବିଦ୍ୟୁତଶକ୍ତିର ଚାହିଦା ଥିବା ସ୍ଥଳେ ବର୍ତ୍ତମାନ ୨,୧୭୦ ମେଗାୱାଟ ବିଦ୍ୟୁତଶକ୍ତି ଉତ୍ପାଦିତ ହୋଇପାରୁଛି । ଏହା ବ୍ୟତୀତ ରାଜ୍ୟର ଭବିଷ୍ୟତ ଚାହିଦା ମେଣ୍ଟାଇବା ପାଇଁ ତାପଜ ବିଦ୍ୟୁତ କ୍ଷେତ୍ରରେ ୧୪୨୦ ମେଗାୱାଟ ଓ ଜଳ ବିଦ୍ୟୁତ କ୍ଷେତ୍ରରେ ୬୦୦ ମେଗାୱାଟ ଉତ୍ପାଦନ ବଢ଼ାଇବା ପାଇଁ ବ୍ୟବସ୍ଥା କରାଯାଇଛି ।

ବିଦ୍ୟୁତ ସଂସ୍କାର କ୍ଷେତ୍ରରେ ଓଡ଼ିଶା ସାରାଦେଶରେ ଆଦର୍ଶ ରାଜ୍ୟର ଗୌରବ ହାସଲ କରିପାରିଛି ।

ରାଜ୍ୟରେ ଓଡ଼ିଶା ଶକ୍ତି ଉତ୍ପାଦନ ନିଗମ ଓ ଓଡ଼ିଶା ଜଳବିଦ୍ୟୁତ ନିଗମ ପ୍ରତିଷ୍ଠା କରାଯାଇ ତାପଜ ଓ ଜଳବିଦ୍ୟୁତ ଉତ୍ପାଦନ କାର୍ଯ୍ୟ ଅବ୍ୟାହତ ରହିଛି ।

# ସମ୍ବାଦ ପରିକ୍ରମା

## ଆଇ.ଆର୍.ଡି.ପି.ରେ ୩୫୨୦.୮୬ ଜଣ ଲୋକ ଉପକୃତ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ (ଆଇ.ଆର୍.ଡି.ପି.)ରେ ଚଳିତ ଆର୍ଥିକ ବର୍ଷ (୧୯୯୮-୯୯) ରେ ଗତ ଡିସେମ୍ବର ମାସ ଶେଷ ସୁଦ୍ଧା ୩୫କୋଟି ୨୦ଲକ୍ଷ ୮୬ ହଜାର ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକଙ୍କୁ ସହାୟତା ପ୍ରଦାନ କରାଯାଇ ଉପକୃତ କରାଯାଇଛି । କେବଳ ଗତ ଡିସେମ୍ବର ମାସରେ ଏହି କାର୍ଯ୍ୟକ୍ରମରେ ୬କୋଟି ୭୯ ଲକ୍ଷ ୧୧ ହଜାର ଲୋକ ଉପକୃତ ହୋଇପାରିଛନ୍ତି ବୋଲି ଯୋଜନା ଓ ସମନ୍ୱୟ ବିଭାଗର ବିଂଶସୂତ୍ରୀ ଅନ୍ତର୍ଗତ ମାସିକ ଅଗ୍ରଗତି ବିବରଣୀରୁ ଜଣାଯାଇଛି ।

ସେହିପରି ଜବାହର ରୋଜଗାର ଯୋଜନାରେ ଗତ ଡିସେମ୍ବର ମାସରେ ସୃଷ୍ଟି ୨୪.୧୭ ଲକ୍ଷ ଶ୍ରମ ଦିବସ ସମେତ ଉକ୍ତ ମାସ ଶେଷ ସୁଦ୍ଧା ମୋଟ୍ ଏକ କୋଟି ୮୨ ଲକ୍ଷ ୭୪ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ଗ୍ରାମାଞ୍ଚଳ ଲୋକମାନଙ୍କୁ ବିଭିନ୍ନ କାମଧନ୍ଦା ଯୋଗାଇ ଦିଆଯାଇଛି ଏବଂ ଡିସେମ୍ବର ମାସରେ ସ୍ଥାପିତ ୩୫୯ଟିକୁ ମିଶାଇ ଡିସେମ୍ବର ମାସ ଶେଷ ସୁଦ୍ଧା ୧୯୬୭ଟି କ୍ଷୁଦ୍ର ଶିଳ୍ପ ୟୁନିଟ୍ ସ୍ଥାପନ କରାଯାଇଛି ବୋଲି ଉକ୍ତ ସୂତ୍ରରୁ ପ୍ରକାଶ ।

## ୪୦୦୭ଟି ଗ୍ରାମକୁ ପାନୀୟ ଜଳ ଯୋଗାଣ

୧୯୯୮-୯୯ ଆର୍ଥିକ ବର୍ଷରେ ଗତ ଡିସେମ୍ବର ମାସ ଶେଷସୁଦ୍ଧା ରାଜ୍ୟର ୪୦୦୭ ଟି ପାନୀୟ ଜଳାଭାବ ଥିବା ଗ୍ରାମକୁ ପାନୀୟ ଜଳ ଯୋଗାଇ ଦିଆଯାଇଛି । ଏହା ଫଳରେ ୬୧,୮୦୦ ଜଣ ହରିଜନ ଓ ୮୮,୪୦୦ ଜଣ ଆଦିବାସୀ ସମ୍ପ୍ରଦାୟର ଲୋକ ଉପକୃତ ହୋଇପାରିଛନ୍ତି । ଏହି କାର୍ଯ୍ୟକ୍ରମରେ କେବଳ ଗତ ଡିସେମ୍ବର ମାସରେ ୭୯୬ଟି ଗ୍ରାମକୁ ପାନୀୟ ଜଳ ଯୋଗାଇ ଦିଆଯାଇ ୧୦,୭୦୦ ଜଣ ହରିଜନ ଓ ୯,୫୦୦ ଜଣ ଆଦିବାସୀ ସମ୍ପ୍ରଦାୟର ବ୍ୟକ୍ତିଙ୍କୁ ଉପକୃତ କରାଯାଇଛି ବୋଲି ରାଜ୍ୟ ଯୋଜନା ଓ ସମନ୍ୱୟ ବିଭାଗରୁ ପ୍ରକାଶିତ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅନ୍ତର୍ଗତ ମାସିକ ଅଗ୍ରଗତି ବିବରଣୀରୁ ଜଣାପଡ଼ିଛି ।

ସେହିପରି ଗତ ଡିସେମ୍ବର ମାସରେ ଖୋଲାଯାଇଥିବା ୧୧ଟି ସୁଲଭ ମୂଲ୍ୟ ଦୋକାନ ମିଶାଇ ଉକ୍ତ ମାସ ଶେଷ ସୁଦ୍ଧା ରାଜ୍ୟରେ ୩୪ଟି ସୁଲଭ ମୂଲ୍ୟ ଦୋକାନ ଖୋଲାଯାଇ ଖାଉଟିମାନଙ୍କୁ ସୁଲଭ ମୂଲ୍ୟରେ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଇ ଦିଆଯାଉଛି ବୋଲି ଉକ୍ତ ସୂତ୍ରରୁ ପ୍ରକାଶ ।

## 'କେୟାର' ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଦ୍ୱାରା ୧୧ଲକ୍ଷରୁ ଉର୍ଦ୍ଧ୍ୱ ହିତାଧିକାରୀ ଉପକୃତ

ରାଜ୍ୟର ୧୧ଟି ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା 'କେୟାର' ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଦ୍ୱାରା ୧୧ଲକ୍ଷ ୬୭ ହଜାର ହିତାଧିକାରୀ ଉପକୃତ ହେଉଛନ୍ତି । ତନ୍ମଧ୍ୟରୁ ଗଜପତି ଜିଲ୍ଲାର ୫୧,୨୦୦ ଜଣ, କେନ୍ଦୁଝର ଜିଲ୍ଲାର ୧ ଲକ୍ଷ ୨୦ହଜାର ୨୦୦ ଜଣ, ମୟୂରଭଞ୍ଜ ଜିଲ୍ଲାର ୨ଲକ୍ଷ ୧୫ ହଜାର ୫୦୦ ଜଣ, କଳାହାଣ୍ଡି ଜିଲ୍ଲାର ୧ଲକ୍ଷ ୧୨ ହଜାର ୫୦୦ ଜଣ ଓ ବଲାଙ୍ଗୀର ଜିଲ୍ଲାର ୧ଲକ୍ଷ ୨୧ ହଜାର ୯୦୦ ଜଣ ହିତାଧିକାରୀ ଉପକୃତ ହେଉଛନ୍ତି । ସେହିପରି ନୂଆପଡ଼ା ଜିଲ୍ଲାର ୪୯,୦୦୦ ଜଣ, ଫୁଲବାଣୀ ଜିଲ୍ଲାର ୮୮ ହଜାର, ବୌଦ ଜିଲ୍ଲାର ୨୫ ହଜାର, ରାୟଗଡ଼ା ଜିଲ୍ଲାର ୧ଲକ୍ଷ ୧୦ ହଜାର ୫୦୦ ଜଣ, ବରଗଡ଼ ଜିଲ୍ଲାର ୮୭,୨୦୦ ଜଣ ଓ ସୁନ୍ଦରଗଡ଼ ଜିଲ୍ଲାର ୧ଲକ୍ଷ ୮୬ ହଜାର ହିତାଧିକାରୀ ଉପକୃତ ହେଉଛନ୍ତି ବୋଲି ମହିଳା ଓ ଶିଶୁ ବିକାଶ ବିଭାଗ ସୂତ୍ରରୁ ଜଣାଯାଇଛି ।

## ରାଜ୍ୟରେ ୧୭,୪୧୩ଟି ଇନ୍ଦିରା ଆବାସ ଗୃହ ନିର୍ମିତ

୧୯୯୮-୯୯ ଆର୍ଥିକ ବର୍ଷରେ ଗତ ଡିସେମ୍ବର ମାସ ଶେଷସୁଦ୍ଧା ରାଜ୍ୟରେ ୧୭,୪୧୩ଟି ଇନ୍ଦିରା ଆବାସ ଗୃହ ନିର୍ମାଣ କରାଯାଇ ବାସହୀନ ଗରିବ ଆଦିବାସୀ ଓ ହରିଜନ ଲୋକମାନଙ୍କୁ ଯୋଗାଇ ଦିଆଯାଇଛି । କେବଳ ଗତ ଡିସେମ୍ବର ମାସରେ ନିର୍ମିତ ହୋଇ ଯୋଗାଇ ଦିଆଯାଇଥିବା ୨୦୦୩ଟି ଇନ୍ଦିରା ଆବାସ ଗୃହ ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ବୋଲି ଯୋଜନା ଓ ସମନ୍ୱୟ ବିଭାଗରୁ ପ୍ରକାଶିତ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅନ୍ତର୍ଗତ ମାସିକ ଅଗ୍ରଗତି ବିବରଣୀରୁ ଜଣାପଡ଼ିଛି ।

ଏହା ବ୍ୟତୀତ ଉକ୍ତ ମାସ ଶେଷ ସୁଦ୍ଧା ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକମାନଙ୍କୁ ୫୩ଟି ଓ ନିମ୍ନଆୟକାରୀ ବ୍ୟକ୍ତିମାନଙ୍କୁ ୨୫ଟି ବାସଗୃହ ଯୋଗାଇ ଦିଆଯାଇଛି । ଗତ ଡିସେମ୍ବର ମାସରେ ୮୧,୭୩୨ଟି ବାସୋପଯୋଗୀ ପ୍ଲଟ ସମେତ ଉକ୍ତ ମାସ ଶେଷସୁଦ୍ଧା ୧,୦୬,୧୩୭ଟି ପ୍ଲଟ ବାସହୀନ ଲୋକମାନଙ୍କୁ ଯୋଗାଇ ଦିଆଯିବା ସଂଗେ ସଂଗେ ଡିସେମ୍ବର ମାସରେ ୯୨୭୧ ଏକର ସମେତ ଉକ୍ତ

ମାସ ଶେଷସୁଦ୍ଧା ୨୩୧.୦୮୧ ଏକର ସିଲିଂ ବହିର୍ଭୁତ ଜମି ଜମିହୀନଙ୍କ ମଧ୍ୟରେ ବଣ୍ଟନ କରାଯାଇଛି ବୋଲି ଉକ୍ତ ସୂତ୍ରରୁ ପ୍ରକାଶ ।

## ଆପିକଲ ଜରିଆରେ ୫୧କୋଟି ୫୦ଲକ୍ଷ ଟଙ୍କାର ପୁଞ୍ଜି ବିନିଯୋଗ

କୃଷି କ୍ଷେତ୍ରରେ ଉଦ୍ୟୋଗୀକରଣ ନିମନ୍ତେ ଗଠନ କରାଯାଇଥିବା ଆପିକଲ (ଓଡ଼ିଶା କୃଷି ପ୍ରୋତ୍ସାହନ ଅର୍ଥ ଲଗାଣ ନିଗମ) ଜରିଆରେ ଗତ ୨ବର୍ଷ ମଧ୍ୟରେ ୫୧ କୋଟି ୫୦ଲକ୍ଷ ଟଙ୍କାର ପୁଞ୍ଜି ବିନିଯୋଗ କରାଯାଇ ୧୯ଟି କୃଷି ଭିତ୍ତିକ ଶିଳ୍ପ ପ୍ରତିଷ୍ଠା କରାଯାଇଛି । ଏହି ଶିଳ୍ପଗୁଡ଼ିକ ମଧ୍ୟରେ ଶୀତଳଭଣ୍ଡାର, ପଶୁପାଳନ, କୃଷିଶିଳ୍ପ, ଫାର୍ମ, ଛତୁ ଚାଷ ପ୍ରକଳ୍ପ ଇତ୍ୟାଦି ଅନ୍ତର୍ଭୁକ୍ତ । କୃଷିଶିଳ୍ପ ତଥା ବିଭିନ୍ନ ପ୍ରକଳ୍ପ ଉପରେ ପ୍ରୋତ୍ସାହନ ହିସାବରେ ପୁଞ୍ଜି ଲଗାଣର ୨୦ ପ୍ରତିଶତ ରିହାତି ବ୍ୟବସ୍ଥା ଏହି ନିଗମ ଜରିଆରେ ପ୍ରଦାନ କରାଯାଉଥାଏ ।

ସେହିପରି ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ କୃଷି ଉଦ୍ୟୋଗୀମାନଙ୍କୁ ଚିହ୍ନଟ କରି କୃଷି ଉଦ୍ୟୋଗ ସ୍ଥାପନ ନିମନ୍ତେ କାର୍ଯ୍ୟ କରୁଥିବା ୪୮ ଗୋଟି କୃଷି ସହାୟକ କେନ୍ଦ୍ର ମାଧ୍ୟମରେ ୬କୋଟି ୯୩ ହଜାର ଟଙ୍କାର ରିହାତି ଅର୍ଥ ଆପିକଲ ଦ୍ୱାରା ପ୍ରଦାନ କରାଯାଇଛି । ଏହାଦ୍ୱାରା ୩୭୧୦ ଜଣ ଚାଷୀ ଉପକୃତ ହୋଇଛନ୍ତି । କୃଷି ପ୍ରକଳ୍ପ ପ୍ରସ୍ତୁତ କରିବା, ବ୍ୟାଙ୍କ ଜରିଆରେ ଅର୍ଥ ଲଗାଣ ବ୍ୟବସ୍ଥା କରାଇବା, ବହୁଳ ସଂଖ୍ୟାରେ ଘରୋଇ ଉଠାଜଳସେଚନ ପ୍ରକଳ୍ପ ପ୍ରତିଷ୍ଠା କରିବା, କୃଷି ଯାନ୍ତ୍ରୀକରଣ ତଥା ଉଦ୍ୟୋଗୀ ନିମନ୍ତେ ପ୍ରଶିକ୍ଷଣ ପ୍ରଦାନ କରି ରାଜ୍ୟରେ କୃଷି ତଥା କୃଷି ଶିଳ୍ପର ବିକାଶ ଓ ପ୍ରସାର ନିମନ୍ତେ କୃଷି ସହାୟକ କେନ୍ଦ୍ର କାର୍ଯ୍ୟ କରୁଅଛି ।

## ରାଜ୍ୟରେ ୮୭ ଗୋଟି ଅନାଥାଶ୍ରମ କାର୍ଯ୍ୟକାରୀ ହେଉଛି

ଅନାଥ ଓ ଅବହେଳିତ ଶିଶୁମାନଙ୍କର ଲାଳନପାଳନ, ଶିକ୍ଷା ତଥା ଧନ୍ଦାମୂଳକ ଶିକ୍ଷା ପ୍ରଦାନ କରି ସେମାନଙ୍କୁ ଆତ୍ମନିର୍ଭରଶୀଳ କରିବା ପାଇଁ ୮୭ ଗୋଟି ସ୍ୱେଚ୍ଛାସେବୀ ଅନୁଷ୍ଠାନ ମାଧ୍ୟମରେ ୮୭ଟି ଅନାଥାଶ୍ରମ ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ ହେଉଛି ।

ତନ୍ମଧ୍ୟରୁ ବାଲେଶ୍ୱର ଜିଲ୍ଲାରେ ୧୦ଟି, ଭଦ୍ରକରେ ୫ଟି, ବଲାଙ୍ଗୀରରେ ୨ଟି, କଟକରେ ୭ଟି, ଯାଜପୁରରେ ୨ଟି, କେନ୍ଦ୍ରାପଡ଼ାରେ ୨ଟି, ଜଗତସିଂହପୁରରେ ୨ଟି, ଢେଙ୍କାନାଳରେ ୪ଟି, ଅନୁଗୁଳରେ ୨ଟି ଓ ଗଞ୍ଜାମ ଜିଲ୍ଲାରେ ୭ଟି ଅବସ୍ଥିତ ।

ଗଜପତି ଜିଲ୍ଲାରେ ୧ଟି, କଳାହାଣ୍ଡିରେ ୨ଟି, ନୂଆପଡ଼ାରେ ୨ଟି, କେନ୍ଦୁଝରରେ ୨ଟି, କୋରାପୁଟରେ ୩ଟି, ନବରଙ୍ଗପୁରରେ ୧ଟି, ରାୟଗଡ଼ା, ମୟୂରଭଞ୍ଜ, ଫୁଲବାଣୀ ଜିଲ୍ଲାରେ ଯଥାକ୍ରମେ ୩,୪ ଓ ୮ଟି ଅନାଥାଶ୍ରମ କାର୍ଯ୍ୟକାରୀ ହେଉଛି । ସେହିପରି ବୌଦ୍ଧ ଜିଲ୍ଲାରେ ୧ଟି, ପୁରୀରେ ୫ଟି, ନୟାଗଡ଼ରେ ୧ଟି, ଖୋର୍ଦ୍ଧାରେ ୨ଟି, ସମ୍ବଲପୁରରେ ୨ଟି, ବରଗଡ଼ରେ ୨ଟି, ଝାରସୁଗୁଡ଼ାରେ ୧ଟି ଏବଂ ସୁନ୍ଦରଗଡ଼ ଜିଲ୍ଲାରେ ୪ଟି ଅନାଥାଶ୍ରମରେ ୫ରୁ ୧୮ ବର୍ଷ ବୟସ ମଧ୍ୟରେ ବାଳକ ଏବଂ ୫ ରୁ ୨୫ ବର୍ଷ ମଧ୍ୟରେ ବାଳିକାମାନଙ୍କର ରକ୍ଷଣାବେକ୍ଷଣ କରାଯାଉଛି ।

ଉପରୋକ୍ତ ଅନାଥାଶ୍ରମଗୁଡ଼ିକର ୫୭୦୩ ଜଣ ଅନ୍ତେବାସୀ ସରକାରଙ୍କର ୯୦ ପ୍ରତିଶତ ଅନୁଦାନ ଓ ସଂପୃକ୍ତ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ୧୦ ପ୍ରତିଶତ ଅନୁଦାନ ଦ୍ୱାରା ଉପକୃତ ହେଉଛନ୍ତି ବୋଲି ମହିଳା ଓ ଶିଶୁ ବିକାଶ ବିଭାଗ ସୂତ୍ରରୁ ପ୍ରକାଶ ।

## ଜାନୁଆରୀ ମାସରେ ୪୭୭ଟି ଜୈବବାଷ୍ପ ପ୍ଲାଣ୍ଟ ସ୍ଥାପିତ

ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅନ୍ତର୍ଗତ ଜାତୀୟ ଜୈବବାଷ୍ପ ଉନ୍ନୟନ ଯୋଜନା ଜରିଆରେ ଗତ ଜାନୁଆରୀ ମାସରେ ସମଗ୍ର ରାଜ୍ୟରେ ୪୭୭ଟି ପରିବାର ଉପଯୋଗୀ ଜୈବବାଷ୍ପ ପ୍ଲାଣ୍ଟ ସ୍ଥାପନ କରାଯାଇଛି ବୋଲି ବିଜ୍ଞାନ ଓ କାରିଗରୀ କୌଶଳ ବିଭାଗ ସୂତ୍ରରୁ ଜଣାପଡ଼ିଛି ।

ସେଥି ମଧ୍ୟରୁ ଅନୁଗୁଳ ଜିଲ୍ଲାରେ ୧୩ଟି, ବାଲେଶ୍ୱରରେ ୯ଟି, ବରଗଡ଼ରେ ୧୨ଟି, ଭଦ୍ରକରେ ୧୯ଟି, ବଲାଙ୍ଗୀରରେ ୧୩ଟି, ବୌଦ୍ଧରେ ୨୨ଟି, କଟକରେ ୮ଟି, ଦେବଗଡ଼ରେ ୬ଟି, ଢେଙ୍କାନାଳରେ ୩୭ଟି, ଗଜପତିରେ ୨ଟି, ଗଞ୍ଜାମରେ ୩୨ଟି, ଜଗତସିଂହପୁରରେ ୨୯ଟି, ଯାଜପୁରରେ ୩୦ଟି, କଳାହାଣ୍ଡିରେ ୬ଟି ଓ କେନ୍ଦ୍ରାପଡ଼ା ଜିଲ୍ଲାରେ ୧୨ଟି ଜୈବବାଷ୍ପ ପ୍ଲାଣ୍ଟ ସ୍ଥାପନ କରାଯାଇଛି ।

## ଜିଲ୍ଲା ପରିଷଦର କର୍ମକର୍ତ୍ତାଙ୍କ ସହ ମୁଖ୍ୟମନ୍ତ୍ରୀଙ୍କ ଆଲୋଚନା

ଗତ ଫେବୃୟାରୀ ୨୫ ତାରିଖରେ ସଚିବାଳୟଠାରେ ଜିଲ୍ଲା ପରିଷଦର କେତେକ କର୍ମକର୍ତ୍ତା ମୁଖ୍ୟମନ୍ତ୍ରୀ ଶ୍ରୀ ଗିରିଧର ଗମାଙ୍ଗଙ୍କୁ ସାକ୍ଷାତ କରି ସାମ୍ବିଧାନିକ ବ୍ୟବସ୍ଥା ଅନୁଯାୟୀ ପଞ୍ଚାୟତରାଜ ଅନୁଷ୍ଠାନଗୁଡ଼ିକୁ ଅଧିକ କ୍ଷମତା ହସ୍ତାନ୍ତର କରିବା ନେଇ ବ୍ୟାପକ ବିଚାର ଆଲୋଚନା କରିଥିଲେ । ଜିଲ୍ଲା ପରିଷଦ ସହିତ ଡି.ଆର୍.ଡି.ଏ.ର ମିଶ୍ରଣ ହେବା ପାଇଁ ନିଷ୍ପତ୍ତି ଓ ଜିଲ୍ଲା ପରିଷଦ ସଭାପତିମାନଙ୍କର ପଦ ମର୍ଯ୍ୟାଦା ସମ୍ପର୍କରେ ବୈଠକରେ ଆଲୋଚନା କରାଯାଇଥିଲା । ଆଲୋଚନାରେ ବଲାଙ୍ଗୀର ଜିଲ୍ଲା ପରିଷଦର ସଭାପତି ଶ୍ରୀ ବାଳକୃଷ୍ଣ ରଥ, ରାୟଗଡ଼ା ଜିଲ୍ଲା ପରିଷଦର ସଭାପତି ଶ୍ରୀ ବିଜୟ କୁମାର ଗମାଙ୍ଗ, ପୁରୀ ଜିଲ୍ଲା ପରିଷଦର ସଭାନେତ୍ରୀ ଶ୍ରୀମତୀ ମଞ୍ଜୁଲତା ମହାନ୍ତି, କୋରାପୁଟ ଜିଲ୍ଲା ପରିଷଦର ସଭାପତି ଶ୍ରୀ ଚନ୍ଦ୍ରଶେଖର ମାଝୀ ଓ ପୁରୀ ଜିଲ୍ଲା ପରିଷଦର ସଭ୍ୟ ଶ୍ରୀ ଘନଶ୍ୟାମ ସ୍ୱାଇଁ ପ୍ରମୁଖ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଏହି ବୈଠକରେ ପଞ୍ଚାୟତରାଜ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ କାହ୍ନୁ ଚରଣ ଲେଙ୍କା ଉପସ୍ଥିତ ଥିଲେ ।

❑❑❑

## STATEMENT OF OWNERSHIP AND OTHER PARTICULARS ABOUT

# UTKAL PRASANGA

FORM-IV

*(See Rule-8)*

| | | | |
|---|---|---|---|
| 1. | Place of publication | : | Bhubaneswar |
| 2. | Periodicity of its publication | : | Monthly |
| 3. | Printer's Name | : | Shri Keshri Mohan Lal, I.P.S. |
| | Nationality | : | Indian |
| | Address | : | Director, Printing, Stationery and Publication, Orissa, Madhupatna,Cuttack-753010 |
| 4. | Publisher's Name | : | Shri Basant Charan Swain, Director, Information and Public Relations & Ex-Officio Additional Secretary to Government Information and Public Relations Department, Bhubaneswar - 751001. |
| 5. | Editor's Name | : | Shri Maheswar Mulia |
| | Nationality | : | Indian |
| | Address | : | Information and Public Relations Department, Government of Orissa, Bhubaneswar-751001. |
| | Name and Address of individuals who own newspaper and partners or shareholders holding more than one percent of the total capital. | : | Government of Orissa, Bhubaneswar |

I, Shri Basanta Charan Swain, I.A.S. Director, Information and Public Relations and Ex-Officio Additional Secretary to Government, Information and Public Relations Department, Bhubaneswar, hereby declare that the particulars given above are true to the best of my knowledge and belief.

**Basant Charan Swain**
*Signature of Publisher*

OGP—MP—PTS (I.&P.R.) 65—6,000—15-3-1999



ହୋଟେଲ ସ୍ୱସ୍ତିଠାରେ ଆୟୋଜିତ ଭୁବନେଶ୍ୱର ନଗରପାଳିକା ମହାନିଗମ ପରିଷଦର ସଭ୍ୟମାନଙ୍କୁ
ମୁଖ୍ୟମନ୍ତ୍ରୀ ଡ଼ଃ. ଗିରିଧର ଗମାଙ୍ଗ ଭାଷଣ ଦେଉଛନ୍ତି ତା-୩.୩.୯୯




ନବୀନ ନିବାସଠାରେ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ୮୪ତମ ଜୟନ୍ତୀ ପାଳନ ଅବସରରେ ମୁଖ୍ୟ ଶାସନ ସଚିବ
ଶ୍ରୀ ସହଦେବ ସାହୁ ଓ ମହାଡାକପାଳ ଶ୍ରୀ ଏସ.ବି.ଭଟ୍ଟାଚାର୍ଯ୍ୟ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ
ଏକ ଡାକଟିକେଟ ଉନ୍ମୋଚନ କରୁଛନ୍ତି



ଲୋକପାଳ ମାନ୍ୟବର ବିଚାରପତି ଶ୍ରୀ କେ.ପି. ମହାପାତ୍ର ମୁଖ୍ୟମନ୍ତ୍ରୀ ଡଃ. ଗିରିଧର ଗମାଙ୍ଗଙ୍କୁ ତାଙ୍କ କାର୍ଯ୍ୟାଳୟ ପ୍ରକୋଷ୍ଠରେ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ତା-୧.୩.୯୯



ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଡ଼. ଗିରିଧର ଗମାଙ୍ଗ ସାଧାରଣ ଉଦ୍ୟୋଗଗୁଡିକର ପରିଚାଳନା ବିଷୟରେ ନିଗମଗୁଡିକର ଅଧ୍ୟକ୍ଷମାନଙ୍କ ସହ ଆଲୋଚନା କରୁଛନ୍ତି ତା-୨.୩.୯୯



ଏ.ଜି. କଲୋନି ଚିତ୍ତବିନୋଦନ କେନ୍ଦ୍ର ଆନୁକୂଲ୍ୟରେ ଆୟୋଜିତ ୧୧ତମ ରାଜ୍ୟସ୍ତରୀୟ ଗଣ ସାଂସ୍କୃତିକ ସମାଜ ଉତ୍ସବରେ ମୁଖ୍ୟମନ୍ତ୍ରୀ ଡ଼ଃ. ଗିରିଧର ଗମାଙ୍ଗ ଭାଷଣ ଦେଉଛନ୍ତି ତା-୨୮.୨.୯୯



ଆଶୀର୍ବାଦ ପ୍ରକାଶନଠାରେ ମୁଖ୍ୟମନ୍ତ୍ରୀ ଡ଼ଃ. ଗିରିଧର ଗମାଙ୍ଗଙ୍କୁ ସମ୍ବର୍ଦ୍ଧିତ କରାଯାଉଛି ତା-୨୬.୨.୯୯



'ମାତୃଭାଷା' ପ୍ରକାଶନୀଠାରେ ମୁଖ୍ୟମନ୍ତ୍ରୀ ଡ଼ଃ. ଗିରିଧର ଗମାଙ୍ଗଙ୍କୁ ସମ୍ବର୍ଦ୍ଧିତ କରାଯାଉଛି ତା-୨୮.୨.୯୯



ମୁଖ୍ୟମନ୍ତ୍ରୀ ଡ଼ଃ. ଗିରିଧର ଗମାଙ୍ଗ ତାଙ୍କ ବରମୁଣ୍ଡାସ୍ଥିତ ବାସ ଭବନ ଠାରେ ହୋଲି ଖେଳାଳିମାନଙ୍କୁ ବଧାଇ
ଜଣାଉଛନ୍ତି ତା-୩.୩.୯୯ .



ଭୁବନେଶ୍ୱର ବିରଜା ଅତିଥି ଭବନଠାରେ ମାରୱାଡ଼ି ପଞ୍ଚାୟତ ଆନୁକୂଲ୍ୟରେ ଆୟୋଜିତ ହୋଲି ଉତ୍ସବ
ମୁଖ୍ୟମନ୍ତ୍ରୀ ଡ଼ଃ. ଗିରିଧର ଗମାଙ୍ଗ ଉଦ୍‌ଘାଟନ କରୁଛନ୍ତି ତା-୩.୩.୯୯

